# ସାରସ୍ୱତ ଗୌରବ

( ଦ୍ୱିତୀୟ ଭାଗ )

ପ୍ରଫେସର ଡକ୍ଟର ଜାନକୀ ବଲ୍ଲଭ ମହାନ୍ତି
( ଭରଦ୍ୱାଜ )



ଓଡ଼ିଶା ବୁକ୍ ଷ୍ଟୋର

# ସାରସ୍ୱତ ଗୌରବ

( ଦ୍ୱିତୀୟ ଭାଗ )

ଲେଖକ :

ଡକ୍ଟର **ଜାନକୀ ବଲ୍ଲଭ ମହାନ୍ତି**

ନାଗେଶ୍ୱରଟାଙ୍ଗୀ, ଭୁବନେଶ୍ୱର-୨

ପ୍ରକାଶକ :

ଶ୍ରୀ ଗୋବିନ୍ଦ ଚରଣ ପାତ୍ର

**ଓଡ଼ିଶା ବୁକ୍ ଷ୍ଟୋର**

ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ସଂସ୍କରଣ—୧୯୮୩

ପ୍ରଚ୍ଛଦ ଶିଳ୍ପୀ :

**ଶ୍ରୀ ଅସିତ୍ ମୁଖାର୍ଜି**

ମୁଦ୍ରକ :

**ନନ୍ଦକିଶୋର ପ୍ରେସ, କଟକ-୨**

ମୂଲ୍ୟ—ପନ୍ଦର ଟଙ୍କା ମାତ୍ର

**SARASWATA GAURABA**

( 2nd Part )

By :

*Dr. Janaki Ballava Mohanty*

Published by :

Sri Govind Charan Patra

*Orissa Book Store*

Binodbehari, Cuttack-753002

First Edition—1983

Printed at :

*Nanda Kishore Press*

Cuttack-753002

**Price-Rs. 15-00**

# ଏଇ ପୁସ୍ତକ ସମ୍ପର୍କରେ

ଯେଉଁ ମହାନ୍ ସାରସ୍ୱତ ସାଧକଙ୍କ ସାଧନା ଓ ଅବିସ୍ମରଣୀୟ ଦାନ ଯୋଗୁଁ ପ୍ରାଚୀନ ଓ ଆଧୁନିକ ଭାରତୀୟ ସାହିତ୍ୟ ସମୃଦ୍ଧ ହୋଇଅଛି ସେମାନଙ୍କ ମଧ୍ୟରୁ କେତେକଙ୍କ ଜୀବନ ବୃତ୍ତାନ୍ତ ଓ ରଚନାର ସଂକ୍ଷିପ୍ତ ପରିଚୟ ଦେବା ଉଦ୍ଦେଶ୍ୟରେ ଏଇ ଗ୍ରନ୍ଥଟି ପରିକଳ୍ପିତ । ଏହି ସାହିତ୍ୟ-ସାଧକ ଗଣ ସଂସ୍କୃତ ଓ ଭାରତର ବିଭିନ୍ନ ଆଞ୍ଚଳିକ ଭାଷାରେ ସାହିତ୍ୟ ସାଧନା କରିଥିଲେ ହେଁ ସେମାନଙ୍କ କୃତି ସମଗ୍ର ଭାବେ ଭାରତୀୟ ସମାଜ ଓ ସାହିତ୍ୟକୁ ଗୌରବାନ୍ୱିତ କରିଅଛି । ଲେଖକ ଭାରତର ବିଭିନ୍ନ ଆଞ୍ଚଳିକ ଭାଷା ବିଷୟରେ ଅନଭିଜ୍ଞ । ତଥାପି ଇଂରାଜୀ, ବଙ୍ଗଳା, ହିନ୍ଦୀ ପ୍ରଭୃତି ଭାଷାରେ ପ୍ରକାଶିତ କେତେକ ପ୍ରାମାଣିକ ଗ୍ରନ୍ଥର ସହାୟତାରେ ଏହି ଜୀବନୀ-ଆଲୋଚନା ମୂଳକ ରଚନାଗୁଡ଼ିକ ପ୍ରସ୍ତୁତ କରିଅଛି । ସେଥିପାଇଁ ଲେଖକ ଏହି ସହାୟକ ଗ୍ରନ୍ଥର ରଚୟିତାଙ୍କ ନିକଟରେ ସର୍ବାଦୌ କୃତଜ୍ଞ । ପ୍ରସ୍ତୁତ ପ୍ରବନ୍ଧଗୁଡ଼ିକ କେତେଦୂର ସାର୍ଥକ ହୋଇ-ପାରିଛି ତାହା ସୁଧୀ ପାଠକ ବର୍ଗଙ୍କ ବିଗୃର ସାପେକ୍ଷ ।

ଏହି ଗ୍ରନ୍ଥରେ ସନ୍ନିବିଷ୍ଟ ପ୍ରବନ୍ଧଗୁଡ଼ିକ ସାହିତ୍ୟ ସାଧକମାନଙ୍କ ଜନ୍ମକାଳାନୁକ୍ରମେ ସଜ୍ଜିତ । ପରବର୍ତ୍ତୀ ଖଣ୍ଡରେ ଅନ୍ୟାନ୍ୟ ଆଞ୍ଚଳିକ ସାହିତ୍ୟର କୃତି ସାଧକଙ୍କ ସମ୍ପର୍କରେ ଆଲୋଚନା କରିବାକୁ ଲେଖକ ଅଭିଳାଷୀ । ପାଠକମାନଙ୍କୁ ଏହା ଭାରତର ସାରସ୍ୱତ ସାଧକଙ୍କ ଜୀବନୀ ଓ ସେମାନଙ୍କ ସାହିତ୍ୟକୃତି ସମ୍ପର୍କରେ ଅଧିକ ଆଗ୍ରହାନ୍ୱିତ କରିପାରିଲେ ଲେଖକ ଆପଣାର ଶ୍ରମ ସାର୍ଥକ ହେଲା ମନେ କରିବ ।

**ଜାନକୀ ବଲ୍ଲଭ ମହାନ୍ତି**

# ସହାୟକ ଗ୍ରନ୍ଥ


## ଇଂରାଜୀ

୧ । ବୀରେଶ ଲିଙ୍ଗମ୍ — ଭି. ଆର୍. ନାର୍ଲା
୨ । ମିର୍ଜା ଗାଲିବ—ମାଲିକ ରାମ
୩ । କୁମାରନ ଆସାନ—ଡଃ କେ. ଏମ୍. ଜର୍ଜ
୪ । ହିଷ୍ଟ୍ରି ଅଫ୍ ମୈଥିଳୀ ଲିଟରେଚର—ଡଃ ଜୟକାନ୍ତ ମିଶ୍ର

## ବଙ୍ଗଳା

୧ । ସଂସ୍କୃତ ସାହିତ୍ୟ ସମ୍ଭାର ୬ଷ୍ଠ ଖଣ୍ଡ—
୨ । ଚଣ୍ଡୀ ଦାସ ଓ ବିଦ୍ୟାପତି—ଶଙ୍କରୀପ୍ରସାଦ ବସୁ
୩ । ଭାରତେର ସାଧକ—ଶଙ୍କରନାଥ ରାୟ
୪ । ବାଙ୍ଗାଲୀ ଚରିତାଭିଧାନ—ଡଃ ସୁବୋଧ ସେନଗୁପ୍ତ
୫ । ଭକ୍ତ କବୀର—ଅଧ୍ୟାପକ ଉପେନ୍ଦ୍ର କୁମାର ଦାସ
୬ । ବାଙ୍ଗଲା ସାହିତ୍ୟେର କଥା—ଶ୍ରୀକୁମାର ବନ୍ଦୋପାଧ୍ୟାୟ

## ଓଡ଼ିଆ

୧ । ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ—କେଦାରନାଥ ମହାପାତ୍ର
୨ । ଆଲୋଚନା—ନୀଳମଣି ମିଶ୍ର

## ହିନ୍ଦୀ

୧ । ପ୍ରେମଚନ୍ଦ—ପ୍ରକାଶ ଚନ୍ଦ୍ର ଗୁପ୍ତ
୨ । କବୀର—ପ୍ରଭାକର ମାଚୱେ
୩ । କବୀର—ହଜାରୀପ୍ରସାଦ ଦ୍ୱିବେଦୀ

## ପତ୍ରିକା

Bhabans' Journal—Feb. 1973

# ସୂଚୀ





# ଜୟଦେବ

ସଂସ୍କୃତ ସାହିତ୍ୟର ସର୍ବାଧିକ ଜନପ୍ରିୟ ଗୀତିକାବ୍ୟ ଭାବେ 'ଗୀତ ଗୋବିନ୍ଦ' ସୁପ୍ରସିଦ୍ଧ ଓ ଏହାର ପ୍ରଣେତା ଭାବେ ଜୟଦେବ ସ୍ୱନାମଧନ୍ୟ । ଏହାକୁ ସଂସ୍କୃତ ସାହିତ୍ୟର ସର୍ବ ପ୍ରଥମ ଓ ସର୍ବୋତ୍କୃଷ୍ଟ ଗୀତିରଚନା ବୋଲି ଗ୍ରହଣ କରାଯାଇଥାଏ । ବୃନ୍ଦାବନରେ ଶ୍ରୀକୃଷ୍ଣ ଓ ଶ୍ରୀ ରାଧାଙ୍କ ଲୀଳା ପ୍ରସଙ୍ଗକୁ ଉପଜୀବ୍ୟ କରି ଏହି ଖଣ୍ଡକାବ୍ୟଟି ପ୍ରଣୀତ । ଶ୍ରୀ ରାଧାଙ୍କ ବିଚ୍ଛେଦ, ଅନ୍ୟାନ୍ୟ ଗୋପୀମାନଙ୍କ ସହ ଶ୍ରୀକୃଷ୍ଣଙ୍କ କ୍ରୀଡ଼ା ଓ ସେଥିପାଇଁ ଶ୍ରୀରାଧାଙ୍କ ଈର୍ଷା, ଅଭିମାନ ଓ ମିଳନୋତ୍କଣ୍ଠା, ସଖୀ ମାଧ୍ୟମରେ ଶ୍ରୀକୃଷ୍ଣଙ୍କୁ ଅନୁନୟ, ଶ୍ରୀକୃଷ୍ଣଙ୍କର ଶ୍ରୀରାଧାଙ୍କ ନିକଟକୁ ପ୍ରତ୍ୟାଗମନ, ଅନୁତାପ ଓ ଶ୍ରୀରାଧାଙ୍କ ମାନଭଞ୍ଜନ ଲାଗି ସ୍ତୁତି ଓ ପରିଶେଷରେ ଉଭୟଙ୍କ ମିଳନ-ସଂକ୍ଷେପରେ ଏହା ହିଁ ଏହି କାବ୍ୟର କଥାବସ୍ତୁ । ମାତ୍ର ଯେପରି ସୁଲଳିତ ଭାଷା ଓ ଛନ୍ଦରେ ଏବଂ ଗୀତାତ୍ମକ ସଂଳାପ ରୀତିରେ ଏହି କଥାବସ୍ତୁ ପରିବେଷିତ ହୋଇଛି ତାହା ଅତୁଳନୀୟ । ଏହି କ୍ଷୁଦ୍ର ଗୀତ-କାବ୍ୟଟି ଭାରତୀୟ ବିଭିନ୍ନ ପ୍ରାନ୍ତୀୟ ସାହିତ୍ୟରେ ରାଧାକୃଷ୍ଣ ଲୀଳାତ୍ମକ ଗୀତି ରଚନାର ମୂଳଉତ୍ସରୂପେ ପରିଗୃହୀତ ହୋଇଥାଏ ।

ଏହି ଗୀତପ୍ରଧାନ ଖଣ୍ଡକାବ୍ୟଟିର ରଚନାକାଳ ତଥା କବିଙ୍କ ଜନ୍ମସ୍ଥାନ ଓ ଜୀବନକାଳ ଏକ ବିବଦମାନ ବିଷୟ । ସ୍ଥୂଳତଃ ଏହି ଗ୍ରନ୍ଥଟି ଦ୍ୱାଦଶ ଶତାବ୍ଦୀର ଶେଷାର୍ଦ୍ଧରେ ରଚିତ ହୋଇଥିବା ଅନୁମେୟ । ପଣ୍ଡିତ-ମଣ୍ଡଳୀଙ୍କ ପ୍ରାଦେଶିକ ପ୍ରୀତିଯୋଗୁ ହିଁ କବିଙ୍କ ଜନ୍ମସ୍ଥାନ ଓ ଜୀବନ କାଳ

ନିର୍ଦ୍ଧାରଣ ଏକ ବିବାଦାସ୍ପଦ, ଜଟିଳ ଓ ରହସ୍ୟାଚ୍ଛନ୍ନ ବିଷୟ ହୋଇ ଯାଇଛି । ବଙ୍ଗଳାର କେତେକ ଆଲୋଚକ 'ଗୀତଗୋବିନ୍ଦ'ର ନିମ୍ନୋକ୍ତ (ସମ୍ଭବତଃ ପ୍ରକ୍ଷିପ୍ତ) ଶ୍ଳୋକଟିକୁ ଭିତ୍ତିକରି କବି ବଙ୍ଗଳାର ଶେଷ ହିନ୍ଦୁ ରାଜା ଲକ୍ଷ୍ମଣ ସେନ (୧୧୮୫-୧୨୦୫)ଙ୍କ ସଭାକବି ଥିଲେ ବୋଲି ନିର୍ଦ୍ଧାରଣ କରିଅଛନ୍ତି ।

"ବାଚଃ ପଲ୍ଲବୟତ୍ୟୁମାପତିଧରଃ ସନ୍ଦର୍ଭ ଶୁଦ୍ଧିଗିରାଂ
ଜାନୀତେ ଜୟଦେବ ଏବ ଶରଣଃ ଶ୍ଳାଘ୍ୟୋ ଦୁରୂହଦ୍ରୁତେ ।
ଶୃଙ୍ଗାରୋତ୍ତର ସତ୍ପ୍ରମେୟ ରଚନୈରାଚାର୍ଯ୍ୟ ଗୋବର୍ଦ୍ଧନଃ
ସ୍ପର୍ଦ୍ଧୀକୋଽପି ନ ବିଶ୍ରୁତଃ ଶ୍ରୁତିଧରୋ ଧୋୟୀ କବିକ୍ଷ୍ମାପତିଃ ।"
(୧।୪)

ଏହି ଶ୍ଳୋକରେ ଜୟଦେବଙ୍କ ସମେତ ଉମାପତିଧର, ଶରଣ, ଆଚାର୍ଯ୍ୟ ଗୋବର୍ଦ୍ଧନ, ଧୋୟୀ ପ୍ରଭୃତି ଲକ୍ଷ୍ମଣସେନଙ୍କ ସଭାକବି ଥିବା ଉଲ୍ଲିଖିତ । ଏହାର ପ୍ରମାଣ ପାଇଁ ଆଉ ଏକ ସଂସ୍କୃତ ଶ୍ଳୋକ ମଧ୍ୟ ବଙ୍ଗଳାର ପଣ୍ଡିତମାନେ ପ୍ରକାଶ କରିଛନ୍ତି । ଏହି ଶ୍ଳୋକଟି ହେଉଛି—

"ଗୋବର୍ଦ୍ଧନଶ୍ଚ ଶରଣୋ ଜୟଦେବ ଉମାପତିଃ
କବି ରାଜଶ୍ଚ ରତ୍ନାନି ସମିତୌ ଲକ୍ଷ୍ମଣସ୍ୟଚ ।"

ମାତ୍ର ଏହି ଶ୍ଳୋକଟି ଏକ ଅର୍ବାଚୀନ ରଚନା ବୋଲି ଓଡ଼ିଶାର ଆଲୋଚକମାନେ ଦର୍ଶାଇଛନ୍ତି (୧) । ଓଡ଼ିଶାରୁ ମିଳୁଥିବା ଗୀତଗୋବିନ୍ଦ ପୋଥି ଓ ପଦ୍ୟାନୁବାଦରେ ପୂର୍ବୋକ୍ତ ଶ୍ଳୋକଟି ପରିଦୃଷ୍ଟ ହୁଏନାହିଁ ବୋଲି ମଧ୍ୟ କୁହାଯାଇଛି (୨) ।

ଅପର ପକ୍ଷେ ଗୀତଗୋବିନ୍ଦର ବହୁ ପ୍ରାଚୀନ ଟୀକାକାର ଜୟଦେବଙ୍କୁ ଓଡ଼ିଶାର ଅଧିବାସୀ, ଶ୍ରୀଜଗନ୍ନାଥ ପୁରୀ ପ୍ରାନ୍ତର ବ୍ୟକ୍ତି

(୧) ଶ୍ରୀ ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ—(ପୃ ୨୩୩—୩୪)
କେଦାରନାଥ ମହାପାତ୍ର

(୨) ଆଲୋଚନା—ପୃ—୧୧୮—ଶ୍ରୀ ନୀଳମଣି ମିଶ୍ର ।

ବୋଲି ପ୍ରସ୍ତୁତଭାବେ ଉଲ୍ଲେଖ କରିଅଛନ୍ତି । କିମ୍ବଦନ୍ତୀରୁ ମଧ୍ୟ ଜଗନ୍ନାଥ ପୀଠସହ ତାହାଙ୍କ ସମ୍ପର୍କ ଜଣାଯାଇଥାଏ ।

ଲକ୍ଷ୍ମଣସେନ ଦ୍ୱାଦଶ ଶତାବ୍ଦୀର ଶେଷଭାଗରେ ରାଜତ୍ୱ କରୁଥିବାରୁ ଓ ଜୟଦେବଙ୍କ ଗୀତଗୋବିନ୍ଦର ଟୀକାଗ୍ରନ୍ଥ ସବୁ ତ୍ରୟୋଦଶ ଶତାବ୍ଦୀ ପରେ ରଚିତ ହୋଇଥିବାରୁ ତାଙ୍କୁ ଦ୍ୱାଦଶ ଶତାବ୍ଦୀର ଶେଷଭାଗର କବି ବୋଲି ନିର୍ଦ୍ଧାରଣ କରାଯାଇଅଛି । କବି କେନ୍ଦୁବିଲ୍ୱ ଗ୍ରାମର ଅଧିବାସୀ ଥିବା ମଧ୍ୟ ଗୀତଗୋବିନ୍ଦର ନିମ୍ନୋକ୍ତ ଶ୍ଳୋକରୁ ଜଣାଯାଏ ।

"ବର୍ଣ୍ଣିତ ଜୟଦେବ ହରିରିଦଂ ପ୍ରବଣେନ

କେନ୍ଦୁବିଲ୍ୱ-ସମୁଦ୍ର ସମ୍ଭବ-ରୋହିଣୀ ରମଣେନ" ( ୩।୧୦ )

( କେନ୍ଦୁବିଲ୍ୱ ସମୁଦ୍ରରୁ ଜାତ ହୋଇଥିବା ଚନ୍ଦ୍ର ସଦୃଶ ଜୟଦେବ ବିନୟର ସହିତ ଶ୍ରୀହରିଙ୍କ ଏହି ( ବଳାପବାକ୍ୟ ) ବର୍ଣ୍ଣନା କଲେ । ଏହି କେନ୍ଦୁବିଲ୍ୱକୁ ଆଧୁନିକ ବଂଗୀୟ ଆଲୋଚକଗଣ ବଙ୍ଗଳାର ବୀରଭୂମି ଜିଲ୍ଲାର କେନ୍ଦୁଲୀ ଓ ଓଡ଼ିଶାର ଆଲୋଚକଗଣ ପୁରୀ ଜିଲ୍ଲାର କେନ୍ଦୁଲୀ ବୋଲି ନିରୂପଣ କରିଅଛନ୍ତି । ବଙ୍ଗଳାର କେନ୍ଦୁଲୀ ଏକ ବୈଷ୍ଣବ ସଂସ୍କୃତିସମ୍ପନ୍ନପୀଠ ନୁହେଁ; ମାତ୍ର ଓଡ଼ିଶାର କେନ୍ଦୁଲୀ ଏକ ପ୍ରାଚୀନ ସଂସ୍କୃତି ସମ୍ପନ୍ନପୀଠ ଥିବାର ପ୍ରମାଣ ମିଳୁଅଛି ।

କବିଙ୍କର ପତ୍ନୀଙ୍କ ନାମଥିଲା ପଦ୍ମାବତୀ । ପ୍ରାଚୀନ କବିଗଣ ଆପଣାର ପତ୍ନୀଙ୍କ କାବ୍ୟରେ ଉଲ୍ଲେଖ କରିବା ବିରଳ ହେଲେହେଁ କବି ଜୟଦେବ ଗୀତ ଗୋବିନ୍ଦର ତିନିଗୋଟି ସ୍ଥାନରେ ପଦ୍ମାବତୀଙ୍କ ପ୍ରସଙ୍ଗ ଉଲ୍ଲେଖ କରିଅଛନ୍ତି । ସେ କାବ୍ୟ ଆରମ୍ଭରେ ନିଜକୁ 'ପଦ୍ମାବତୀ ଚରଣ ଚାରଣ ଚକ୍ରବର୍ତ୍ତୀ' ( ନୃତ୍ୟର ଶ୍ରେଷ୍ଠ ପରିଚାଳକ ), 'ପଦ୍ମାବତୀ ରମଣ' 'ବିହିତ ପଦ୍ମାବତୀ ସୁଖ ସମାଜେ' (ପଦ୍ମାବତୀଙ୍କ ସୁଖ ସମୂହ ବିଧାନକାରୀ) ବୋଲି ଉଲ୍ଲେଖ କରିଯାଇଥିବାରୁ ଏ ସମ୍ପର୍କରେ ବିବିଧ ଆଲୋଚନାର ସୂତ୍ରପାତ ହୋଇଅଛି । କିମ୍ବଦନ୍ତୀରୁ ଜଣାଯାଏ, ପଦ୍ମାବତୀଙ୍କୁ ସେ ଜଗନ୍ନାଥଙ୍କ ନିର୍ଦ୍ଦେଶରେ ହିଁ ପତ୍ନୀଭାବେ ଗ୍ରହଣ କରିଥିଲେ । ପଦ୍ମାବତୀ ମଧ୍ୟ ନୃତ୍ୟ ଗୀତରେ ଥିଲେ ପ୍ରବୀଣା । କେହି କେହି ପଦ୍ମାବତୀର ଭିନ୍ନ ଅର୍ଥ ( ଲକ୍ଷ୍ମୀ ) ମଧ୍ୟ କରିଥାଆନ୍ତି ।

ତାହାଙ୍କ ପିତାଙ୍କ ନାମ ଭୋଜଦେବ ଓ ମାତାଙ୍କ ନାମ ରମା-ଦେବୀ ( ଅଥବା ବାମା କମ୍ବା ରାଧାଦେବୀ ) ଥିଲା । କେତେକ ଗୀତଗୋବନ୍ଦ ପୁସ୍ତକର ଶେଷ ଶ୍ଳୋକରୁ ଏହା ଜଣାଯାଏ (୧) । ଏହି ଶ୍ଳୋକଟି ପ୍ରକ୍ଷିପ୍ତ ହୋଇଥିବା ସମ୍ଭବପର । ଏଥିରେ ପରାଶର ନାମକ ତାଙ୍କର ଜଣେ ପ୍ରିୟ ବନ୍ଧୁ ଥିଲେ ଓ ସେ ଗୀତଗୋବନ୍ଦ ଗାନ କରୁଥିଲେ ବୋଲି ମଧ୍ୟ ଉଲ୍ଲିଖିତ ।

## କମ୍ବଦନ୍ତୀରୁ ତାହାଙ୍କ ଜୀବନ ଚିତ୍ର :

ଜୟଦେବ ଥିଲେ ସୁପଣ୍ଡିତ, ବ୍ରାହ୍ମଣ ଓ ବିଷ୍ଣୁଭକ୍ତ । ସେ ମଧ୍ୟ ଥିଲେ ଜଗନ୍ନାଥ ଭକ୍ତ ଓ ଶ୍ରୀକ୍ଷେତ୍ରବାସୀ । ତାହାଙ୍କ ସମୟକୁ ବର୍ତ୍ତମାନର ଜଗନ୍ନାଥ ମନ୍ଦିର ନିର୍ମିତ ହୋଇ ସମଗ୍ର ଭାରତବର୍ଷରେ ପ୍ରସିଦ୍ଧି ଅର୍ଜନ କରିଥିଲା । ଜୟଦେବ ଆପଣା ଗୃହ ପରିବାରର ସମସ୍ତ ମମତା ତ୍ୟାଗକରି ଶ୍ରୀକ୍ଷେତ୍ରରେ ସଂସାର ବିରାଗୀ ଭକ୍ତଭାବେ ଏକ ବୃକ୍ଷତଳେ କାଳଯାପନ କରୁଥିଲେ । ଏହି ସମୟରେ ଦକ୍ଷିଣାଞ୍ଚଳର ଜନୈକ ବ୍ୟକ୍ତି ପଦ୍ମାବତୀ ନାମ୍ନୀ ସ୍ୱକନ୍ୟା ସହ ଶ୍ରୀ କ୍ଷେତ୍ରକୁ ଆସିଥିଲେ । ନୃତ୍ୟଗୀତ ପ୍ରବୀଣା ଏହି କନ୍ୟାଟିକୁ ସେ ଜୟଦେବଙ୍କୁ ସମର୍ପଣ କରିଥିଲେ । ଏହା ଶ୍ରୀ ଜଗନ୍ନାଥଙ୍କ ନିର୍ଦ୍ଦେଶ ଜାଣି ଜୟଦେବ କନ୍ୟାଟିକୁ ପତ୍ନୀ ରୂପେ ଗ୍ରହଣ କରିଥିଲେ । ଅଷ୍ଟାଦଶ ଶତକର ଶେଷଭାଗରେ ରଚିତ ରାମ ଦାସଙ୍କ । "ଦାଢ଼୍ୟତା ଭକ୍ତି"ରୁ କବିଙ୍କ ଜୀବନ ସମ୍ପର୍କରେ ଏହା ହିଁ ଜଣା ଯାଇଥାଏ ।

"ଜନମ କେନ୍ଦୁବିଲ୍ୱ ଗ୍ରାମେ । ବ୍ରାହ୍ମଣ ଜୟଦେବ ନାମେ
ମହାପଣ୍ଡିତ ବିଷ୍ଣୁଭକ୍ତ । ଜିତ ଇନ୍ଦ୍ରିୟ ସୁବିହିତ
ବିରକ୍ତ ନିଃସଙ୍ଗ ଉଦାସୀ । ଶ୍ରୀକ୍ଷେତ୍ରେ ପରବେଶ ଆସି ।
ଏକ ବୃକ୍ଷର ତଳେ ଥାଇ । ଶ୍ରୀ ଜଗନ୍ନାଥଙ୍କୁ ସେବଇ ।

× × ×

---

(୧) "ଶ୍ରୀ ଭୋଜ ଦେବ ପ୍ରଭବସ୍ୟ ବାମାଦେବୀସୁତ ଶ୍ରୀ ଭୋଜଦେବସ୍ୟ ପରାଶରାଦି ପ୍ରିୟବନ୍ଧୁ କଣ୍ଠେ ଶ୍ରୀ ଗୀତଗୋବିନ୍ଦ କବିତ୍ୱ ଅସ୍ତୁ ।" ( ୧୨।୨୯ )

ସେ କନ୍ୟାନାମ ପଦ୍ମାବତୀ । ପଦ୍ମିନୀ ଗୁଣବତୀ ସତୀ ।

× × ×

ଯେ ଇଚ୍ଛା ଜଗନ୍ନାଥଙ୍କର । ତହିଁକି ଆଜ୍ଞା କଲେ ହରି
ଗୋଟିଏ କୁଟୀର ନିର୍ମାଣି । ତହିଁ ରହିଲା ଭାର୍ଯ୍ୟା ଘେନି ।”

( ଦା: ଭ: ୨ୟ ଭାଗ )

ଏହା ପରେ ଆରମ୍ଭ ହେଲା ଦେବ ସେବାରେ ଉତ୍ସର୍ଗୀକୃତ ଜୟଦେବଙ୍କ ଦାମ୍ପତ୍ୟ ଜୀବନ । ଉଭୟେ ଭକ୍ତି ସଙ୍ଗୀତଗାନ ଓ ନୃତ୍ୟାଭିନୟ ମାଧ୍ୟମରେ କାଳଯାପନ କରୁଥିଲେ । ଏହିଠାରେ ହିଁ କବି ରଚନା କରିଥିଲେ ‘ଗୀତଗୋବିନ୍ଦ ।’ ଜୟଦେବ ଓ ତାହାଙ୍କ ଗୀତ ଗୋବିନ୍ଦ ଶ୍ରୀ ଜଗନ୍ନାଥ ଓ ଜଗନ୍ନାଥଙ୍କ ପୀଠ ଶ୍ରୀକ୍ଷେତ୍ର ସହ ଦ୍ୱାଦଶ ଶତାବ୍ଦୀରୁ ଜନଶ୍ରୁତି କ୍ରମେ ସମ୍ପୃକ୍ତ ହୋଇ ଆସୁଛନ୍ତି । ବିଦେଶାଗତ ବ୍ରାହ୍ମଣ ସ୍ୱୀୟ କନ୍ୟାକୁ ଜଗନ୍ନାଥଙ୍କ ଶ୍ରୀକ୍ଷେତ୍ରରୁ ସୁଦୂର ବଙ୍ଗ ଦେଶର ଅଜୟ ନଦୀ ତଟବର୍ତ୍ତୀ କେନ୍ଦୁଲୀ ଗ୍ରାମକୁ ନେବା ଅବିଶ୍ୱାସ୍ୟ ମନେହୁଏ । କେଦାରନାଥ ମହାପାତ୍ର ଜୟଦେବଙ୍କ ସମ୍ପର୍କୀୟ ଜୀବନୀଗ୍ରନ୍ଥମାନଙ୍କର ତୁଳନାତ୍ମକ ଅଧ୍ୟୟନ କରି ଲେଖିଛନ୍ତି—‘ମିଥିଳା, ବୃନ୍ଦାବନ, ମହାରାଷ୍ଟ୍ର, ଗୌଡ଼ ଓ ଉତ୍କଳ ପ୍ରଭୃତି ବିଭିନ୍ନ ପ୍ରାନ୍ତରେ ଭିନ୍ନ ଭିନ୍ନ ସମୟରେ ଯଥାକ୍ରମେ ସଂସ୍କୃତ, ହିନ୍ଦୀ, ମରହଟ୍ଟା, ବଙ୍ଗଳା ଓ ଓଡ଼ିଆ ଭାଷାରେ ଲିଖିତ ଶ୍ରୀଜୟଦେବ ଚରିତରେ ନିମ୍ନୋକ୍ତ ଚାରିଗୋଟି ମୁଖ୍ୟ ବିଷୟ ଯଥା (କ) ଶ୍ରୀକ୍ଷେତ୍ରରେ ରୂପଗୁଣସମ୍ପନ୍ନା ଭକ୍ତିମତି ପଦ୍ମାବତୀଙ୍କ ସହ ଶ୍ରୀ ଜଗନ୍ନାଥଙ୍କ ପରମଭକ୍ତ ଶ୍ରୀକ୍ଷେତ୍ରବାସୀ ସନ୍ନ୍ୟାସୀ ଶ୍ରୀ ଜୟଦେବଙ୍କ ଶୁଭପରିଣୟ (ଖ) ଶ୍ରୀକ୍ଷେତ୍ରରେ ଶ୍ରୀଜୟଦେବଙ୍କ ଦ୍ୱାରା ଗୀତଗୋବିନ୍ଦ ରଚନା (ଗ) ଶ୍ରୀ ଜଗନ୍ନାଥଙ୍କ ମନ୍ଦିରରେ ନିତ୍ୟ ଶ୍ରୀ ଗୀତ-ଗୋବିନ୍ଦପାଠ ଏବଂ (ଘ) ଉତ୍କଳାଧୀଶଙ୍କ ଦ୍ୱାରା ଶ୍ରୀ ଗୀତଗୋବିନ୍ଦର ସମକକ୍ଷ ଅନ୍ୟ ଏକ ଗୀତଗୋବିନ୍ଦ ରଚନା ସମ୍ପର୍କରେ ସମ୍ପୂର୍ଣ୍ଣ ମତୈକ୍ୟ ପରିଦୃଷ୍ଟ ହୁଏ ।” (୧)

(୧) ଶ୍ରୀ ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ—ପୃ ୬୮

ଏହି ମନୋରମ ଗୀତିରଚନାଟି କବି ପୁରୀରେ ଶ୍ରୀମନ୍ଦିରରେ ଗୀତ ହେବାପାଇଁ ପ୍ରଣୟନ କରିଥିବା ବିଷୟ ମଧ୍ୟ ବିବିଧ ପ୍ରମାଣ ଦ୍ୱାରା ପ୍ରମାଣିତ ହୋଇଅଛି । (୨)

## ଓଡ଼ିଶା ଓ ଜୟଦେବ :

ଜୟଦେବଙ୍କୁ ଓଡ଼ିଶାର କବି କହିବା ସପକ୍ଷରେ କିମ୍ବଦନ୍ତୀର ସାକ୍ଷ୍ୟ ଅପେକ୍ଷା ଅନ୍ୟାନ୍ୟ ପ୍ରମାଣ ମଧ୍ୟ ବଳବତ୍ତର । ଭାରତର ବହୁ ଅଞ୍ଚଳ ତଥା ଆଞ୍ଚଳିକ ସାହିତ୍ୟରେ ଜୟଦେବଙ୍କ ପ୍ରଭାବ ରହିଛି, ଯେମିତି କାଳିଦାସଙ୍କ ସାହିତ୍ୟ । ମାତ୍ର ଲୋକଚଳଣିରେ ଜୟଦେବ ଓଡ଼ିଶାରେ ଯେପରି ଆପଣାର ହୋଇଛନ୍ତି ତାହା ଅନ୍ୟତ୍ର ବିରଳ । ଓଡ଼ିଆ ଭାଗବତ ଟୁଙ୍ଗିରେ ଗୀତଗୋବିନ୍ଦ ମଧ୍ୟ ସମ୍ମାନର ସହିତ ସ୍ଥାପିତ ଓ ଭକ୍ତିର ସହ ନିୟମିତ ପଠିତ ହେବାର ଗୌରବ ଲାଭ କରିଅଛି ।

ଏହା ଛଡ଼ା ପୁରୀ ଶ୍ରୀମନ୍ଦିରରେ 'ଗୀତଗୋବିନ୍ଦ' ପ୍ରତ୍ୟହ ପଠିତ ହେବାର ରାଜକୀୟ ଘୋଷଣା ମଧ୍ୟ ଶିଳାଲିପିରେ ଉତ୍କୀର୍ଣ୍ଣ ହୋଇଅଛି । ହିନ୍ଦୁ ଧର୍ମଗ୍ରନ୍ଥ ପୁରାଣମାନଙ୍କ ମଧ୍ୟରୁ ଏହି ଏକ ମାତ୍ର ପୁସ୍ତକଟି ଯେ କାହିଁକି ଜଗନ୍ନାଥଙ୍କ ସେବାର ଅଙ୍ଗ ଭାବରେ ପଠିତ ହେବାର ଗୌରବ ଲାଭ କରିଛି ତାହା ଅନୁଧ୍ୟାନ ସାପେକ୍ଷ । ଏ ସମ୍ପର୍କରେ କିମ୍ବଦନ୍ତୀରୁ ଯାହା ଜଣାଯାଏ, ତାହା ହେଉଛି ଜୟଦେବଙ୍କ ଗୀତ ଗୋବିନ୍ଦ ଅନୁକରଣରେ ଯେଉଁ 'ଅଭିନବ ଗୀତ ଗୋବିନ୍ଦ' ରଚିତ ହୋଇଥିଲା ତାହାକୁ ଓଡ଼ିଶାର ରାଜା ମନ୍ଦିରରେ ପ୍ରତ୍ୟହ ପାଠ କରାଇବା ଲାଗି ଅଭିଳାଷୀ ହୋଇଥିଲେ; ମାତ୍ର ସ୍ୱୟଂ ଜଗନ୍ନାଥ ହିଁ ସୂଚନା ଦେଇ ଜଣାଇ ଦେଇଥିଲେ ଯେ, ଜୟଦେବଙ୍କ ଗୀତ ଗୋବିନ୍ଦ ହିଁ ତାଙ୍କର ପ୍ରିୟଗ୍ରନ୍ଥ । ଏଥିରୁ ଗୀତଗୋବିନ୍ଦ ଯେ ଓଡ଼ିଶାରେ ସର୍ବାଧିକ ସମ୍ମାନିତ ଓ ସମାଦୃତ ପବିତ୍ର ଗ୍ରନ୍ଥ ଏହା ମଧ୍ୟ ପ୍ରତିପନ୍ନ ହୋଇଥାଏ ।

ଖ୍ରୀ : ୧୫୦୦ ଜୁଲାଇ ଆଠ ତାରିଖ ବା ଆଷାଢ଼ ଶୁକ୍ଳ ଦଶମୀ ବାହୁଡ଼ା ଉତ୍ସବ ଦିନ ରାଜା ପ୍ରତାପ ରୁଦ୍ରଦେବଙ୍କ (୧୪୯୭-୧୫୪୦) ଶ୍ରୀ ଜଗନ୍ନାଥଙ୍କ

(୨) ଶ୍ରୀ ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ—ପୃ ୭୯

ଜୟ ବିଜୟ ଦ୍ୱାରରେ ସ୍ଥାପିତ ଗୀତ ଗୋବିନ୍ଦ ସମ୍ପର୍କୀୟ ଶିଳାଲିପି ଏହିପରି— (୧) "ବୀରଶ୍ରୀ ଗଜପତି ଗଉଡ଼େଶ୍ୱର ନବକୋଟି କର୍ଣ୍ଣାଟ କଳବରଗେଶ୍ୱର ବୀରବର ଶ୍ରୀ ପ୍ରତାପରୁଦ୍ର ମହାରାଜାଙ୍କର ସପ୍ତମ ଅଙ୍କେ ଶ୍ରାହ୍ମି କର୍କଡ଼ା ସ୍ୱ ୧୦ ବୁଧବାରେ ଅବଧାରିତ ଆଜ୍ଞା ପ୍ରମାଣେ ବଡ଼ ଠାକୁରଙ୍କ ଶ୍ରୀ ଗୀତଗୋବିନ୍ଦ ଠାକୁରଙ୍କ ଭୋଗ ବେଳେ ଏ ନାଟ ହୋଇବ । ସନ୍ଧ୍ୟାଧୂପ ସରିବାଠାରୁ ଏ ନାଟ ହୋଇବ । ବଡ଼ ଠାକୁରଙ୍କ ସମ୍ପ୍ରଦା କପିଳେଶ୍ୱର ଠାକୁରଙ୍କ ବନ୍ଧା ନାଚୁଣୀମାନ ପୁରୁଣା ସମ୍ପ୍ରଦା ତେଲୁଂଗୀ ସମ୍ପ୍ରଦା ଏମାନେ ସବହେଁ ବଡ଼ ଠାକୁରଙ୍କ ଗୀତ ଗୋବିନ୍ଦହୁଂ ଆନ ଗୀତ ନ ଶିଖିବେ । ଆନ ଗୀତ ନ ଗାଇବେ, ଆନ ଗୀତ ହୋଇ ପରମେଶ୍ୱରଙ୍କ ଛାମୁରେ ନହେବ । ଏ ନାଟ ବିତରଙ୍କେ ବଇଷ୍ଣବ ଗାଆଣ ବୃନ୍ଦଜଣ ଅଛନ୍ତି । ଏମାନେ ଗୀତ ଗୋବିନ୍ଦ ଗୀତହିଂ ସେ ଗାଇବେ । ଏହାଙ୍କଠାରୁ ଅଶିକ୍ଷିତମାନେ ଏକଶ୍ୱରରେ ଶୁଣି ଗୀତ ଗୋବିନ୍ଦ ଗୀତ ହିଂ ସେ ଶିଖିବେ, ଆନ ଗୀତ ନ ଶିଖିବେ । ଏହା ଯେ ପରୀକ୍ଷା ଆନ ଗୀତ ନାଟ କରାଇଲେ ଜାଣି ସେ ଜଗନ୍ନାଥଙ୍କ ଦ୍ରୋହ କରଇ ।"

ଓଡ଼ିଶାର "ମହାନ ଭକ୍ତ କବିଙ୍କ ଏହି ଗୀତି ଗୁଚ୍ଛକୁ ରାଜକୀୟ ସ୍ୱୀକୃତି ଦେବାର ଏହି ନିଦର୍ଶନ ଅତୀବ ଗୁରୁତ୍ୱପୂର୍ଣ୍ଣ ।

ଗୀତଗୋବିନ୍ଦ ଶ୍ରୀଜଗନ୍ନାଥଙ୍କ ପ୍ରିୟଗ୍ରନ୍ଥ ଥିଲା । ସେ ଏହା ଶୁଣିବାକୁ ସର୍ବଦା ଲାଳାୟିତ ଥିବା ମଧ୍ୟ ଦାଢ଼୍ୟତା ଭକ୍ତିରୁ ଜଣାଯାଏ । ଏକ ମାଳୁଣୀ କନ୍ୟା ବାଇଗଣ ତୋଳିବା ବେଳେ ଶ୍ରୀଜଗନ୍ନାଥ ନିଜ ବସ୍ତ୍ରଛିନ୍ନ ହେଲେ ବି ତାହା ପଛେ ପଛେ ବୁଲିଥିଲେ ଓ ତାହାଠାରୁ ପ୍ରତ୍ୟହ ଗୀତ ଗୋବିନ୍ଦ ଶୁଣିବାକୁ ଅଭିଳାଷୀ ଥିଲେ । ଏଥିପାଇଁ ବିହିତ ବ୍ୟବସ୍ଥା କରିବାକୁ ସେ ରାଜାଙ୍କୁ ମଧ୍ୟ ନିର୍ଦ୍ଦେଶ ଦେଇଥିଲେ ।

'ରଚିଲା ଅପୂର୍ବ ପ୍ରବନ୍ଧ
ନାମ ଯା ଶ୍ରୀଗୀତ ଗୋବିନ୍ଦ
× × × ×

---

(୧) କେଦାର ନାଥ ମହାପାତ୍ରଙ୍କ ଶ୍ରୀ ଜୟଦେବ ଓ ଶ୍ରୀ ଗୀତଗୋବିନ୍ଦ—ପୃ୮୯ରୁ ଉଦ୍ଧୃତ ।

ଆଣିଲେ ମାଳମ୍ପ କନ୍ୟାକୁ
କହିଲେ ତାକୁ ପଢ଼ିବାକୁ
ପଢ଼ିଲା ଶ୍ରୀ ଗୀତଗୋବିନ୍ଦ
ଶୁଣିଣ ପ୍ରଭୁ ମହାନନ୍ଦ ।
ରହିଲା ଖଞ୍ଜା ବୃତ୍ତି ପାଇ
ପଢ଼ିଲା ନିତ ନିତ ଯାଇ ।
ଅଦ୍ୟାପି ତାର ବଂଶଧରେ
ଗୀତ ଗୋବିନ୍ଦ ପାଠ କରେ ।

(ଦାର୍ଢ୍ୟତାଭକ୍ତି ୨ୟ ଭାଗ)

ଗୀତ ଗୋବିନ୍ଦକୁ ଓଡ଼ିଆ ଗଦ୍ୟ ଓ ପଦ୍ୟରେ ଅନୁବାଦ କରିବା ଲାଗି ଏ ଦେଶର ପ୍ରାଚୀନ କବି ଓ ଲେଖକମାନେ ଯେପରି ଉଦ୍ୟମ କରିଛନ୍ତି ତାହାର ଦୃଷ୍ଟାନ୍ତ ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟରେ ବିରଳ । ଛନ୍ଦ ଓ ସଂଗୀତ ବିବିଧ ଶୈଳୀରେ କବିମାନେ ଏହାକୁ ଅନୁବାଦ କରି ଅଛନ୍ତି । ଏତାଦୃଶ ରଚନା ଭିତରେ ବୃନ୍ଦାବନ ଦାସଙ୍କ ୨୦ଟି ଛନ୍ଦ ବିଶିଷ୍ଟ ରସବାରିଧି କାବ୍ୟ ପ୍ରାଚୀନ ତମ । କବି ବୃନ୍ଦାବନ ଶ୍ରୀଚୈତନ୍ୟଙ୍କ ପୂର୍ବବର୍ତ୍ତୀ ଓ ତାହାଙ୍କ ସମୟ ପଞ୍ଚଦଶ ଶତାବ୍ଦୀର ମଧ୍ୟ ଭାଗ ବୋଲି ନିର୍ଦ୍ଧାରିତ ହୋଇଅଛି । (୧) । ଅଷ୍ଟାଦଶ ଶତକର କବି ଦୀନକୃଷ୍ଣ ଦାସ 'ଅମୃତ ସାଗର ବୋଲି'ର ୧୩ଶରୁ ୩୨ଶ ବୋଲି ମଧ୍ୟରେ ଗୀତଗୋବିନ୍ଦର ରାସଲୀଳା ପ୍ରସଙ୍ଗ ବର୍ଣ୍ଣିତ । ଷୋଡ଼ଶ ଶତାବ୍ଦୀରେ କବି ଧରଣୀଧର ମଧ୍ୟ ସରସ ଛନ୍ଦ ଶୈଳୀରେ ଷୋଳଟି ଛନ୍ଦରେ ଏହାକୁ ଓଡ଼ିଆରେ ଅନୁବାଦ କରିଥିଲେ ।

ଏତଦ୍ ବ୍ୟତୀତ ବଜରଦାସ, (ଖ୍ରୀ ୧୭୭୨-୭୩) ଉଦ୍ଧବଦାସ, ତ୍ରିଲୋଚନ ବା ତିଲୁଦାସ, ପିଣ୍ଡିକ ଶ୍ରୀଚନ୍ଦନ, ଗୌରହରି ପରିଚ୍ଛା, ଶ୍ୟାମ ସୁନ୍ଦର ଭଞ୍ଜ ପ୍ରଭୃତି ବହୁ କବି ଏହାକୁ ପଦ୍ୟାନୁବାଦ କରି ଯାଇଅଛନ୍ତି ।

---

(୧) 'ରସ ବାରିଧି ମୁଖବନ୍ଧ'

ଓଡ଼ିଶାରେ ଏହି ଗ୍ରନ୍ଥଟି ସମ୍ପର୍କରେ ବହୁ ଟୀକାଗ୍ରନ୍ଥ ସଂସ୍କୃତ ଓ ଓଡ଼ିଆରେ ପ୍ରଣୀତ ହୋଇଅଛି । ଏହି ଗ୍ରନ୍ଥର ଭାବ ଭାଷା ଓ ରଚନା ରୀତିକୁ ଅନୁସରଣ କରି ଓଡ଼ିଶାର ବହୁ କବି ସଂସ୍କୃତରେ ବହୁ କାବ୍ୟ ଓ ନାଟକ ପ୍ରଭୃତି ପ୍ରଣୟନ କରିଅଛନ୍ତି ।

ଓଡ଼ିଶାର ଶିଳ୍ପ, ପୋଥିଚିତ୍ର, ବାଉଁଶ ପତ୍ରରେ ପ୍ରତିଲିପି ରଚନା ଓ କସ୍ତଶିଳ୍ପ ସହ ଗୀତ ଗୋବିନ୍ଦ ମଧ୍ୟ ଜଡ଼ିତ ।

କବିଙ୍କ ସାଧନା କାଳ ଥିଲା ବୈଷ୍ଣବ ଧର୍ମ ଅଭ୍ୟୁଦୟର ଯୁଗ । କବି ବିଷ୍ଣୁ ଭକ୍ତ ଥିବାରୁ ଗୀତଗୋବିନ୍ଦରେ କୃଷ୍ଣ ଉପାସନାର ମହତ୍ତ୍ୱ ଦର୍ଶାଇବା ଅବକାଶରେ ଶ୍ରୀକୃଷ୍ଣ ଓ ରାଧାଙ୍କ ପ୍ରେମଲୀଳାକୁ ସରସ ଭାବେ ଉପସ୍ଥାପିତ କରିଅଛନ୍ତି । ମାତ୍ର ଏହା ସ୍ଥାନେ ସ୍ଥାନେ ଅତୀବ ଆଦ୍ୟରସାକ୍ରାନ୍ତ ହୋଇଅଛି । ଶ୍ରୀମଦ୍ ଭାଗବତରେ ଶ୍ରୀରାଧାଙ୍କ ପ୍ରସଙ୍ଗ ନଥିଲେ ହେଁ ଜୟଦେବଙ୍କ ଲେଖନୀରେ ଶ୍ରୀରାଧା କୃଷ୍ଣାନୁରାଗିଣୀ ଶ୍ରେଷ୍ଠ ନାୟିକା ରୂପେ ଚିତ୍ରିତା । ଗୀତ ଗୋବିନ୍ଦରେ ଅନ୍ୟାନ୍ୟ ଗୋପବଧୂଙ୍କ ବିଷୟରେ ଉଲ୍ଲେଖ ଥିଲେ ହେଁ ସେମାନଙ୍କୁ ଏଥିରେ କୌଣସି ନିର୍ଦ୍ଦିଷ୍ଟ ଚରିତ୍ର ସଂପନ୍ନ କରାଯାଇ ନାହିଁ । କବି ଭାଗବତରେ ବର୍ଣ୍ଣିତ ବିଷ୍ଣୁଙ୍କ ଅବତାର କ୍ରମକୁ ସ୍ୱୀକାର ନ କରି ଦଶାବତାରର ଯେଉଁ ପରିକଳ୍ପନା କରିଅଛନ୍ତି ତାହାର ଅଭିନବତ୍ୱ ଅନସ୍ୱୀକାର୍ଯ୍ୟ । କବି ଜଗନ୍ନାଥଙ୍କୁ ଉପଲକ୍ଷ୍ୟ କରି "ଜୟ ଜଗଦୀଶ ହରେ" ଶବ୍ଦ ବ୍ୟବହାର କରିଥିବା ସମୀଚୀନ ମନେହୁଏ ।

ଜୟଦେବଙ୍କ ଜନ୍ମସ୍ଥାନ ଯେଉଁଠି ହେଉନା କାହିଁକି ସିଏ ଯେ ଭାରତୀୟ ସାହିତ୍ୟର ଉଜ୍ଜ୍ୱଳରତ୍ନ ଏ ବିଷୟରେ ସନ୍ଦେହର ଅବକାଶ ନାହିଁ । ଧର୍ମଗ୍ରନ୍ଥଭାବରେ ଗୀତଗୋବିନ୍ଦର ମହତ୍ତ୍ୱ ଯାହା ହେଉନା କାହିଁକି ସୁଲଳିତ ପଦ ଯୋଜନା କ୍ଷେତ୍ରରେ ତାହା ଯେ ଏକ ଅତୁଳନୀୟ ସୃଷ୍ଟି ଏହା ସର୍ବଜନ ସ୍ୱୀକୃତ । ସଂସ୍କୃତ ଭାଷା ଯେ ସରଳ, ତରଳ, ସୁଲଳିତ ହୋଇପାରେ ଏହା ତାହାର ଅନ୍ୟାନ୍ୟ ଦୃଷ୍ଟାନ୍ତ । ଅନୁପ୍ରାସ ଅଳଂକାର ଯୋଜନା ଯୋଗୁଁ ତାହାଙ୍କ ରଚନା ସର୍ବତ୍ର କମନୀୟ ଓ ସୁମଧୁର । ଦ୍ରାକ୍ଷାର କୋମଳତା ଓ ମିଷ୍ଟତା ପରି ଗୀତଗୋବିନ୍ଦର ପ୍ରତ୍ୟେକଟି ଗୀତର ପ୍ରତ୍ୟେକଟି ପଦରେ ମାଧୁର୍ଯ୍ୟ ପରିବ୍ୟାପ୍ତ । ଗୀତଗୋବିନ୍ଦର

ଯେକୌଣସି ପଦକୁ ଏ ସମ୍ପର୍କରେ ଦୃଷ୍ଟାନ୍ତରୂପେ ଉପସ୍ଥାପିତ କରାଯାଇପାରେ । ପଦଲାଳିତ୍ୟ ଦୃଷ୍ଟିରୁ ତାହା କିପରି ଅତୁଳନୀୟ ତାହା ନିମ୍ନୋକ୍ତ ପଦଟିରୁ ଅନୁମେୟ ।

ଲଳିତ ଲବଙ୍ଗଲତା ପରିଶୀଳନ କୋମଳ ମଳୟ ସମୀରେ
ମଧୁକର ନିକର କରମ୍ବିତ କୋକିଳ କୂଜିତ କୁଂଜ କୁଟୀରେ ।
ବିହରତି ହରିରିହ ସରସ ବସନ୍ତେ
ନୃତ୍ୟତି ଯୁବତି ଜନେନ ସମଂ ସଖି ବିରହି ଜନସ୍ୟ ଦୁରନ୍ତେ ।'

(୧।୨୮)

ଗୀତ ଗୋବିନ୍ଦରେ ୧୨ଟି ସର୍ଗ ଓ ଏଥିରେ ମୋଟ ୨୪ ଗୋଟି ଗୀତ ନିହିତ । ଏହି ଗୀତଗୁଡ଼ିକ ସହ ପ୍ରସଙ୍ଗର ସମ୍ପର୍କ ଓ ଅଗ୍ରଗତି ଦର୍ଶାଇବା ଲାଗି କେତେକ ଶ୍ଲୋକ ଗୀତମାନଙ୍କର ଆଦ୍ୟ ଓ ପ୍ରାନ୍ତରେ ସଂଯୋଜିତ ହୋଇଅଛି । କେତେକଙ୍କ ଅନୁମାନ, କେବଳ ଗୀତଗୁଡ଼ିକ ଜୟଦେବଙ୍କ ରଚନା; ଏଥିରେ ଥିବା ଶ୍ଲୋକଗୁଡ଼ିକ ପ୍ରକ୍ଷିପ୍ତ । ପରଂପରା କ୍ରମେ ଏଥିରେ ମୋଟ ୭୨ଟି ଶ୍ଲୋକ ଥିଲା । ମାତ୍ର ଏବେ ମିଳୁଥିବା ଗୀତ ଗୋବିନ୍ଦରେ ଏହା ଅପେକ୍ଷା ପ୍ରାୟ ୩୦ରୁ ଅଧିକ ଶ୍ଲୋକ ପରିଦୃଷ୍ଟ ହୁଏ ।

ବୈଷ୍ଣବ ଭକ୍ତମାନେ ଏହାକୁ ଏକ ଭକ୍ତିଗ୍ରନ୍ଥଭାବେ ଗ୍ରହଣ କରଥା'ନ୍ତି । ମାତ୍ର ଗାନଯୋଗ୍ୟ ସୁଲଳିତ ପଦ ଯୋଜନା ହିଁ ଏହାର ଜନପ୍ରିୟତାର ମୁଖ୍ୟ କାରଣ । ବସ୍ତୁତଃ ଏଥିରେ ଭକ୍ତିଭାବ ଅପେକ୍ଷା ସାଂଗୀତିକ ସୁଷମା ହିଁ ଅଧିକ ପ୍ରକଟିତ । ରବୀନ୍ଦ୍ରନାଥ ଠାକୁରଙ୍କ ଉକ୍ତି ଏହି ଦୃଷ୍ଟିରୁ ଯଥାର୍ଥ ମନେହୁଏ । ସେ ଲେଖିଥିଲେ "ଏହି ଗୀତ ଗୋବିନ୍ଦରେ ଗୀତ ଥାଇପାରେ, କିନ୍ତୁ 'ଗୋବିନ୍ଦ' ଅଛନ୍ତି କି ନାହାନ୍ତି ମୋର ସମ୍ପୂର୍ଣ୍ଣ ସନ୍ଦେହ ଅଛି ।"

ବିଭିନ୍ନ ଶତାବ୍ଦୀରେ ଭାରତର ବିଭିନ୍ନାଞ୍ଚଳରେ ପଣ୍ଡିତଗଣ ଏହି ଗ୍ରନ୍ଥ ସମ୍ପର୍କରେ ଶହେରୁ ଅଧିକ ଟୀକାଗ୍ରନ୍ଥ ସଂସ୍କୃତରେ ରଚନା କରିଯାଇ ଅଛନ୍ତି । ଏହି ଟୀକାମାନଙ୍କ ମଧ୍ୟରେ ୧୪ଶ ଶତାବ୍ଦୀରେ

ରଚିତ ମୈଥିଳ ପଣ୍ଡିତ ଜଗଦ୍ଧର କୃତ "ସାର ଦୀପିକା" ଟିକା ଏପର୍ଯ୍ୟନ୍ତ ମିଳିଥିବା ଟୀକାମାନଙ୍କ ମଧ୍ୟରେ ପ୍ରାଚୀନତମ ମନେହୁଏ । (୧) ଅବଶ୍ୟ ଏହା ପୂର୍ବରୁ ମଧ୍ୟ ଗୀତ ଗୋବିନ୍ଦର ଅନ୍ୟାନ୍ୟ ଟୀକା ରଚିତ ହୋଇ-ଥିବାର ଉଲ୍ଲେଖ ମିଳୁଅଛି । ମାତ୍ର ସେଗୁଡ଼ିକ ଏପର୍ଯ୍ୟନ୍ତ ମୁଦ୍ରିତ ହୋଇ-ନାହିଁ । ଓଡ଼ିଶାରେ ରଚିତ ଗୀତଗୋବିନ୍ଦର ଟୀକାଗ୍ରନ୍ଥମାନଙ୍କ ମଧ୍ୟରେ କବିରାଜ ନାରାୟଣ ଦାସଙ୍କ 'ସର୍ବାଙ୍ଗ ସୁନ୍ଦରୀ ଟୀକା' (୧୪ଶ ଶତାବ୍ଦୀ) ପ୍ରାଚୀନତମ ।

**ଚରିତ୍ର**—ଗୀତଗୋବିନ୍ଦରେ ରାଧା, କୃଷ୍ଣ ଓ ସଖୀ ଏହି ୩ ଗୋଟି ଚରିତ୍ରକୁ ହିଁ ଆମେ ଦେଖିବାକୁ ପାଇଥାଉଁ । କବି ରାଧାକୃଷ୍ଣଙ୍କ ପ୍ରଣୟ ଲୀଳାରେ ସଖୀ ଭୂମିକାକୁ ମଧ୍ୟ ଯଥେଷ୍ଟ ଗୁରୁତ୍ୱ ଦେଇଅଛନ୍ତି ।

**ଶ୍ରୀରାଧା**—ଭାଗବତରେ କେବଳ ଗୋପୀମାନଙ୍କ ସହ ଶ୍ରୀକୃଷ୍ଣଙ୍କ ଅନୁରାଗର ଚିତ୍ର ମିଳେ । ମାତ୍ର ଜୟଦେବଙ୍କ ସର୍ବାଧିକ କୃତିତ୍ୱ ଶ୍ରୀକୃଷ୍ଣଙ୍କ ପରମ ପ୍ରେମାନୁରାଗିଣୀରୂପେ ସେ ଶ୍ରୀରାଧାଙ୍କର ଅବତାରଣା । ଶ୍ରୀକୃଷ୍ଣ ବସନ୍ତକାଳରେ ଗୋପୀମାନଙ୍କୁ ଆଦର ପ୍ରଦର୍ଶନ କରୁଥିବା ଦେଖି ରାଧାଙ୍କ ହୃଦୟରେ କ୍ଷୋଭ ଜାତ ହୋଇଛି । ନିଜର ଉତ୍କର୍ଷ କ୍ଷୁଣ୍ଣ ହେଲା ବୋଲି ସେ ଅନୁଭବ କରିଛନ୍ତି । (୨) ରାସୋତ୍ସବର ବିଳାସ ଓ କୃଷ୍ଣଙ୍କ ସହ ପରିହାସ ଲୀଳା ସେ ସ୍ମରଣ କରିଛନ୍ତି ଓ ତାହା ସଖୀ ନିକଟରେ ଅକପଟରେ ପ୍ରକାଶ କରିଛନ୍ତି । (୩)

ସଖୀ ମୁଖରେ ବିରହାକୁଳିତା ଶ୍ରୀରାଧାଙ୍କ ଅବସ୍ଥାର ଚିତ୍ର ଅଭିବ୍ୟକ୍ତ ଲାଭ କରିଛି । ରାଧା ଏବେ ଚନ୍ଦନ ଓ ଚନ୍ଦ୍ର କିରଣକୁ ନିନ୍ଦା କରୁଛନ୍ତି । (୪) ନବମ ଗୀତରେ ମଧ୍ୟ ସେଇ ବିରହ ବ୍ୟାକୁଳତା ବର୍ଣ୍ଣିତ ହୋଇଛି । ରାଧା କୁଞ୍ଜକୁ ଆସିବା ପରେ କୃଷ୍ଣଙ୍କ ଦେଖା ନପାଇ

---

(୧) ଶ୍ରୀଜୟଦେବ ଓ ଗୀତଗୋବିନ୍ଦ—ପୃ ୩୦୦ ।

(୨) 'ବିହରତି ବନେ ରାଧା ସାଧାରଣ ପ୍ରଣୟେ ହରୌ
ବିଗଳିତ ନିଜୋତ୍କର୍ଷଦୀର୍ଷାବଶେନ ଗତାନ୍ୟତଃ ।' (୨।୧)

(୩) 'ରାସେ ହରିମିହ ବିହିତ ବିଳାସମ୍
ସ୍ମରତି ମନୋମମ କୃତ ପରିହାସମ୍ ।' (୨ୟ ଗୀତର ଧ୍ରୁବପଦ)

(୪) 'ନିନ୍ଦତି ଚନ୍ଦନମିନ୍ଦୁ ମନୁ ବିନ୍ଦତି ଖେଦମଧୀରମ ।' (ଗୀତ ନଂ ୮)

'ସଖୀଜନ ବଚନ ବଞ୍ଚିତା' ହେବାରୁ ବିଳାପ କରିଛନ୍ତି । (୧୩ଶ ଗୀତ) ଓ କୃଷ୍ଣ ଅନ୍ୟ କେଉଁ ସୌଭାଗ୍ୟବତୀ ନାରୀ ସହ ରତିବିଳାସରେ ମତ୍ତ ଅଛନ୍ତି ('କାପି ମଧୁରି ପୁନା ବିଳସତି ଯୁବତୀ ତ୍ୱଧିକ ଗୁଣା') ଭାବି ପ୍ରଥମେ ଈର୍ଷାଯୁକ୍ତା ହୋଇଛନ୍ତି । (୧୪ଶ ଓ ୧୫ଶ ଗୀତ) । କିନ୍ତୁ ଏହାପରେ ତାହାଙ୍କ ଈର୍ଷାର ଅବସାନ ହୋଇଛି ଓ ସେ ବିପ୍ରଲବ୍ଧା (୫) ଭାବେ ବିଚିତ୍ର ହୋଇଛନ୍ତି । ଏଣୁ ସେ କହିଛନ୍ତି 'ଯେଉଁ ନାରୀ କୃଷ୍ଣଙ୍କୁ ପାଇଛି ସେ ଧନ୍ୟା' (ସଖି ଯା ରମିତା ବନମାଳିନା-୧୬ଶ ଗୀତ) । ୭ମ ସର୍ଗର ସମସ୍ତ ଗୀତ ଶ୍ରୀରାଧାଙ୍କ ଭାବନା ସମ୍ବଳିତ । ଏହାପରେ କୁଞ୍ଜକୁ କୃଷ୍ଣଙ୍କ ଆଗମନ ଓ ତାଙ୍କଠାରେ ଅନ୍ୟ ନାରୀର ସମ୍ଭୋଗ ଚିହ୍ନ ଦେଖି ରାଧା କୋପାନ୍ୱିତା ହୋଇ କୃଷ୍ଣଙ୍କୁ 'ହରିହରି ଯାହି ମାଧବ ଯାହି' କହି ତାଡ଼ନା କରିଛନ୍ତି । (୧୭ଶ ଗୀତ) । କୃଷ୍ଣଙ୍କ ସ୍ତୁତି ଓ ସଖୀର ପ୍ରବୋଚନା ପରେ ରାଧାଙ୍କ ମାନଭଞ୍ଜନ ହୋଇଛି ଓ କୃଷ୍ଣଙ୍କ ସହ ସେ ମିଳିତ ହୋଇଛନ୍ତି । ପରିଶେଷରେ ରାଧାଙ୍କୁ ଆମେ ସ୍ୱାଧୀନ ଭର୍ତ୍ତୃକା (୬) ରୂପେ ଦେଖୁ । ମିଳନ ପରେ ସେ ଆପଣାକୁ ସୁସଜ୍ଜିତ କରିଦେବା ଲଗି କୃଷ୍ଣଙ୍କୁ ଅନୁନୟ କରିଛନ୍ତି (ଗୀତ ନଂ ୨୪) । ଏହିପରି ଭାବେ ଶ୍ରୀରାଧାଙ୍କୁ କବି ଏହି କାବ୍ୟରେ କୃଷ୍ଣାନୁରାଗିଣୀ ଶ୍ରେଷ୍ଠ ପ୍ରେୟସୀ ରୂପରେ ଚିତ୍ରଣ କରିଛନ୍ତି ।

---

(୫) ବିପ୍ରଲବ୍ଧା—

'ପ୍ରିୟଃ କୃତ୍ୱାପି ସଙ୍କେତଂ ଯସ୍ୟା ନାୟାତି ସନ୍ନିଧିମ୍
ବିପ୍ରଲବ୍ଧାପି ସା ଜ୍ଞେୟା ନିତାନ୍ତମବମାନିତା ।'

ଅର୍ଥାତ୍, ପ୍ରିୟ ସଙ୍କେତ ଦେଇ ମଧ୍ୟ ଦୈବାତ୍ କୌଣସି କାରଣରୁ ନ ଆସିବାରୁ ଯେଉଁ ନାୟିକା ଅପମାନିତା ବା ନିର୍ବେଦ ପରାୟଣା ହୁଏ, ତାହାକୁ ବିପ୍ରଲବ୍ଧା କହନ୍ତି ।

(୬) ସ୍ୱାଧୀନ ଭର୍ତ୍ତୃକା—

'କାନ୍ତୋ ରତିଗୁଣାକୃଷ୍ଟୋ ନ ଜହାତି ଯଦନ୍ତିକମ୍
ବିଚିତ୍ର ବିଭ୍ରମାସକ୍ତା ସା ସ୍ୟାତ ସ୍ୱାଧୀନ ଭର୍ତ୍ତୃକା ।' ସାହିତ୍ୟ ଦର୍ପଣ

ଅର୍ଥାତ୍, ରତି ଗୁଣରେ ଆକୃଷ୍ଟ ହୋଇ ଯେଉଁ ନାୟିକାର ସ୍ୱାମୀ କେବେ ହେଲେ ତାହାକୁ ପାଖରୁ ଛାଡ଼ିଦିଏ ନାହିଁ, ବିଚିତ୍ର ହାବ ଭାବ ପ୍ରକାଶରେ ନିପୁଣା ସେହି ନାୟିକାକୁ ସ୍ୱାଧୀନ ଭର୍ତ୍ତୃକା କହନ୍ତି ।

ଶ୍ରୀକୃଷ୍ଣ—ଶ୍ରୀକୃଷ୍ଣଙ୍କ ବସନ୍ତ ଲୀଳାରୁ ହିଁ ଯଥାର୍ଥତଃ ଗୀତଗୋବିନ୍ଦର ଆରମ୍ଭ । ଚନ୍ଦନ ଚର୍ଚ୍ଚିତ, ପୀତବସନଧାରୀ କୃଷ୍ଣ ମୁଗ୍ଧ ଗୋପବଧୂଙ୍କ ସହ କେଳିପୁରରେ ବିଳାସ କରୁଛନ୍ତି । (ଗୀତ ନଂ ୪) ମାତ୍ର ସେ ରାଧାଗତ ପ୍ରାଣ । ରାଧାଙ୍କ ସ୍ମୃତିରେ ସେ ହୋଇଛନ୍ତି ଅନୁଭାବିତ । ଏଣୁ ସେ ବ୍ରଜସୁନ୍ଦରୀଙ୍କ ବିହାର ପରିତ୍ୟାଗ କରିଛନ୍ତି (୭) । ରାଧାଙ୍କ ମନରେ ଦୁଃଖ ଦେଇଥିବାରୁ ସେ ଦୁଃଖିତ ଓ ଅନୁତପ୍ତ । ଏଣୁ ସେ କହୁଛନ୍ତି—ରାଧାଙ୍କୁ ନ ପାଇଲେ ମୋର ସବୁ ବୃଥା; ଧନ, ଜନ, ଗୃହ ଜୀବନରେ ବା କି ପ୍ରୟୋଜନ (୮) । ସଖୀ ମଧ୍ୟ ରାଧାଙ୍କ ସମ୍ମୁଖରେ ଶ୍ରୀକୃଷ୍ଣଙ୍କ ବିରହ ବିଧୂର, ଅବସ୍ଥା ବର୍ଣ୍ଣନା କରି କହୁଛି 'ସେ ଏବେ ନିଜର ଆରାମପ୍ରଦ ଗୃହ, ଲଳିତ ବାସଭବନ ତ୍ୟାଗ କରି ବନରେ ରହୁଛନ୍ତି ଏବଂ ଭୂମିରେ ଲୋଟି ତୁମ ନାମ ଉଚ୍ଚାରଣ କରି ବହୁ ବିଳାପ କରୁଛନ୍ତି । (୯)

କୃଷ୍ଣ ରାଧାଙ୍କ ନିକଟରେ ପ୍ରଭାତ କାଳରେ ଉପସ୍ଥିତ ହେଲେ । କୃଷ୍ଣଙ୍କଠାରେ ଅନ୍ୟନାରୀ ସମ୍ଭୋଗର ଚିହ୍ନ ପରିଲକ୍ଷିତ ହେଉଛି । ଏଣୁ ରାଧା ତାଙ୍କୁ କଠୋର ଭାବେ ପ୍ରତ୍ୟାଖ୍ୟାନ କରିଛନ୍ତି । ରାଧାଙ୍କ ଦ୍ୱାରା ଉପେକ୍ଷିତ ହେବା ପରେ ଶ୍ରୀକୃଷ୍ଣଙ୍କ ଗୂଢ଼ୋକ୍ତି ଓ ବିନୟୋକ୍ତି ଜୟଦେବଙ୍କ ଏକ ଅପୂର୍ବ ପରିକଳ୍ପନା (୧୦) । ଏହା ପରେ କବି ଶ୍ରୀକୃଷ୍ଣଙ୍କ ରତି ଲାଳସ ରୂପ ଚିତ୍ରଣ କରିଛନ୍ତି । ଏତେ ବିନୟ, ଆତୁରତା ଓ ରୂପ ପ୍ରଶସ୍ତି ପରେ କେଉଁ ନାରୀର ହୃଦୟ ବା ଦ୍ରବୀଭୂତ ନ ହେବ ? ରାଧାଙ୍କ

---

(୭) 'ରାଧାମାଧାୟ ହୃଦୟେ ତତ୍ୟାଜ ବ୍ରଜ ସୁନ୍ଦରୀଃ' (୩।୧)

( ) 'କିଂଧନେନ ଜନେନ କିଂ ମମ ଜୀବିତେନ ଗୃହେଣ ।'

(୯) 'ବସତି ବିପିନ ବିତାନେ ତ୍ୟଜତି ଲଳିତ ଧାମ ।
ଲୁଠତି ଧରଣୀ ଶୟନେ ବହୁ ବିଲପତି ତବନାମଃ।' ( ୧୦ମ । ୫ମ ପଦ )

(୧୦) 'ପ୍ରିୟେ ଚାରୁଶୀଳେ ମୁଞ୍ଚମୟି ମାନମନିଦାନଂ
ସପଦି ମଦନାନଲୋ । ଦହତି ମମ ମାନସଂ ଦେହିଂ ମୁଖ କମଳ ମଧୁପାନ ।'
( ଗୀତ ନଂ ୧୯ )

(ହେ ସୁଚରିତା, ମାନ ତ୍ୟାଗ କର । ସେତିକିବେଳୁ ମଦନାନଳରେ ମୋ ମନ ଦଗ୍ଧ ହେଉଛି । ତୁମ ମୁଖପଦ୍ମର ମଧୂପାନ କରିବାକୁ ଦିଅ ।

ମାନ ଭଞ୍ଜନ ହୋଇଛି । ଶ୍ରୀକୃଷ୍ଣଙ୍କ ହୃଦୟ ମଧ୍ୟ ହୋଇଛି ଉଚ୍ଛ୍ୱସିତ । ଚନ୍ଦ୍ରଦର୍ଶନରେ ସମ୍ଭୁବ୍ଧ ଚଞ୍ଚଳ ଓ ତୁଙ୍ଗ ତରଙ୍ଗ ସଙ୍କୁଳ ହେଲାପରି ରାଧାଙ୍କ ( ପ୍ରଫୁଲ୍ଲ ) ବଦନ ବିଲୋକନ କରି ଶ୍ରୀକୃଷ୍ଣଙ୍କ ମନରେ ବିବିଧଭାବ ବିକାର ପରିଲକ୍ଷିତ ହେଲା (୧୧) । ରାଧାଙ୍କୁ ସେ ସାଦରେ ମିଳନ ପୀଠକୁ ବରଣ କରି ନେଇଛନ୍ତି ।

ଏହିପରି କୃଷ୍ଣଙ୍କୁ ମଧ୍ୟ କବି ରାଧାଗତପ୍ରାଣ, ରାଧାଭାବ ସର୍ବସ୍ୱ ରୂପେ ଚିତ୍ରଣ କରିଛନ୍ତି । ଏହି ଯୁଗଳ ପ୍ରଣୟରେ କୌଣସି ସଂଘର୍ଷ, ସଂଘାତ ବା ଦ୍ୱନ୍ଦ୍ୱର ଆଭାସ ମିଳେ ନାହିଁ । ଏହା ଯେପରି ଅନ୍ୟୋନ୍ୟ ସେହିପରି ଏକନିଷ୍ଠ । ସମ୍ଭୋଗ ଓ ମିଳନରେ ହିଁ ଏହି ବ୍ୟାକୁଳ ପ୍ରଣୟର ପରିସମାପ୍ତି ।

**ସଖୀ**—ଗୀତ ଗୋବିନ୍ଦରେ ସଖୀ ନାମହୀନା, ମାତ୍ର ସେ ହୃଦୟ ହୀନା ନୁହେଁ । ରାଧା ଓ କୃଷ୍ଣଙ୍କୁ ସମ୍ମିଳିତ, କରାଇବାରେ ତାହାର ଭୂମିକା ବେଶ୍ ଗୁରୁତ୍ୱପୂର୍ଣ୍ଣ । ସର୍ବାଦୌ ସେ ଶ୍ରୀରାଧାଙ୍କ ବିରହ ଅବସ୍ଥା ଶ୍ରୀକୃଷ୍ଣଙ୍କ ନିକଟରେ ନିବେଦନ କରିକହିଛି "ସେ (ରାଧା) ଏବେ ତୁମ ବିରହରେ କାତର ହୋଇ କନ୍ଦର୍ପଶର ଭୟରେ ତୁମ କଥା ଭାବିବାରେ ଆତ୍ମ ବିସ୍ମୃତ (୧୨) ।"

ଏହାପରେ ସେ ରାଧାଙ୍କ ନିକଟରେ ଉପନୀତ ହୋଇ ତାଙ୍କୁ କୃଷ୍ଣଙ୍କ ନିକଟକୁ ଅଭିସାର କରିବାପାଇଁ କହିଛି—(ଗୀତ ନଂ ୧୦, ଓ ୧୧ ) କବି ତାହାଙ୍କ ଅନ୍ୟତମ ସୁପ୍ରସିଦ୍ଧ ଗୀତରେ ଏହାକୁ ଅତି ସୁନ୍ଦର ଓ ସରସ ଭାବେ ବର୍ଣ୍ଣନା କରି ଲେଖିଛନ୍ତି—"ହେ ନିତମ୍ବିନି । ତୁମର ହୃଦୟେଶ୍ୱର ମଦନ ମନୋହର ବେଶରେ ରତି ସୁଖର ସାର ସ୍ୱରୂପ ଅଭିସାର କରିଅଛନ୍ତି । ତୁମେ ଯିବାରେ ଆଉ ବିଳମ୍ବ କରନା ।

---

(୧୧) 'ରାଧା ବଦନ ବିଲୋକନ ବିକଶିତ ବିବିଧ ବିକାରବିଭଙ୍ଗ;
ଜଳନିଧିମିବ ବିଧୁମଣ୍ଡଳ ଦର୍ଶନ ତରଳିତ ତୁଙ୍ଗ ତରଙ୍ଗ ।' ( ଗୀତ ନଂ ୨୨ )

(୧୨) 'ସା ବିରହେ ତବ ଦୀନା ମାଧବ ମନସିଜ
ବିଶିଖ ଭୟାଦିବଭାବ ନୟା ତ୍ୱୟି ଲୀନା ।' ( ଗୀତ ନଂ ୮ )

ତାଙ୍କୁ ଅନୁସରଣ କର (୧୩) । ଏହା ପରେ ସେ ମିଳନ କୁଞ୍ଜକୁ ଆସିଛି ଓ ଏଠାରେ କୃଷ୍ଣଙ୍କ ନିକଟରେ ବାସକସଜ୍ଜା ରାଧାଙ୍କ ବିଷୟ ଉପସ୍ଥାପିତ କରିଛି ( ଗୀତ ନଂ ୧୨ ) । ୭ମ ସର୍ଗର ସମସ୍ତ ଗୀତ ( ନଂ ୧୩, ୧୪, ୧୫, ୧୬ ) ଶ୍ରୀରାଧାଙ୍କ ଭାବନା ବା ଉକ୍ତି । ଏହା ସଖୀ ନିକଟରେ ବ୍ୟକ୍ତ ହୋଇଥିବା ଅନୁମେୟ । ଏଣୁ ସଖୀ ହେଉଛି ରାଧାଙ୍କ ଉତ୍କଣ୍ଠିତା, ବିପ୍ରଲବ୍ଧା, ଖଣ୍ଡିତା ରୂପର ନିରବଦ୍ରଷ୍ଟା । କୃଷ୍ଣ ରାଧାଙ୍କ ଲାଗି ଅଭିସାର କରିଛନ୍ତି ଏହା ସେ ଜାଣିପାରିଛି ଓ ରାଧାଙ୍କୁ ସୂଚିତ କରି କହିଛି—"ହରି ଅଭିସାର କରି ଆସିଛନ୍ତି । ମୃଦୁ ପବନ ବହୁଛି । ( କୃଷ୍ଣଙ୍କ ପରିବର୍ତ୍ତେ ) ଘରକୁ ଯାଇ କେଉଁ ଅଧିକ ସୁଖ ବା ମିଳିବ ? ହେ ମାନବତୀ ରାଧା ! ମାଧବଙ୍କ ଉପରେ ଆଉ ରାଗ କରନା" (୧୪) ।

ରାଧାକୃଷ୍ଣଙ୍କ ମିଳନ ପୂର୍ବରୁ ସେ ରାଧାଙ୍କୁ ଶ୍ରୀକୃଷ୍ଣ ତାଙ୍କର ଅନୁଗତ ଏହା ଜଣାଇଛି ଓ ରାଧାଙ୍କୁ ମାଧବଙ୍କ ନିକଟକୁ ନେଇ କହିଛି···"ଅତି-ମନୋହର କେଳି ସଦନରେ ରତିରସାବେଶରେ ମଦା ସୁଖରେ ମତ୍ତହୁଅ । ମାଧବ ନିକଟକୁ ଯାଅ" (୧୫) । ସଖୀ ଏହିପରି ଭାବେ ରାଧାକୃଷ୍ଣଙ୍କ ବିରହର ସାଥୀ ଓ ମିଳନର ପରିପୂରିକା ରୂପେ ଏଥିରେ ଚିତ୍ରିତା ।

### ଛନ୍ଦ, ରାଗ ଓ ତାଳ :

ଗୀତ ଗୋବିନ୍ଦର ଗୀତ ଗୁଡ଼ିକରେ ମାତ୍ରା ଛନ୍ଦର ବିଧି ଅନୁସୃତ ହୋଇଥିଲେହେଁ ଏଥିରେ ପ୍ରାକୃତ ଅପଭ୍ରଂଶ ଛନ୍ଦର ପ୍ରଭାବ ସୁସ୍ପଷ୍ଟ । ନିମ୍ନୋକ୍ତ ପ୍ରାକୃତ 'ଶରଭ' ଛନ୍ଦ ଅନୁକରଣରେ ତାହାଙ୍କ 'ହରିରିତି

---

(୧୩) 'ରତିସୁଖସାରେ ଗତ ମଭିସାରେ ମଦନ ମନୋହର ବେଶମ୍
ନ କୁରୁ ନିତମ୍ବିନି ଗମନ ବିଲମ୍ବନ ମନୁସରଣଂ ହୃଦେୟଶମ୍ ।'

(୧୪) 'ହରି ଅଭିସରତି ବହତି ମୃଦୁ ପବନେ
କିମ ପରମଧିକ ସୁଖଂ ସଖୀଭବନେ
ମାଧବେ ମାକୁରୁ ମାନିନି ମାନମୟେ ।' ( ଗୀତ ନଂ ୧୮ )

(୧୫) 'ମଂଜୁତର କୁଞ୍ଜତଳ କେଳି ସଦନେ
ପ୍ରବିଶ ରାଧେ ମାଧବ ସମୀପମିହ' ।

ଜଗତ ସକାମ’ ଗୀତଟି ରଚିତ ହୋଇଥିବା ଅନୁମେୟ । ପ୍ରକୃତ ‘ଶରଭ’ ବୃତ୍ତର ଉଦାହରଣ—

‘ତରଳ କମଳ ଦଳ ସରସଜ ଣଅଣା
ସରଅ ସମଅ ସସି ସୁସରସ ବଅଣା ।
ମଅଗଳ କରିବର ସଅଳସ ଗମଣୀ
କମଲ ସୁକଅ ଫଳ ବହି ଗଡ଼ୁ ତରୁଣୀ’

( ଅର୍ଥାତ୍ ଚଞ୍ଚଳ କମଳପତ୍ର ସଦୃଶ ନେତ୍ର ସମ୍ପନ୍ନା, ଶରତ କାଳୀନ ଚନ୍ଦ୍ର ସଦୃଶ ମୁଖ ବିଶିଷ୍ଟା, ମଦମତ୍ତ ହାତୀପରି ମନ୍ଥର ଗତି ସମ୍ପନ୍ନା, ରମଣୀଟିଏ ବ୍ରହ୍ମା କେଉଁ ସୁକୃତ ଫଳରୁ ଗଢ଼ିଅଛନ୍ତି ? )

ଏହି ଗୀତ ସହ ସାଦୃଶ୍ୟ ସମ୍ପନ୍ନ ଜୟଦେବଙ୍କ ଗୀତଟି ହେଉଛି—

“ହରିରିହ ହରିରିହ ଜଗତ ସ୍‌କାମଂ
ହରତି ବି ହିତ ମରଣେବ ନ୍‌କାମଂ”

କହିବା ଅନାବଶ୍ୟକ, ଏହି ଗୀତଟି ଷୋଡ଼ଶ ମାତ୍ରା ବିଶିଷ୍ଟ ଚ୍ୟାରିଗୋଟି ଖଣ୍ଡାଂଶରେ ବିଭକ୍ତ ଓ ଏଥିରେ ପ୍ରତ୍ୟେକ ଚ୍ଚରିମାତ୍ରା ପରେ ବିରାମ ନେବାକୁ ପଡ଼ିଥାଏ ।

ମାତ୍ରା ଚଳନ ଦୃଷ୍ଟିରୁ ଗୀତଗୋବିନ୍ଦର ଗୀତଗୁଡ଼ିକୁ ଚତୁର୍ମାତ୍ରିକ, ପଞ୍ଚମାତ୍ରିକ, ସପ୍ତମାତ୍ରିକ ଓ ମିଶ୍ର ଭେଦରେ ଚାରି ଭାଗରେ ବିଭକ୍ତ କରାଯାଇପାରେ । ବସନ୍ତ, ଭୈରବୀ, କର୍ଣ୍ଣାଟ ରାଗ ଗୀତ ଗୁଡ଼ିକରେ କବି ଚତୁର୍ମାତ୍ରିକ ଛନ୍ଦ ବ୍ୟବହାର କରିଅଛନ୍ତି । ମାଳବ ରାଗରେ ରଚିତ ଗୀତରେ ପଞ୍ଚମାତ୍ରିକ ଛନ୍ଦର ବ୍ୟବହାର ହୋଇଅଛି । ଯଥା––

‘ଯମୁନ ତୀରେ ନାପ୍ୟ ନିଶି ଗହନମପି ଶୀଳିତଂ
ତେନ ମମ ହୃଦୟମିଦ ଗହନମପି କଳିତଂ’ ।

**ସପ୍ତମାତ୍ରିକ ଛନ୍ଦର ଉଦାହରଣ :**

‘ଚନ୍ଦ୍ରୟାମି ତ୍‌ଦାନନଂ କୁଟିଳଭ୍ରୂ କୋପଭ୍‌ରେଣ
ଶୋଣ ପଦ୍ମମିବୋପରି ଭ୍ରମ ତାକୁନ୍ଦଂ ଭ୍ରମରେଣ’ (୩।୩)

ଏଇ ଗୀତମାନଙ୍କରେ ଜବ ମାଳବ ଗୌଡା, ମଙ୍ଗଳ ଗୁଜ୍ଜରୀ, ବସନ୍ତ, ରାମକେରୀ ଗୁଜ୍ଜରୀ, ଗୁଣ୍ଡକରୀ, କର୍ଣ୍ଣାଟ, ଦେଶାକ୍ଷ, ଦେଶବରାଡ଼ି, ମାଳବ, ଭୈରବ, ବିଭାସ ପ୍ରଭୃତି ବାର ଗୋଟି ରାଗର ଏବଂ ରୂପକ, ଅଷ୍ଟତାଳ, ଯତି, ଏକତାଳ ପ୍ରଭୃତି ତାଳର ଉଲ୍ଲେଖ କରିଅଛନ୍ତି । ଗୀତଗୋବିନ୍ଦର ଅବଶିଷ୍ଟ ଶ୍ଳୋକଗୁଡ଼ିକ ଅକ୍ଷର ବୃତ୍ତରେ ରଚିତ । ପ୍ରସଙ୍ଗକ୍ରମେ ଏଠାରେ ତାଙ୍କ ରଚନାରୁ କେତୋଟି ସ୍ମରଣୀୟ ମନୋଜ୍ଞ ପଦ ଏଠାରେ ଉଦ୍ଧାର କରାଯାଇଅଛି—

(୧) 'ଗୋବିନ୍ଦସ୍ୟ ମନୋରଥେନ ଚ ସମଂ
ପ୍ରାପ୍ତଂ ତମଃ ସାନ୍ଦ୍ରତାଂ ।'

(ଗୋବିନ୍ଦଙ୍କ ମନୋରଥ ଭଳି ଅନ୍ଧକାର ଗାଢ଼ତର ହେବାକୁ ଲାଗିଲା । ) (୫।୧୮)

(୨) ଗଣୟତି ଗୁଣଗ୍ରାମଂ ଭାମଂ ଭ୍ରମାଦପି ନେହତେ
ବହତି ଚ ପରିତୋଷଂ ଦୋଷଂ ବିମୁଞ୍ଚତି ଦୂରତଃ ।' ୨।୧୦

(ମୋର ମନ ତାହାଙ୍କ (ଶ୍ରୀକୃଷ୍ଣଙ୍କ) ଗୁଣ ସମୂହକୁ ବଡ଼କରି ଦେଖୁଛି । ଭୁଲରେ ମଧ୍ୟ କ୍ରୋଧଯୁକ୍ତ ହେଉନାହିଁ । ତାହାଙ୍କ ଦୋଷକୁ ଦୂରେଇ ଦେଇ ସନ୍ତୋଷକୁ ବହନ କରୁଛି ।)

(୩) ଯାଚତ୍ୱେନ ଶରଂ ବହନ୍ନୟି ମତି
ଶ୍ରାନ୍ତୋଽଭୂଶଂ ତାପିତଃ ୧୧।୨୨

( ତୁମକୁ ବହୁ ସମୟ ପର୍ଯ୍ୟନ୍ତ ଅନ୍ତରରେ ବହନ କରି ମୁଁ କ୍ଲାନ୍ତ )

(୪) ତ୍ୱମସି ମମ ଭୂଷଣଂ ତ୍ୱମସି ମମ ଜୀବନମ୍
ତ୍ୱମସି ମମ ଭବଜଳଧି ରତ୍ନମ୍ ।' ୧୦।୪

( ତୁମେ ମୋର ଭୂଷଣ ତୁମେ ମୋର ଜୀବନ, ତୁମେ ମୋର ସଂସାର ସାଗରରେ ରତ୍ନ ସ୍ୱରୂପ )

(୫) 'ବିରହୀ ନିକୃନ୍ତନ କୁନ୍ତ ମୁଖାକୃତି
କେତକୀ ଦନ୍ତୁରିତାଶେ ।' (୧।୩୨)

(କେତକୀ କୁସୁମ ଧଉଡ଼ମଣ୍ଡଳର ହାସ୍ୟ ସ୍ୱରୂପ)

(୬) 'ଯୁବଜନ ହୃଦୟ ବିଦାରଣ ମନସିଜ
ନଖରୁଚି କିଂଶୁକ ଜାଲେ ।' (୧।୩୦)

(ପଳାଶ ଫୁଲକୁ ଯୁବଜନଙ୍କ ହୃଦୟ ବିଦୀର୍ଣ୍ଣକାରୀ କାମଦେବର ନଖ ଭଳି ମନେ ହେଉଛି ) ।

(୭) ତ୍ୟଜତି ନ ପାଣିତଲେନ କପୋଲମ୍
ବାଲଶଶିନମିବ ସାୟମ ଲୋଲମ୍ ।' (୪।୧୬)

(ସେ ହାତ ପାପୁଲିରୁ କପାଳକୁ ମୁକ୍ତ କରୁନାହିଁ । ତାକୁ ଦେଖିଲେ ମନେ ହେଉଛି ଯେପରି ସନ୍ଧ୍ୟା ବାଳଚନ୍ଦ୍ରକୁ ଧାରଣ କରିଛି) ।



# ବିଶ୍ୱନାଥ କବିରାଜ

ସଂସ୍କୃତ ସାହିତ୍ୟ ଇତିହାସରେ 'ସାହିତ୍ୟ ଦର୍ପଣ' ଗ୍ରନ୍ଥଟି ସୁପ୍ରସିଦ୍ଧ ଓ ବହୁ ଜନାଦୃତ । ସାହିତ୍ୟତତ୍ତ୍ୱ ସଂପର୍କୀୟ ଆଲୋଚନାତ୍ମକ ଗ୍ରନ୍ଥ ବା ଅଳଙ୍କାର ଗ୍ରନ୍ଥ ଭାବେ ଏହା ସମଗ୍ର ଭାରତୀୟ ବିଦ୍ୱାନ ଓ ସଂସ୍କୃତ ବିଦ୍ୟାର୍ଥୀଙ୍କ ନିକଟରେ ସୁପରିଚିତ । ଏହାର ରଚୟିତା ହେଉଛନ୍ତି ପ୍ରାଚୀନ ଉତ୍କଳର ଗଜପତି ରାଜାଙ୍କର ସଭାପଣ୍ଡିତ ବିଶ୍ୱନାଥ କବିରାଜ । ଚତୁର୍ଦ୍ଦଶ ଶତାବ୍ଦୀର ଶେଷାର୍ଦ୍ଧ ଓ ପଞ୍ଚଦଶ ଶତାବ୍ଦୀର ପ୍ରଥମ ଦୁଇ ଦଶକ ମଧ୍ୟରେ ସେ ଜୀବିତ ଥିଲେ । ଏହି ଗ୍ରନ୍ଥରୁ ରଚୟିତାଙ୍କ ଜୀବନ ଚରିତ ସମ୍ପର୍କରେ କେତେକ ବିଷୟ ଉପଲବ୍ଧ ହୋଇଥାଏ । ଏଥିରେ ସେ ଆପଣାକୁ ଉତ୍କଳ ରାଜାଙ୍କ 'ସାନ୍ଧି ବିଗ୍ରହିକ ମହାପାତ୍ର' ବା ବୈଦେଶିକ ବ୍ୟାପାର ବିଭାଗର ଅଧିକାରୀ "ଶ୍ରୀମନ୍ନାରାୟଣ ଚରଣାରବିନ୍ଦ ମଧୁବ୍ରତ,' 'ସାହିତ୍ୟାର୍ଣ୍ଣବ କର୍ଣ୍ଣଧାର,' 'ଧ୍ୱନି ପ୍ରସ୍ଥାନ ପରମାଚାର୍ଯ୍ୟ' 'କବି ସୂକ୍ତି ରତ୍ନାକର, 'ଅଷ୍ଟାଦଶ ଭାଷା ବାର ବିଳାସିନୀ ଭୁଜଙ୍ଗ' ନାମରେ ଅଭିହିତ କରିଛନ୍ତି । ଏଥିରୁ ଏହାହିଁ ପ୍ରତିପନ୍ନ ହୁଏ ଯେ, ସେ ଏକାଧାରରେ ଥିଲେ ରାଜନୀତିକୁଶଳ, ବିଷ୍ଣୁଭକ୍ତ, ସାହିତ୍ୟ ତତ୍ତ୍ୱ ଅଳଙ୍କାର ଶାସ୍ତ୍ରରେ ପ୍ରବୀଣ, ଧ୍ୱନିବାଦର ସମର୍ଥକ, କାବ୍ୟରସିକ ଓ ଅଷ୍ଟାଦଶ ଭାଷାରେ ସୁଦକ୍ଷ ।

ଓଡ଼ିଶାର ଏକ ଉଚ୍ଚ ସଂସ୍କୃତିସଂପନ୍ନ, ସୁପଣ୍ଡିତ ପ୍ରଖ୍ୟାତ କପିଞ୍ଜଳ ବଂଶରେ ସେ ଜନ୍ମ ହୋଇଥିଲେ । ସାହିତ୍ୟ ଦର୍ପଣରେ ସେ ଆପଣାର ବଂଶ ଗୌରବ ମଧ୍ୟ ପ୍ରଖ୍ୟାପନ କରିଅଛନ୍ତି । ତାହାଙ୍କ ବୃଦ୍ଧ ପ୍ରପିତାମହଙ୍କ ନାମ ଥିଲା ନାରାୟଣ ଦାସ । ସେ ଥିଲେ

ସାହିତ୍ୟ ପ୍ରେମୀ ଓ ଗଙ୍ଗବଂଶର ପ୍ରଥମ ନରସିଂହ ଦେବଙ୍କ ସଭା ପଣ୍ଡିତ । ବଂଶ ପରମ୍ପରା କ୍ରମେ ବିଶ୍ୱନାଥଙ୍କ ପିତାମହ ବିଳାସ ଦାସ ଓ ପିତା ଚନ୍ଦ୍ରଶେଖର ଉତ୍କଳ ରାଜାଙ୍କ ସଭା ପଣ୍ଡିତ ଓ କବି ଥିବା ସଙ୍ଗେ ସଙ୍ଗେ ବହୁ ରାଜକୀୟ ସମ୍ମାନଜନକ ପଦର ଅଧିକାରୀ ହୋଇପାରିଥିଲେ ।

ବିଶ୍ୱନାଥ କବିରାଜ ଉତ୍କଳର ଗଜପତି ଚତୁର୍ଥ ନରସିଂହଦେବଙ୍କ ରାଜସଭାରେ ପଣ୍ଡିତ ଓ ସାନ୍ଧିବିଗ୍ରହିକ ଥିଲେ । ଚତୁର୍ଥ ନରସିଂହଙ୍କ ରାଜତ୍ୱର ଶେଷଭାଗରେ ଓ ଗଜପତି ନିଶଙ୍କଭାନୁଦେବଙ୍କ ରାଜତ୍ୱର ପ୍ରଥମ ଭାଗରେ ସେ ଜୀବିତ ଥିଲେ ଓ ବହୁ ଗ୍ରନ୍ଥ ରଚନାରେ ଆପଣାକୁ ନିୟୋଜିତ କରିଥିଲେ । ଖ୍ରୀ ୧୪୦୦ରୁ ୧୪୨୫ ମଧ୍ୟରେ ତାଙ୍କର ସୁପ୍ରସିଦ୍ଧ ଅଳଙ୍କାର ଗ୍ରନ୍ଥ 'ସାହିତ୍ୟ ଦର୍ପଣ' ବିରଚିତ ହୋଇଥିବା ନିର୍ଦ୍ଧାରିତ ହୋଇଅଛି ।

ବିଶ୍ୱନାଥଙ୍କ ସାହିତ୍ୟ ସାଧନା କାଳ ହେଉଛି ଆଧୁନିକ ଭାରତୀୟ ଭାଷା ଓ ସାହିତ୍ୟର ଆଦିମ ଅବସ୍ଥା । ସେ ଯୁଗରେ ଭାରତରେ ବିଭିନ୍ନ ପ୍ରାକୃତ ଓ ଅପଭ୍ରଂଶ ଭାଷା ପ୍ରଚଳିତ ଥିଲା । ପରରାଷ୍ଟ୍ର ସଚିବ ଭାବେ କବି ଏହିସବୁ ଆଞ୍ଚଳିକ ଭାଷା ଶିକ୍ଷା କରିବା ସ୍ୱାଭାବିକ । ଏଥିପାଇଁ ସେ ଭାରତର ବିଭିନ୍ନ ଅଞ୍ଚଳକୁ ଯାଇଥିବା ମଧ୍ୟ ଅନୁମେୟ । ତୀର୍ଥକ୍ଷେତ୍ର ଭାବେ ସୁପ୍ରସିଦ୍ଧ ପୁରୀକୁ ଆସୁଥିବା ବ୍ୟକ୍ତିମାନଙ୍କଠାରୁ ମଧ୍ୟ ସେ ବିବିଧ ଭାଷା ଶିକ୍ଷା କରିବାର ସୁଯୋଗ ପାଇଥିବା ସମ୍ଭବପର । କବି ପ୍ରାକୃତ ଭାଷାରେ 'କୁବଳୟାଶ୍ୱ ଚରିତ' ନାମକ ଏକ କାବ୍ୟ ରଚନା କରିଥିବା ବିଷୟ ତାହାଙ୍କ 'ସାହିତ୍ୟ ଦର୍ପଣ'ରୁ ଜଣାଯାଏ । ଷୋଡ଼ଶ ଭାଷାକୁ ବ୍ୟବହାର କରି ସେ 'ପ୍ରଶସ୍ତି ରତ୍ନାବଳୀ' ନାମକ ଏକ ବିଚିତ୍ର ଗ୍ରନ୍ଥ ମଧ୍ୟ ପ୍ରଣୟନ କରିଥିଲେ । ସାହିତ୍ୟ ଦର୍ପଣରେ ସେ ବହୁ ପ୍ରାକୃତ ଗ୍ରନ୍ଥରୁ ଉଦ୍ଧୃତି ଦେଇଅଛନ୍ତି । ସଂସ୍କୃତ, ପ୍ରାକୃତ, ଶୌରସେନୀ, ପ୍ରାଚ୍ୟ, ଅବନ୍ତୀ, ନାଗର, ଅପଭ୍ରଂଶ ପ୍ରଭୃତି ଭାଷା ସମ୍ବଳିତ 'ଭାଷାସମ' ଅଳଙ୍କାରର ଉଦାହରଣସ୍ୱରୂପ ସ୍ୱରଚିତ ଗୋଟିଏ ଶ୍ଳୋକ ସେ ତାହାଙ୍କ ସାହିତ୍ୟ ଦର୍ପଣରେ ଉଦ୍ଧାର କରିଅଛନ୍ତି—ପଦ୍ୟଟି ହେଉଛି—

"ମଞ୍ଜୁଳମଣି ମଞ୍ଜୀରେ ! କଳ ଗମ୍ଭୀରେ, ବିହାର ସରସୀତୀରେ
ବିରସାସି କେଳକରେ ! କମାଳ !
ଧୀରେ ଚ ଗନ୍ଧସାର ସମୀରେ !"

"ଅର୍ଥାତ୍ ହେ ସଖୀ ! ମଧୁର ଓ ଗମ୍ଭୀର ଧ୍ୱନି କରୁଥିବା ମନୋରମ ମଣିମୟ ନୂପୁର ଉପରେ ତୁ ରାଗୁଛୁ କାହିଁକି ? କ୍ରୀଡ଼ା ସରୋବରକୁ ଯିବାପାଇଁ କାହିଁକି ବିରକ୍ତିବୋଧ କରୁଛୁ ? କ୍ରୀଡ଼ା ଶୁକ ଓ ମନ୍ଦ ମଳୟ ସମୀରଣ ଉପରେ ବିରକ୍ତ ହେଲେ ତୋର କ'ଣ ବା ଲାଭ ? ତୋର ପ୍ରିୟ ପାଖକୁ ଗଲେ ଏ ସବୁ ତୋତେ ଭଲ ଲାଗିବ ।"

'ସାହିତ୍ୟ ଦର୍ପଣ'ରେ ପଣ୍ଡିତ ବିଶ୍ୱନାଥ ସ୍ୱରଚିତ ସଂସ୍କୃତ ମହାକାବ୍ୟ 'ରାଘବ ବିଳାସ', ସଂସ୍କୃତ ନାଟକ 'ପ୍ରଭାବତୀ ପରିଣୟ', ଚନ୍ଦ୍ରକଳା ନାଟିକା, ପ୍ରାକୃତକାବ୍ୟ 'କୁବଳୟାଶ୍ୱ ଚରିତ', ଷୋଡ଼ଶ ଭାଷାମୟୀ 'ପ୍ରଶସ୍ତି ରତ୍ନାବଳୀ' ବିଷୟ ଉଲ୍ଲେଖ କରିଅଛନ୍ତି । 'ସାହିତ୍ୟ ଦର୍ପଣ'ରେ ଏହାଙ୍କ ରଚିତ କେତେକ ସଂସ୍କୃତ ଓ ପ୍ରାକୃତ ଗଦ୍ୟାଂଶର ଉଦାହରଣରୁ ସେ ଉଭୟ ଭାଷାରେ କେତେକ ଗଦ୍ୟଗ୍ରନ୍ଥ ମଧ୍ୟ ରଚନା କରିଥିବା ଅନୁମେୟ । 'ସାହିତ୍ୟ ଦର୍ପଣ' ରଚନା ପରେ ପଣ୍ଡିତ ବିଶ୍ୱନାଥ 'ନରସିଂହ ବିଜୟ' କାବ୍ୟ ପ୍ରକାଶର ଟୀକା "କାବ୍ୟ ପ୍ରକାଶ ଦର୍ପଣ" ରଚନା କରିଥିଲେ । ଏତଦ୍‌ବ୍ୟତୀତ ସେ 'କଂସବଧ', ଲକ୍ଷ୍ମୀସ୍ତବ' ନାମକ ପୁସ୍ତକ ଦୁଇଟି ରଚନା କରିଥିବା ବିଷୟ ତାହାଙ୍କ ପୁତ୍ର ଅନନ୍ତ ଦାସଙ୍କ ଗ୍ରନ୍ଥରୁ ଜଣାଯାଏ ।

'ସାହିତ୍ୟ ଦର୍ପଣ' ଗ୍ରନ୍ଥଟି ଦଶଗୋଟି ଅଧ୍ୟାୟରେ ପରିସମାପ୍ତ । ପ୍ରଥମ ଅଧ୍ୟାୟରେ କବି କାବ୍ୟର ସ୍ୱରୂପ ବା ସଂଜ୍ଞା ବିଷୟ ଆଲୋଚନା କରି କାବ୍ୟକୁ 'ରସାତ୍ମକ ବାକ୍ୟ' ବୋଲି ପ୍ରଖ୍ୟାପନ କରିଅଛନ୍ତି । ଦ୍ୱିତୀୟ ଅଧ୍ୟାୟରେ କାବ୍ୟରେ ବ୍ୟବହୃତ ଶବ୍ଦ ଓ ଭାବର ତିନିଗୋଟି ବୃତ୍ତି ବିଷୟ ଆଲୋଚିତ । ତୃତୀୟ ଅଧ୍ୟାୟରେ ରସ ଓ ଚତୁର୍ଥ ଅଧ୍ୟାୟରେ ଧ୍ୱନି ଓ ଗୁଣୀଭୂତ ବ୍ୟଙ୍ଗ ସମ୍ପର୍କରେ ଆଲୋଚନା କରାଯାଇଅଛି । ପଞ୍ଚମ ଅଧ୍ୟାୟରେ ବ୍ୟଞ୍ଜନା ବୃତ୍ତିର ପ୍ରତିଷ୍ଠା ବର୍ଣ୍ଣିତ । ୬ଷ୍ଠ, ୭ମ ଓ ୮ମ ଅଧ୍ୟାୟରେ ଯଥାକ୍ରମେ ନାଟ୍ୟତତ୍ତ୍ୱ, କାବ୍ୟର ଦୋଷ ଓ ଗୁଣ ବିଷୟ ବର୍ଣ୍ଣିତ । ୯ମ

ଅଧ୍ୟାୟରେ ଆଲୋଚକ ବୈଦର୍ଭୀ, ଗୌଡ଼ୀ, ପାଞ୍ଚାଳୀ ଓ ଲାଟୀ ଇତ୍ୟାଦି ରୀତିଗୋଟି ବୃତ୍ତିର ଓ ୧୦ମ ଅଧ୍ୟାୟରେ କାବ୍ୟରେ ବ୍ୟବହୃତ ଅଳଙ୍କାର ସମ୍ପର୍କରେ ଆଲୋଚନା କରିଅଛନ୍ତି ।

ମୋଟ ଉପରେ କାବ୍ୟାନୁଶୀଳନର ବିଭିନ୍ନ ପ୍ରସଙ୍ଗ ସମ୍ପର୍କରେ ପଣ୍ଡିତ ବିଶ୍ୱନାଥ ଏହି ଗ୍ରନ୍ଥରେ ଯେପରି ସୁଶୃଙ୍ଖଳ ମତରେ ପ୍ରାଞ୍ଜଳ ଭାବରେ ବିସ୍ତୃତ ଆଲୋଚନା କରିଅଛନ୍ତି, ତାର ପଟାନ୍ତର ନାହିଁ । ସ୍ୱମତକୁ ପ୍ରଖ୍ୟାପନ କରିବା ଲାଗି ସେ ତାହାଙ୍କ ପୂର୍ବବର୍ତ୍ତୀ ଆଲୋଚକମାନଙ୍କ ମତକୁ ମଧ୍ୟ ଯୁକ୍ତିପୂର୍ବକ ଖଣ୍ଡନ କରିଛନ୍ତି । କାବ୍ୟ ତତ୍ତ୍ୱ ଓ ନାଟକ ସମ୍ପର୍କରେ ସ୍ୱତନ୍ତ୍ର ଭାବେ ବହୁ ଅଳଂକାର ଗ୍ରନ୍ଥ ସଂସ୍କୃତରେ ରଚିତ ହୋଇଥିଲେ ହେଁ ପଣ୍ଡିତ ବିଶ୍ୱନାଥ ତାହାଙ୍କ 'ସାହିତ୍ୟ ଦର୍ପଣ'ରେ ଉଭୟ କାବ୍ୟତତ୍ତ୍ୱ ଓ ନାଟକ ବା ଦୃଶ୍ୟକାବ୍ୟ ସମ୍ପର୍କରେ ଆଲୋଚନା କରିଛନ୍ତି । ବିଶ୍ୱନାଥଙ୍କ ନାଟ୍ୟତତ୍ତ୍ୱ ସମ୍ପର୍କୀୟ ଆଲୋଚନା ୧୦ମ ଶତାବ୍ଦୀର ଆଳଂକାରିକ ଧନଞ୍ଜୟଙ୍କ 'ଦଶରୂପକ' ଗ୍ରନ୍ଥର ଆଧାର ଉପରେ ପ୍ରତିଷ୍ଠିତ । ସାହିତ୍ୟ ଦର୍ପଣରେ ଲେଖକଙ୍କର ବିଶେଷ ମୌଳିକତା ପ୍ରକଟିତ ହୋଇ ନଥିଲେ ହେଁ ପୂର୍ବୋକ୍ତ ଗୁଣାବଳୀ ଯୋଗୁଁ ଗ୍ରନ୍ଥଟିର ମହତ୍ତ୍ୱ ସର୍ବଦା ସ୍ୱୀକୃତ ହୋଇ ଆସୁଛି ।

'ସାହିତ୍ୟ ଦର୍ପଣ'କୁ ଭିତ୍ତିକରି ବହୁ ଟୀକା ଗ୍ରନ୍ଥ ମଧ୍ୟ ପ୍ରଣୀତ ହୋଇଛି । ତନ୍ମଧ୍ୟରୁ ପ୍ରାଚୀନତମ ହେଉଛି ବିଶ୍ୱନାଥଙ୍କ ପୁତ୍ର ଅନନ୍ତ ଦାସଙ୍କ 'ଲୋଚନ ଟୀକା' । ଅନ୍ୟାନ୍ୟ ଟୀକା ଗ୍ରନ୍ଥମାନଙ୍କ ମଧ୍ୟରୁ 'ରାମତର୍କ ବାଗୀଶ'ଙ୍କ ଟୀକା ସୁପ୍ରସିଦ୍ଧ । ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ପୋଥି ବିଭାଗରେ ମହେଶ୍ୱର ତର୍କାଳଙ୍କାରଙ୍କ ବିଜ୍ଞପ୍ରିୟା ଟିପ୍ପଣୀ, ଗୋପୀନାଥ ମିଶ୍ରଙ୍କ 'ସାହିତ୍ୟ ଦର୍ପଣ ପ୍ରଭା' ଓ ନୀଳକଣ୍ଠ ମିଶ୍ରଙ୍କ ରଚିତ ଏକ ଟୀକା ଗ୍ରନ୍ଥ ଦେଖିବାକୁ ମିଳେ । ଏତଦ୍‌ବ୍ୟତୀତ ବିବୃତ୍ତି, ବିମଳା, ରୁଚିରା, କୁସୁମ ପ୍ରତିମା ଓ ଲକ୍ଷ୍ମୀ ପ୍ରଭୃତି ବହୁ ଟୀକାଗ୍ରନ୍ଥ ସାହିତ୍ୟ ଦର୍ପଣ ସମ୍ପର୍କରେ ସଂସ୍କୃତରେ ରଚିତ ହୋଇଅଛି । ଓଡ଼ିଆ ସମେତ ବହୁ ଭାରତୀୟ ଭାଷା ଓ ଇଂରେଜୀ ପ୍ରଭୃତି ବିଦେଶୀ ଭାଷାରେ ମଧ୍ୟ ଏହି ଗ୍ରନ୍ଥ ଅନୂଦିତ ହୋଇଅଛି । ଏଥିରୁ ଏହି ଗ୍ରନ୍ଥଟିର ମହତ୍ତ୍ୱ ତଥା ଜନପ୍ରିୟତା ସହଜରେ ଅନୁମେୟ ।

ସାହିତ୍ୟ ଦର୍ପଣରେ ସନ୍ନିବିଷ୍ଟ ଉଦାହରଣ ଶ୍ଳୋକ ଗୁଡ଼ିକରୁ ବିଶ୍ୱନାଥଙ୍କ ଅପୂର୍ବ କବିତ୍ୱ, ପାଣ୍ଡିତ୍ୟ, ପରିଚ୍ଛନ୍ନ ଦୃଷ୍ଟିକୋଣ ଓ ବିଗ୍ରହର ପ୍ରବଣତାର ପରିଚୟ ମିଳିଥାଏ । ସଂସ୍କୃତ ଓ ପ୍ରାକୃତ ସାହିତ୍ୟର ବିଶିଷ୍ଟ କବି ଓ ନାଟ୍ୟକାରଙ୍କ ରଚନାରୁ ବହୁ ଶ୍ଳୋକ ସେ ଏଥିରେ ଉଦାହରଣ ଛଳରେ ସନ୍ନିବେଶ କରିଅଛନ୍ତି । ଏତଦ୍‌ବ୍ୟତୀତ ଏଥିରେ ସେ ତାହାଙ୍କ ରଚିତ କାବ୍ୟ ଓ ନାଟକରୁ କେତେକ ଶ୍ଳୋକ ସନ୍ନିବେଶ କରିବା ବ୍ୟତୀତ ଆପଣାର ପିତା ଓ ପ୍ରପିତାମହଙ୍କ ରଚିତ ବହୁ ଶ୍ଳୋକ ମଧ୍ୟ ସଂଯୋଜନ କରିଅଛନ୍ତି । ବିଶ୍ୱନାଥଙ୍କ କବିତ୍ୱ, ଶବ୍ଦଯୋଜନା ଶୃଙ୍ଖଳା କିପରି କମନୀୟ ତାହା ନିମ୍ନୋକ୍ତ ପଙ୍‌କ୍ତିରୁ ଅନୁମେୟ ।

"କାଲୋମଧୁଃ କୁପିତ ଏଷ ଚ ପୁଷ୍ପଧନ୍ୱା
ଧୀରା ବହନ୍ତି ରତିଖେଦ ହରାଃ ସମୀରାଃ
କେଳୀ ବନୀୟମପି ବଞ୍ଜୁଳ କୁଞ୍ଜମଞ୍ଜୁ-
ର୍ଦୂରେ ପତିଃକଥୟ କିଂ କରଣୀୟମଦ୍ୟ ।"

ଅର୍ଥାତ୍ ବିରହିଣୀ ନାୟିକାଟିଏ ଉଦ୍ୟାନ ଭ୍ରମଣ କାଳରେ ତାର ସଖୀକୁ କହୁଛି—ହେ ସଖୀ ! ଏବେ ବସନ୍ତକାଳ ଉପସ୍ଥିତ । କାମଦେବ କୋପଯୁକ୍ତ; ରତିଖେଦ ଦୂରକାରୀ ଧୀର ମଳୟ ପବନ ବହୁଛି । ଏଇ କ୍ରୀଡ଼ା ଉପବନରେ ଅଶୋକ କୁଞ୍ଜ ସୁନ୍ଦର ହୋଇଛି । ଏପରି ସମୟରେ ପତି ଦୂର ଦେଶରେ ରହିଲେ ମୁଁ କ'ଣ କରିବି ।

ତାହାଙ୍କ ଭକ୍ତିମତ୍ତା ସାହିତ୍ୟ ଦର୍ପଣର ପ୍ରାରମ୍ଭ ଓ ଉପସଂହାରର ମଙ୍ଗଳାଚରଣ ଶ୍ଳୋକରୁ ତଥା ଅନ୍ୟ କେତେକ ପୁସ୍ତକରୁ ଉପଲବ୍‌ଧ ହୁଏ, କବି ଥିଲେ ବିଷ୍ଣୁଭକ୍ତ । ବିଷ୍ଣୁଙ୍କ ଶକ୍ତିସ୍ୱରୂପିଣୀ ସରସ୍ୱତୀ ଓ ଲକ୍ଷ୍ମୀଙ୍କୁ ସେ ଯଥାକ୍ରମେ ସାହିତ୍ୟ ଦର୍ପଣର ଆଦ୍ୟ ଓ ପ୍ରାନ୍ତରେ ବନ୍ଦନା କରିଅଛନ୍ତି । ଶବ୍ଦାଳଙ୍କାର ଯୋଜନାରେ କବି କିପରି ସୁଦକ୍ଷ ତାହା ଅନ୍ତ୍ୟାନୁପ୍ରାସର ଉଦାହରଣ ପ୍ରସଙ୍ଗରେ ତାହାଙ୍କ ରଚିତ ଏ ଶ୍ଳୋକଟି ଉଲ୍ଲେଖଯୋଗ୍ୟ ।

'କେଶଃକାଶ ସ୍ତବକ ବିକାସଃ
କାୟଃ ପ୍ରକଟିତ କରଭ ବିଳାସଃ
ଚକ୍ଷୁର୍ଦଗ୍ଧ ବରାଟକ କଳ୍ପଂ
ତ୍ୟଜତି ନ ଚେତଃ କାମ ମନଳ୍ପମ୍ ।'

ଅର୍ଥାତ୍ ବୃଦ୍ଧାବସ୍ଥାରେ କେଶ କାଶଫୁଲ ପରି ଧବଳବର୍ଣ୍ଣ ଧାରଣ କଲଣି, ଶରୀର ଓଟଙ୍କୁଆ ପରି କୁଜା ହେଲଣି, ଆଖି ପୋଡ଼ା କଉଡ଼ି ପରି ହେଲଣି, ତଥାପି ହୃଦୟ ପ୍ରଚୁର କାମଭାବକୁ ଛାଡ଼ୁନାହିଁ । ଏହି ଉଦ୍ଧୃତି-ମାନଙ୍କରୁ ବିଶ୍ୱନାଥଙ୍କ କବିତ୍ୱ ସହଜରେ ଅନୁମେୟ ।

ଏହିପରି ଭାବେ ସାହିତ୍ୟ ଦର୍ପଣ ଗ୍ରନ୍ଥଟି ଅଳଂକାର ଗ୍ରନ୍ଥ ଭାବେ ଯେପରି ସୁପ୍ରସିଦ୍ଧ ସେହିପରି ଲେଖକଙ୍କ ଉନ୍ନତ କବିତ୍ୱର ପରିଚାୟକ ।

ସୁଦୂର ଅତୀତରୁ ଏ ଯାବତ୍ ଏହି ଗ୍ରନ୍ଥଟିର ଖ୍ୟାତି ସଂସ୍କୃତ ଆଲୋଚକ ଓ ସୁଧୀବର୍ଗଙ୍କ ନିକଟରେ ଅମ୍ଳାନ ରହିଅଛି ।

୧୯୪୩ ମସିହାରେ ପଣ୍ଡିତ ବିଶ୍ୱନାଥଙ୍କ 'ଚନ୍ଦ୍ରକଳା' ନାଟିକାଟି ପାରଳାଖେମଣ୍ଡି ଅଞ୍ଚଳରୁ ଶ୍ରୀଯୁକ୍ତ ସତ୍ୟନାରାୟଣ ରାଜଗୁରୁଙ୍କଦ୍ୱାରା ଆବିଷ୍କୃତ ହୋଇଥିଲା ଓ ଏହା ଶ୍ରୀଯୁକ୍ତ ରାଜଗୁରୁ ଓ ଶ୍ରୀ ସର୍ବେଶ୍ୱର ଦାସଙ୍କଦ୍ୱାରା ସମ୍ପାଦିତ ହୋଇ ଇଂରାଜୀ ଅନୁବାଦ ସହ ଖ୍ରୀ ୧୯୪୮ରେ ପ୍ରକାଶିତ ହୋଇଅଛି । ଏହି ନାଟିକାଟି ନିଃଶଙ୍କ ଭାନୁଦେବଙ୍କ ବିଜୟ ଉତ୍ସବ ଉପଲକ୍ଷେ ଅଭିନୀତ ହୋଇଥିବା ବିଷୟ ସୂତ୍ରଧାର ଉକ୍ତିରେ ସୂଚିତ । ଏହା ଗୁରୁଅଙ୍କ ବିଶିଷ୍ଟ ଓ ଏଥିରେ ରାଜା ଶିବରଥ ଦେବ ଓ ତାହାଙ୍କ ପ୍ରଣୟିନୀ ଚନ୍ଦ୍ରକଳାର ପ୍ରଣୟ ପ୍ରସଙ୍ଗ ବର୍ଣ୍ଣିତ । ଶିବରଥ ବିବାହିତ ହେଲେ ହେଁ ରାଣୀଙ୍କ ଅଜ୍ଞାତସାରରେ ତାହାଙ୍କ ପରିଚାରିକା ଚନ୍ଦ୍ରକଳା ପ୍ରତି ପ୍ରେମାସକ୍ତ । ଚନ୍ଦ୍ରକଳା ମଧ୍ୟ ଅନୁରୂପ ଭାବେ ରାଜାଙ୍କ ପ୍ରତି ଆକୃଷ୍ଟ । ଏକଦା ବିଦୂଷକର ଅଜ୍ଞତା ଯୋଗୁ ରାଣୀ ଏହି ବିଷୟ ଅବଗତ ହେଲେ ଓ ଚନ୍ଦ୍ରକଳାକୁ ବନ୍ଦିନୀ କରି ରଖିଲେ; ମାତ୍ର ପରେ ସେ ଜାଣିପାରିଲେ, ଏଇ ଚନ୍ଦ୍ରକଳା ହେଉଛି ତାଙ୍କର କନିଷ୍ଠା ଭଗିନୀ । ଏହାପରେ ଶିବରଥ ଓ ଚନ୍ଦ୍ରକଳାଙ୍କ ପରିଣୟ ସମ୍ପାଦିତ ହୋଇଅଛି ।

ଏହି ନାଟିକାଟିର କଥାବସ୍ତୁ 'ରତ୍ନାବଳୀ' ଓ ଭାସଙ୍କ ନାଟକ 'ସ୍ୱପ୍ନ ବାସବଦତ୍ତା' ସଦୃଶ । ଏହାର ପରିକଳ୍ପନାରେ ଲେଖକଙ୍କ ସେଭଳି ମୌଳିକତା ପରିଲକ୍ଷିତ ନହେଲେ ହେଁ ଏଥିରେ ସନ୍ନିବିଷ୍ଟ କବିତାଗୁଡ଼ିକରୁ ବିଶ୍ୱନାଥଙ୍କ ଉନ୍ନତ କବିତ୍ୱର ନିଦର୍ଶନ ମିଳିଥାଏ । ସୁଲଳିତ ପଦଯୋଜନା ଓ କଳ୍ପନାବିଳାସରେ ତାହାଙ୍କ କବିତା କିପରି ଉଚ୍ଚକୋଟୀର, ତାହା

ଆମ୍ଭେମାନେ ଦୁଇଟି ଉଦାହରଣରୁ ଅନୁମେୟ । ନଟୀର ପ୍ରସ୍ତାବନାରେ ସୂତ୍ରଧାର ବସନ୍ତ ଋତୁର ବର୍ଣ୍ଣନା ଏହିପରି କରନ୍ତି—

'ଲତାକୁଞ୍ଜଂ ଗୁଞ୍ଜନ୍ମଦବଦଳି ପୁଞ୍ଜଂ ଚପଲୟନ୍
ସମାଲିଙ୍ଗନ୍ନଙ୍ଗଂ ଦ୍ରୁତତର ମନଙ୍ଗଂ ପ୍ରବଳୟନ୍
ମରୁନ୍ମନ୍ଦଂ ମନ୍ଦଂ ଦଳିତମରବିନ୍ଦଂ ତରଳୟନ୍
ରଜୋବୃନ୍ଦଂ ବିନ୍ଦନ୍ କିରତି ମକରନ୍ଦଂ ଦିଶିଦିଶି ।'

(ଅ ୧।୩ୟ ଶ୍ଳୋକ)

(ଏହି ସମୀର ମଧୁର ଗୁଞ୍ଜନ କରୁଥିବା ଭ୍ରମର ପୁଞ୍ଜ ବେଷ୍ଟିତ ଲତାକୁଞ୍ଜକୁ ଚଞ୍ଚଳ କରାଇ, ଅଙ୍ଗସ୍ପର୍ଶ ପୂର୍ବକ କାମଭାବକୁ ହୃଦୟରେ ଜାତ କରାଇ, ପ୍ରସ୍ଫୁଟିତ ପଦ୍ମକୁ ଇତସ୍ତତଃ ସଞ୍ଚାଳିତ କରାଇ ପୁଷ୍ପ ପରାଗକୁ ଇତସ୍ତତଃ ବିକ୍ଷିପ୍ତ ପୂର୍ବକ, ମକରନ୍ଦ ମଧୁର ବୃଷ୍ଟି କରାଇ ମନ୍ଦ ମନ୍ଦ ବହୁଅଛି ।)

ନାୟିକାର କମନୀୟ ରୂପକୁ କବି ରାଜାଙ୍କ ମୁଖରେ ଏହିପରି କୁହାଇଛନ୍ତି—

'ସା ଦୃଷ୍ଟିର୍ନବନୀର ନୀରଜମୟୀବୃଷ୍ଟି ସ୍ତଦସ୍ୟାନନଂ
ହେଳାମୋହନ ମନ୍ତ୍ର ଯନ୍ତ୍ର ଜନତା କୃଷ୍ଟିର୍ଜଗଚ୍ଚେତସଃ
ସା ଭ୍ରୂବଲ୍ଲୀ ରନଙ୍ଗଶାର୍ଙ୍ଗ ଧନୁଷୋ ଯଷ୍ଟି ସ୍ତଥାସ୍ୟାସ୍ତନୁ—
ର୍ଲାବଣ୍ୟାମୃତପୂରପୂରଣମୟୀ ସୃଷ୍ଟିଃ ପରା ବେଧସଃ ।' (୧।୭)

(ତାହାର (ସେହି ନାୟିକାର) ଦୃଷ୍ଟି ସଦ୍ୟ ଜଳଧାରାରେ ଧୌତ ପଦ୍ମ ବୃଷ୍ଟି ସଦୃଶ । ତାହାର ମୁଖ ଜଗତବାସୀଙ୍କ ଚିତ୍ତକୁ ମନ୍ତ୍ର ଯନ୍ତ୍ରରେ କର୍ଷଣ କରିବାର ବିଷୟ । ତାହାର ଭ୍ରୂଲତା ଅନଙ୍ଗର ଶାର୍ଙ୍ଗ ଧନୁ ଓ ଦେହ ଯଷ୍ଟି ସଦୃଶ । ସେ ବ୍ରହ୍ମାଙ୍କର ଲବଣ୍ୟ ଓ ଅମୃତ ପ୍ରବାହକାରିଣୀ ଏକ ଉତ୍କୃଷ୍ଟ ସୃଷ୍ଟି ।)

କଥାବସ୍ତୁରେ ମୌଳିକତା ନଥିଲେ ହେଁ ଅଭିନୟ କଳା ଦୃଷ୍ଟିରୁ ଏହାର ମହତ୍ତ୍ୱ ଅନସ୍ୱୀକାର୍ଯ୍ୟ । ସଂସ୍କୃତ ନାଟକକୁ ଅତ୍ୟଧିକ କାବ୍ୟ-ଧର୍ମିତାରୁ ମୁକ୍ତକରି ତାହାକୁ ଅଭିନୟ ଉପଯୋଗୀ କରାଇବାରେ

ବିଶ୍ୱନାଥଙ୍କ ସଫଳତା ମଧ୍ୟ ଉଲ୍ଲେଖଯୋଗ୍ୟ । ସେ ଯୁଗରେ ଜନସାଧାରଣଙ୍କୁ ବୀରରସରେ ଅନୁପ୍ରାଣିତ କରିବାର ଆବଶ୍ୟକତା ସମ୍ଭବତଃ ପରବର୍ତ୍ତୀ ମନ୍ତ୍ରୀ ଓ ରାଜନୀତିକୁଶଳ ବିଶ୍ୱନାଥ ଅନୁଭବ କରିଥିଲେ; କାରଣ ସେତେବେଳେ ଓଡ଼ିଶା ଘନ ଘନ ବହିରାକ୍ରମଣର ସମ୍ମୁଖୀନ ହେଉଥିଲା । ସେଥିପାଇଁ ଯୁଦ୍ଧ ବର୍ଣ୍ଣନା ସମ୍ବଳିତ ନାଟିକା ବା 'ବ୍ୟାୟୋଗ' ରଚନାରେ ସେ ଅଧିକ ମନୋନିବେଶ କରିଅଛନ୍ତି । ତାହାଙ୍କ 'ନରସିଂହ ବିଜୟ' ରଚନାଟି ସମ୍ଭବତଃ ନରସିଂହ ଦେବଙ୍କ ଯୁଦ୍ଧ ଜୟ ପ୍ରସଙ୍ଗକୁ ଭିତ୍ତିକରି ଲିଖିତ । ଇତିମଧ୍ୟରେ ତାହାଙ୍କ 'ସୌଗନ୍ଧିକା ହରଣ' ନାଟିକାର ସନ୍ଧାନ ମିଳିଅଛି ।

ନାଟକରେ ପଶୁପକ୍ଷୀ-ଚରିତ୍ରର ସମାବେଶ କରିବା ବିଶ୍ୱନାଥଙ୍କର ଏକ ଅଭିନବ ସୃଷ୍ଟି । ରାଣୀଙ୍କୁ ରାଜା ଶବରଅଙ୍କଠାରୁ ବିଚ୍ଛିନ୍ନ କରାଇ ପ୍ରମୋଦ ଉଦ୍ୟାନରେ ପ୍ରଣୟିନୀ ଚନ୍ଦ୍ରକଳା ସହିତ ମିଳିତ କରାଇବା ପାଇଁ ନେପଥ୍ୟରୁ ବାଘର ଗର୍ଜନ ତର୍ଜନ ଶୁଣିଲା, ରାଜା ରାଣୀଙ୍କୁ ରାଜଉଆସକୁ ପଠାଇ ଦେଇ ବାଘଟିକୁ ମାରିବା ପାଇଁ ତତ୍ପର ହୋଇ ଉଠିଛନ୍ତି । ଏହି ପ୍ରସଙ୍ଗରେ ବିଶ୍ୱନାଥ ଉଲ୍ଲେଖ କରିଛନ୍ତି ।

"ଲାଙ୍ଗୁଲେ ନାଭିହତ୍ୟ କ୍ଷିତିତଳ ମସ କୃତ୍ଦ୍ଧାର ଯନ୍ମଗ୍ରପଦ୍ଭ୍ୟାଂ
ମାତ୍ରାନେ୍ୟ ବାବଲ୍ଗ୍ୟ ରକ୍ତ ମଥଗଗନଂ ପ୍ରୋତ୍ପତନ୍ ବିକ୍ରମେଣ
ତ୍ରୁର୍କେତ୍ ଫୁତ୍କାର ଘୋରଃ ପ୍ରତିର୍ଜିଶ ମଖିଳାନ୍ ଶୁଣ୍ୟହ୍ୟନେ୍ୟଷକାନ୍ନନ୍
କୋପାବିଷ୍ଟଃ ପ୍ରବିଷ୍ଟଃ ପ୍ରତିବନମରୁଣୋଜ୍ଜ୍ୱଳଚକ୍ଷୁ ସ୍ତରକ୍ଷୁଃ ।"

(ଲାଙ୍ଗୁଳରେ ଭୂଇଁକୁ ବାରମ୍ବାର ବାଡ଼ାଉଥିବା, ଆଗ ପାଦରେ ଭୂଇଁକୁ ତାଡ଼ୁଥିବା, ନିଜକୁ ବାଂପୁଡ଼ି ଝାଂପୁଡ଼ି ଉପରକୁ ଡେଇଁଥିବା, ରାଗରେ ଆଖି ଜଟମଟ କରି ହେଁତାଳ ମାରୁଥିବା ବାଘର ଗର୍ଜନରେ ପ୍ରମୋଦ ଉଦ୍ୟାନର ପଶୁପକ୍ଷୀଗୁଡ଼ିକ ଏଣେ ତେଣେ ଧାଇଁ ପଳାଉଛନ୍ତି ।)

ଉତ୍କଳର ବରପୁତ୍ର ବିଶ୍ୱନାଥ କବିରାଜ ବିଶିଷ୍ଟ କବି, ନାଟ୍ୟକାର ଓ ଆଲୋଚକ ଭାବେ ଭାରତୀୟ ସାହିତ୍ୟକୁ ସମୃଦ୍ଧ କରି ଯେଉଁ ଅକ୍ଷୟ କୀର୍ତ୍ତି ସ୍ଥାପନ କରିଯାଇଅଛନ୍ତି ତାହା ବାସ୍ତବିକ ଗର୍ବ ଓ ଗୌରବର ବିଷୟ ।

# ବିଦ୍ୟାପତି

ଆଧୁନିକ ବିହାରର ଉତ୍ତରାଞ୍ଚଳ ବା ପ୍ରାଚୀନ ମିଥିଳା ରାଜ୍ୟରେ ଚତୁର୍ଦ୍ଦଶ ଶତାବ୍ଦୀରେ କବି ବିଦ୍ୟାପତିଙ୍କର ଆବିର୍ଭାବ । ସେତେବେଳେ ମାଗଧୀ ପ୍ରାକୃତ ଅବହଟ୍ଟ ଭାଷାରେ ରୂପାନ୍ତରିତ ହୋଇ ସାରିଥିଲା ଓ ମୈଥିଳୀ ଭାଷା ସଦ୍ୟ ଜନ୍ମ ଲାଭ କରିଥିଲା । ଏହି ଯୁଗ ଥିଲା ସ୍ଥୂଳତଃ ଆଧୁନିକ ଭାରତୀୟ ଭାଷାମାନଙ୍କର ଅଭ୍ୟୁଦୟର ଉଷାକାଳ । ଏହି ଯୁଗର କବିମାନଙ୍କ ମଧ୍ୟରେ ବିଦ୍ୟାପତିଙ୍କୁ ଉତ୍ତର ଭାରତୀୟ ସାହିତ୍ୟର ସର୍ବଶ୍ରେଷ୍ଠ କବି କହିଲେ ଅତ୍ୟୁକ୍ତି ହେବନାହିଁ । ଆଲୋଚକ ଶଙ୍କରୀପ୍ରସାଦ ବସୁ ତାହାଙ୍କୁ 'ମଧ୍ୟଯୁଗର ପୂର୍ବ ଭାରତର କବି ସାର୍ବଭୌମ' ଭାବେ ଅଭିହିତ କରିଅଛନ୍ତି । ତାହାଙ୍କ କବିତ୍ୱର ସୌରଭ ଯଥାର୍ଥତଃ ଦେଶକାଳର ସୀମା ଅତିକ୍ରମ କରି ସାର୍ବଜନୀନ ଓ ଚିରନ୍ତନ ଗୌରବ ଅର୍ଜନ କରିଅଛି । ତାହାଙ୍କ ସୁଲଳିତ ପଦାବଳୀର ରସ ମାଧୁର୍ଯ୍ୟ, ଆଲଂକାରିକ କାରୁକାର୍ଯ୍ୟ, ବର୍ଣ୍ଣନା ଚାତୁର୍ଯ୍ୟ ଯୁଗେ ଯୁଗେ କାବ୍ୟ ରସିକମାନଙ୍କ ସମାଦର ଲାଭ କରିଆସିଛି । ବିଶେଷତଃ ଭାରତର ପୂର୍ବାଞ୍ଚଳୀୟ ସାହିତ୍ୟ କ୍ଷେତ୍ରରେ ବିଦ୍ୟାପତିଙ୍କ ରଚନାବଳୀର ପ୍ରଭାବ ସର୍ବାଧିକ ବ୍ୟାପକ ଥିବା ଜଣାଯାଏ ।

**ଜୀବନ ଧାରା—**

ଖ୍ରୀ: ୧୩୭୦ରେ ବିହାରର ଦରଭଙ୍ଗା ଅଞ୍ଚଳର ମଧୁବଣୀ ଜିଲ୍ଲାର ବିସଫି ନାମକ ଗ୍ରାମରେ ସେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କ ପିତାଙ୍କ ନାମ ଗଣପତି ଓ ମାତାଙ୍କ ନାମ ଗଙ୍ଗା ଦେବୀ । ତାହାଙ୍କ ପିତାମହ ଓ ପ୍ରପିତାମହ ପ୍ରଭୃତି ପୂର୍ବପୁରୁଷଗଣ ମିଥିଳାର ରାଜ-

ଦରବାରରେ ଅତ୍ୟନ୍ତ ଦାୟିତ୍ୱସମ୍ପନ୍ନ କର୍ମରେ ନିଯୁକ୍ତ ଥିଲେ ଓ ମିଥିଳାର ସାମାଜିକ ଓ ଧାର୍ମିକ ଜୀବନକୁ ସେମାନଙ୍କ ଦାନ ଥିଲା ଅତୀବ ମହତ୍ତ୍ୱପୂର୍ଣ୍ଣ । ଏହିପରି ଏକ ଯଶସ୍ୱୀ ପରିବାରରେ ବିଦ୍ୟାପତିଙ୍କର ଜନ୍ମ । କବି ଥିଲେ ମିଥିଳାର ରାଜା କୀର୍ତ୍ତି ସିଂହଙ୍କର ଶୈଶବର କ୍ରୀଡ଼ା ସହଚର । ଶୈଶବରେ ସେ ଆନୁଷ୍ଠାନିକ ରୀତିରେ ଶିକ୍ଷା ଲାଭ କରିଥିଲେ । ଅନୁମିତ ହୁଏ ତରୁଣ ବୟସରୁ ତାଙ୍କୁ ଅଧ୍ୟୟନ ତ୍ୟାଗକରି କୀର୍ତ୍ତି ସିଂହଙ୍କ ଅଧୀନରେ ରାଜକୀୟ କାର୍ଯ୍ୟରେ ନିଯୁକ୍ତ ହେବାକୁ ପଡ଼ିଥିଲା ।

ମହାରାଜ କୀର୍ତ୍ତି ସିଂହ ଓ ଶିବ ସିଂହ ପ୍ରଭୃତି ବହୁ ରାଜାଙ୍କ ଦରବାରରେ ତାହାଙ୍କ କବିତ୍ୱ ସମାଦୃତ ହୋଇଥିଲା । କୀର୍ତ୍ତି ସିଂହଙ୍କ ଦରବାରରେ ଥିବା ସମୟରେ ସେ ମହାରାଜାଙ୍କ ପ୍ରଶସ୍ତି ସମ୍ବଳିତ 'କୀର୍ତ୍ତିଲତା' ଗ୍ରନ୍ଥଟି ଖ୍ରୀ: ୧୪୦୨-୧୪୦୪ ମଧ୍ୟରେ ରଚନା କରିଥିଲେ । କୀର୍ତ୍ତି ସିଂହଙ୍କ ମୃତ୍ୟୁ ପରେ ସେ ରାଜା ଦେବ ସିଂହଙ୍କ ରାଜସଭାରେ ଆଶ୍ରୟ ଲାଭ କଲେ । ଏହିଠାରେ ସେ ବହୁବର୍ଷ ଅତିବାହିତ କରିଥିଲେ ଓ ଏହିଠାରେ ହିଁ ତାଙ୍କ ପ୍ରତିଭା ପୂର୍ଣ୍ଣ ବିକାଶ ଲାଭ କରିଥିଲା ।

ଦେବ ସିଂହଙ୍କ ନାତି ଶିବ ସିଂହ ଥିଲେ ତାଙ୍କର ମୁଖ୍ୟ ପୃଷ୍ଠପୋଷକ । ଏହାଙ୍କ ପତ୍ନୀ ମହାଦେବୀ ଲକ୍ଷ୍ମୀମା ମଧ୍ୟ କବିଙ୍କୁ ଅତ୍ୟନ୍ତ ଶ୍ରଦ୍ଧା କରୁଥିଲେ । କବି ପୁରାତନ ମୈଥିଳୀ ଅବହଟ୍ଟ ଭାଷାରେ ଶିବ ସିଂହଙ୍କର ପ୍ରଶସ୍ତି ସମ୍ବଳିତ 'କୀର୍ତ୍ତି ପତାକା' ନାମକ ଏକ କାବ୍ୟ ରଚନା କରିଥିଲେ । ତାହାଛଡ଼ା ସେ ଏହି ସ୍ଥାନରେ ଥିବା ସମୟରେ ସଂସ୍କୃତରେ 'ପୁରୁଷ ପରୀକ୍ଷା' କେତେକ ସ୍ମୃତି ଗ୍ରନ୍ଥ ଓ ମୈଥିଳୀ ଭାଷାରେ ବହୁ ସଙ୍ଗୀତ ମଧ୍ୟ ରଚନା କରିଥିଲେ । 'ପୁରୁଷ ପରୀକ୍ଷା' ଗ୍ରନ୍ଥଟି ରାଜକୁମାରଙ୍କୁ ନୀତି ଶିକ୍ଷା ଦେବା ଉଦ୍ଦେଶ୍ୟରେ ରଚିତ ।

ଶିବ ସିଂହ ମୁସଲମାନ ଆକ୍ରମଣକାରୀଙ୍କଦ୍ୱାରା ପରାଜିତ ହେଲା ପରେ ରାଣୀ ଲକ୍ଷ୍ମୀମା ନେପାଳର ଏକ ଗ୍ରାମରେ ଦୀର୍ଘ ବାରବର୍ଷ ଅଜ୍ଞାତବାସ କରିଥିଲେ । ଏହି ସମୟରେ କବି ବିଦ୍ୟାପତି ମଧ୍ୟ ସେଠାରେ ଅବସ୍ଥାନ କରୁଥିଲେ ଓ ଶିବ ସିଂହ ଓ ଲକ୍ଷ୍ମୀମାଙ୍କ ନାମରେ ଭଣିତା କରି କେତେକ ସଙ୍ଗୀତ ରଚନା କରିଥିଲେ । ବୟସ ବୃଦ୍ଧି ସଙ୍ଗେ

ଯାଙ୍ଗେ ତାଙ୍କ ମନ ଧର୍ମ ପ୍ରଭୃତି ଆକୃଷ୍ଟ ହୋଇଥିଲା ଓ ସେ ଧର୍ମଶାସ୍ତ୍ର, କର୍ମକାଣ୍ଡ ପ୍ରଭୃତି ରଚନାରେ ମନୋନିବେଶ କରିଥିଲେ । ଲକ୍ଷ୍ମୀମାଙ୍କୁ ସେ ସଂସ୍କୃତ ଭାଗବତ ଆବୃତ୍ତି ଓ ବ୍ୟାଖ୍ୟା କରି ଶୁଣାଉଥିବା ମଧ୍ୟ ଜଣାଯାଏ ।

ଲକ୍ଷ୍ମୀମାଙ୍କ ମୃତ୍ୟୁ ପରେ ସେ ପଦ୍ମ ସିଂହ ଓ ପରେ ତାହାଙ୍କ ବିଧବା ପତ୍ନୀ ବିଶ୍ୱାସ ଦେବୀଙ୍କ ଦରବାରରେ ଅବସ୍ଥାନ କରିଥିଲେ । ବିଶ୍ୱାସ ଦେବୀଙ୍କ ନିର୍ଦ୍ଦେଶରେ ସେ ସଂସ୍କୃତରେ 'ଗଙ୍ଗା ବାକ୍ୟାବଳୀ' ଓ ଶୈବ ସର୍ବସ୍ୱସାର' ରଚନା କରିଥିବା ଜଣାଯାଏ । ସମ୍ଭବତଃ ସେ ଏହି ସ୍ଥାନରେ ଅବସ୍ଥାନ କରୁଥିବା ସମୟରେ ଶିବ ଓ ଗଙ୍ଗାଙ୍କ ଉଦ୍ଦେଶ୍ୟରେ କେତେକ ସଂଗୀତ ରଚନା କରିଥିଲେ । 'ଗୋରକ୍ଷ ବିଜୟ' ନାମକ ଏକ ମୈଥିଳୀ ନାଟକ ତାହାଙ୍କଦ୍ୱାରା ପ୍ରଣୀତ ହୋଇଥିବା ବିଷୟ ଜଣାଯାଇଅଛି । ଏଥିରେ ମଧ୍ୟ ତାହାଙ୍କ ରଚିତ କେତେକ ଗୀତ ସନ୍ନିବିଷ୍ଟ ।

ଏହାପରେ କବି ହରସିଂହ ଦେବ, ନରସିଂହଦେବ, ଧୀର ସିଂହଦେବ ପ୍ରଭୃତି ରାଜାଙ୍କ ଦରବାରରେ ଖ୍ରୀ: ୧୪୪୭ ପର୍ଯ୍ୟନ୍ତ ଅବସ୍ଥାନ କରିଥିଲେ । ହରସିଂହଦେବଙ୍କ ଦରବାରରେ ଥିବାବେଳେ ସେ 'ବିଭାଗସାର' ନାମକ ସ୍ମୃତି ଗ୍ରନ୍ଥ ରଚନା କରିଥିଲେ ଓ ତାହାଙ୍କ ପତ୍ନୀ ଧୀରମତିଙ୍କ ଆଦେଶରେ 'ଦାନ ବାକ୍ୟାବଳୀ' ରଚନା କରିଥିଲେ । ଧୀର ସିଂହଦେବଙ୍କ ପୁତ୍ର ଭୈରବଙ୍କ ସଭାକବି ଥିବାବେଳେ ସେ ରଚନା କରିଥିଲେ 'ଦୁର୍ଗାଭକ୍ତି ତରଙ୍ଗିଣୀ' । ଏହିପରି ଭାବେ କବି ବିନ୍ଧ ରାଜବଂଶର ଉତ୍ଥାନ ପତନ ସହ ପ୍ରତ୍ୟକ୍ଷଭାବେ ସଂପୃକ୍ତ ଥିଲେ । ସେ ବ୍ୟବହାରକୁଶଳ ଥିବା ଅନୁମିତ ହୁଏ । ସେ ଯେ ବୁଦ୍ଧିମାନ, ଚତୁର ଓ ସୁରସିକ ଥିଲେ ଏହା ତାହାଙ୍କ କବିତାରୁ ମଧ୍ୟ ଜଣାଯାଏ । ବିରହ ମିଳନାତ୍ମକ ସରସ ସଂଗୀତ ବ୍ୟତୀତ ସେ ସଂସ୍କୃତ ଓ ଅବହଟ୍ଟରେ ଯେଉଁ ଗ୍ରନ୍ଥଗୁଡ଼ିକ ରଚନା କରିଛନ୍ତି ସେଗୁଡ଼ିକ ଯେପରି ନୀତିମୂଳକ ସେହିପରି ଶିକ୍ଷାପ୍ରଦ । ରାଜା ପ୍ରତିବେଶୀ ରାଜାଙ୍କ ସହ କିପରି ଆଳାପ କରିବେ, ସେନାପତି ଯୁବରାଜଙ୍କ ସହ କିପରି ବ୍ୟବହାର କରିବେ, ଦାସମାନଙ୍କ

ଲାଗି ମୁକ୍ତହସ୍ତ କରେ । ଲେଖାଯିବା ଏତାଦୃଶ ବ୍ୟାବହାରିକ ବିଷୟର ନମୁନା ତାହାଙ୍କ 'ଲିଖନାବଳୀ'ରେ ପ୍ରଦତ୍ତ ହୋଇଅଛି ।

ତାହାଙ୍କର ଦୁଇଟି ପତ୍ନୀ ଥିଲେ ଓ ଶେଷ ଜୀବନରେ ସେ ପୁତ୍ର କନ୍ୟାଦି ସହ ଶାନ୍ତିପୂର୍ଣ୍ଣ ପାରିବାରିକ ଜୀବନ ଯାପନ କରୁଥିଲେ । ଖ୍ରୀ ୧୪୪୮ରେ ତାହାଙ୍କ ମୃତ୍ୟୁ ହୋଇଥିଲା । ଶୁଣାଯାଏ, ଗଙ୍ଗା ନଦୀ କୂଳରେ ଦେହତ୍ୟାଗ କରିବା ଉଦ୍ଦେଶ୍ୟରେ ଯାତ୍ରା କରୁଥିବା ସମୟରେ ପଥ ମଧ୍ୟରେ ତାହାଙ୍କର ମୃତ୍ୟୁ ହୋଇଥିଲା ।

**ରଚନାବଳୀ**--

କବି ସଂସ୍କୃତ ଅବହଟ୍ଟ ଭାଷାରେ ବହୁ ଗ୍ରନ୍ଥ ରଚନା କରିଥିଲେ ହେଁ ମୈଥିଳୀ ଭାଷାରେ ଲିଖିତ ତାହାଙ୍କ ପଦ ବା ସଙ୍ଗୀତଗୁଡ଼ିକ ସର୍ବୋତ୍କୃଷ୍ଟ କାଳଜୟୀ କୀର୍ତ୍ତି ଭାବେ ପରିଗଣିତ । କବି ଶୈବ ଥିଲେ ହେଁ ତାହାଙ୍କ ରଚିତ ଅଧିକ ସଂଖ୍ୟକ ଗୀତ ରାଧାକୃଷ୍ଣ ପ୍ରେମଲୀଳାକୁ ଉପଜୀବ୍ୟ କରି ଲିଖିତ । ଏହି ଗୀତଗୁଡ଼ିକ ସଂସ୍କୃତ 'ଗୀତ ଗୋବିନ୍ଦ' ଓ ବହୁ ପ୍ରକୀର୍ଣ୍ଣ ସଂସ୍କୃତ ଓ ପ୍ରାକୃତ ଆଦିରସଗର୍ଭିତ ଶ୍ଳୋକର ପ୍ରକରଣକୁ ଆଦର୍ଶ କରି ରଚିତ ହୋଇଥିବା ଅନୁମିତ ହୁଏ ।

ବିରହ ମିଳନ ମାଧୁରୀ ମିଶ୍ରିତ ଏହି କବିତାଗୁଡ଼ିକ ତତ୍କାଳୀନ ରାଜା ଓ ସାମନ୍ତମାନଙ୍କ ଚିତ୍ତ ବିନୋଦନ ଉଦ୍ଦେଶ୍ୟରେ କବି ପ୍ରଣୟନ କରିଥିବା ସମ୍ଭବପର । ସେ ଯୁଗରେ ନର୍ତ୍ତକ ନର୍ତ୍ତକୀମାନେ ଏହାକୁ ଅଭିନୟ ସହକାରେ ଗାନ କରୁଥିଲେ । ବୃଦ୍ଧ ରାଜା, ରାଜକୁମାର, ରାଜବଧୂ ଓ ରାଜକୁମାରୀ ପ୍ରଭୃତିଙ୍କୁ କବିଙ୍କ ଆଦିରସାତ୍ମକ କବିତା ପ୍ରମୋଦିତ କରିଥିବ ଓ ରାଜ ଦରବାରର ସଦସ୍ୟବର୍ଗ ମଧ୍ୟ କବିଙ୍କୁ ନୂତନ ଗୀତ ପାଇଁ ଅନୁରୋଧ କରିଥିବେ । ଏହି ଭାବରେ ଉତ୍ସାହିତ ହୋଇ କବି ରାଧାକୃଷ୍ଣ ପ୍ରେମ ଲୀଳାର ବିବିଧ ପର୍ଯ୍ୟାୟ ଓ ଋତୁ ପରିବର୍ତ୍ତନର ବିବିଧ ପ୍ରଭାବକୁ ଭିତ୍ତିକରି ବହୁ ସଂଖ୍ୟକ କୃଷ୍ଣଲୀଳାତ୍ମକ ଗୀତ ରଚନା କରି ଯାଇଅଛନ୍ତି । କାଳକ୍ରମେ ଏହି ଗୀତଗୁଡ଼ିକ ମିଥିଳାର ସୀମା ଅତିକ୍ରମ କରି ନବଦ୍ୱୀପ ଓ ବୃନ୍ଦାବନର ବୈଷ୍ଣବଗୋଷ୍ଠୀଙ୍କ ସମାଦର ଲାଭ କରିଥିଲା ।

ଏହି ଗୀତଗୁଡ଼ିକର ଜନପ୍ରିୟତା ଫଳରେ ବହୁ କବି ବିଦ୍ୟାପତିଙ୍କ ଭଣିତା ଯୋଗକରି ଗୀତ ମଧ୍ୟ ରଚନା କରିଥିଲେ । ବଙ୍ଗଳାରେ ମିଳିଥିବା ବିଦ୍ୟାପତି ଭଣିତା ଥିବା ବହୁ ଗୀତରୁ ଏକଦା ବିଦ୍ୟାପତିଙ୍କୁ ବଙ୍ଗଳାର କବି ବୋଲି ଗ୍ରହଣ କରାଯାଉଥିଲା । ବହୁ ଶତାବ୍ଦୀର ବ୍ୟବଧାନ ଫଳରେ କବିଙ୍କ ମୈଥିଳୀ କବିତାର ଭାଷାରେ ବହୁଭାବାର ସମ୍ମିଶ୍ରଣ ଘଟିଛି । ଏଥିରେ ବଙ୍ଗଳା, ଓଡ଼ିଆ, ଅସମିଆ, ମଗହି, ଭୋଜପୁରୀ, ନେପାଳୀ, ପାଞ୍ଚାଳୀ, ବ୍ରଜଭାଷା ଓ ଅବଧୀ ପ୍ରଭୃତି ଭାଷାର ଶବ୍ଦାବଳୀ ମଧ୍ୟ ଦେଖିବାକୁ ମିଳିଥାଏ ।

ବିଦ୍ୟାପତିଙ୍କୁ ଯଥାର୍ଥତଃ ମୈଥିଳୀ ଭାଷାର ନବ ଜୟଦେବ ଭାବରେ ଅଭିହିତ କରାଯାଇଛି । ତାହାଙ୍କ ସମକାଳୀନ ତଥା ପରବର୍ତ୍ତୀ ବହୁ କବି ତାହାଙ୍କ ରଚନାବଳୀଦ୍ୱାରା ଯେ ପ୍ରଭାବିତ ହୋଇଥିଲେ, ଏହା କହିବା ବାହୁଲ୍ୟମାତ୍ର । ତାହାଙ୍କ ଗୀତାବଳୀର ଅନୁସରଣରେ ବଙ୍ଗ, ଆସାମ, ଓଡ଼ିଶା ପ୍ରଭୃତି ଭାରତର ପୂର୍ବାଞ୍ଚଳରେ ଏକ ମିଶ୍ରିତ ଭାଷାରେ ପଦ ବା ସଙ୍ଗୀତ ରଚନାର ସୂତ୍ରପାତ ହୋଇଥିଲା । ଏହି କୃତ୍ରିମ ଭାଷା ହିଁ ବ୍ରଜ ବୋଲି ଭାଷା ନାମରେ ପରିଚିତ ।

ଶ୍ରୀ ଚୈତନ୍ୟ ବିଦ୍ୟାପତିଙ୍କ ରଚନାକୁ ଅତ୍ୟନ୍ତ ଶ୍ରଦ୍ଧାର ସହିତ ଗାନ କରୁଥିବାରୁ ଏହି ଭାଷା ଗୌଡ଼ୀୟ ବୈଷ୍ଣବ ସମାଜରେ ସମାଦୃତ ହୋଇଥିଲା । ଏଣୁ ଓଡ଼ିଆ, ବଙ୍ଗଳା, ହିନ୍ଦୀ (ବ୍ରଜଭାଷା), ଓ ମୈଥିଳୀ ଭାଷାର ସମନ୍ୱୟରେ ଯେଉଁ କୃତ୍ରିମ ବ୍ରଜ ବୋଲି ଭାଷା ସୃଷ୍ଟି ହୋଇଥିଲା ତାହା ଯେ ବିଦ୍ୟାପତିଙ୍କ ଗୀତର ପରିଣାମ ଏ ବିଷୟରେ ସନ୍ଦେହର ଅବକାଶ ନାହିଁ । ଜ୍ଞାନ ଦାସ, ଗୋବିନ୍ଦ ଦାସ, ନରୋତ୍ତମ ଦାସ ପ୍ରଭୃତି ପ୍ରାଚୀନ ବଙ୍ଗୀୟ କବିଗଣ ଏହି ଭାଷାରେ ବହୁ ସଙ୍ଗୀତ ରଚନା କରିଥିଲେ । ଏପରିକି ଆଧୁନିକ ଯୁଗରେ ମଧ୍ୟ ବଙ୍କିମଚନ୍ଦ୍ର, ରାଜକୃଷ୍ଣ ରାୟ ପ୍ରଭୃତି ଏହି ଭାଷାରେ ଗୀତ ରଚନା କରିଛନ୍ତି ।

ସର୍ବୋପରି ରବୀନ୍ଦ୍ରନାଥ ଠାକୁର ମଧ୍ୟ ଭାନୁସିଂହ ଠାକୁର ଛଦ୍ମ ନାମରେ ବ୍ରଜ ବୋଲି ଭାଷାରେ ବହୁ ଗୀତ ରଚନା କରି ଯାଇ-ଅଛନ୍ତି ।

ଗୀତ ଗୋବିନ୍ଦ ରଚିତ ହେବା ପରେ ଉତ୍ତର ଭାରତୀୟ ଆଞ୍ଚଳିକ ଭାଷାରେ ବୈଷ୍ଣବ କବିତା ବା ପଦାବଳୀ ରଚୟିତା ଭାବେ ବିଦ୍ୟାପତି ହେଉଛନ୍ତି ପ୍ରଥମ ଓ ବଶିଷ୍ଟତମ କବି । ରାଧାକୃଷ୍ଣଙ୍କ ପୂର୍ବରାଗ, ଶ୍ରୀରାଧାଙ୍କ ବୟଃସନ୍ଧି, ମିତ୍ରାଳାପ, ସଖୀ ସମ୍ଭାଷଣ, ଅଭିସାର, ମିଳନ, ବସନ୍ତଲୀଳା, ମାନ, ପ୍ରେମ ବୈଚିତ୍ର୍ୟ, ଆକ୍ଷେପ, ବିରହ, ରସୋଦ୍ଗାର ପ୍ରଭୃତି ବିବିଧ ବିଭାବର ଅଭିବ୍ୟକ୍ତିରେ ବିଦ୍ୟାପତିଙ୍କ କାବ୍ୟିକ କୁଶଳତା ଅତୁଳନୀୟ ।

ପରମ ପ୍ରେମିକା ରୂପରେ ଶ୍ରୀରାଧାଙ୍କ ମନୋଭାବକୁ କବି ସୂକ୍ଷ୍ମ ମନସ୍ତତ୍ତ୍ୱବୋଧ ଓ ଶିଳ୍ପବୋଧରେ ରସାଣିତ କରି ଯେପରି ଉପସ୍ଥାପିତ କରିଛନ୍ତି, ତାହାର ପଟାନ୍ତର ବିରଳ । ଧୀରେ ଧୀରେ କୃଷ୍ଣ ପ୍ରେମର ଉଦ୍ଦାମ ତରଙ୍ଗ ଲୀଳାରେ ସେ ହୋଇଯାଇଛନ୍ତି ଆତ୍ମବିସ୍ମୃତା । ବିରହରେ ତାହାଙ୍କ ବେଦନା-ବିଷଣ୍ଣତା ଯେପରି କରୁଣୀୟ, ସେହିପରି ମିଳନରେ ତାହା ହୋଇ ଉଠିଛି ଅପୂର୍ବ ରାଗ-ରଞ୍ଜିତ । ସଖୀମାନେ ରାଧାଙ୍କୁ ସେଇ ମିଳନାନୁଭୂତି ବିଷୟରେ ପ୍ରଶ୍ନ କରିବାରୁ ସେ କହିଛନ୍ତି, ସେଇ ଅପାର୍ଥିବ ଅନୁଭୂତିକୁ କଣ କଥାରେ କହି ହେବ ?

"ସଖି, କି ପୁଛସି ଅନୁଭବ ମୋୟ
ସେହୋ ପିରିତି ଅନୁରାଗ ବଖାନିଏ
ତିଲ ତିଲ ନୂତନ ହୋୟ ।

ଜନମ ଅବଧି ହାମ ରୂପ ନେହାରସୁ
ନୟନ ନ ତିରପିତ ଭେଲ
ସେହୋ ମଧୁବୋଲ ସବଣହି ସୁନଲ
ସ୍ମୃତିପଥ ପରସନ ଭେଲ ।

କତ ମଧୁ ଯାମିନୀ ରଭସ ଗମାଓଲ
ନ ବୁଝଲ କୈସନ କେଲ
ଲାଖ ଲାଖ ଯୁଗ ହିୟେ ହିୟ ରାଖଲ
ତଇ ହିଅ ଜୁଡ଼ଲ ନାଗେଲ ।

କତ ବିଦଗଧ ଜନ ରସ ଆମୋଦଲ
　　　　　　　　ଅନୁଭବ କାହୁ ନା ପେଖ
ବିଦ୍ୟାପତି କହେ ପ୍ରାଣ ଜୁଡ଼ା ଏତ
　　　　　　　　ଲାଖେ ନା ମିଲଲ ଏକ ।”

ଏହାର ଓଡ଼ିଆ ପଦ୍ୟାନୁବାଦ—

ସଖି, ପଚ୍ଛୁରୁ କାହିଁକି ମୋତେ
　　　　ସେ ବିଚିବ ଅନୁଭବ କାହାଣୀ
ସେ ପୀରତି ଅନୁରାଗ　　　　ତିଳେ ତିଳେ ଅଭିନବ
　　　　ହୋଇବ କପରି ତାହା ବଖାଣି ?
ଜନମ ଦିନରୁ ମୁହିଁ　　　　ସେ ରୂପକୁ ନିରେଖିଲି
　　　　ତୃପତି ହେଲା ମୋର ନୟନ
ସେହି ମଧୁର ବଚନ　　　　ଶୁଣି ଶୁଣି ଅନୁଦିନ
　　　　ଶ୍ରୁତି ପଥ ନୋହିଲା ପ୍ରସନ୍ନ ।
କେତେ ଯାମିନୀ ମଧୁର　　　　ଆମୋଦେ କଲି ବିଭୋର
　　　　ନ ବୁଝିଲି ସେ କେଳି କେସନ
ହୃଦୟେ ହୃଦୟ ରଖି　　　　ଲକ୍ଷ ଲକ୍ଷ ଯୁଗ ସଖି
　　　　ମୋ ହୃଦୟ ନ ହେଲା ପ୍ରସନ୍ନ ।
ବିଦଗଧ ଜନ କେତେ　　　　ରସ ଆମୋଦିଲେ ଚିତ୍ତେ
　　　　ନ ଦେଖିଲି ଅନୁଭବୀ କାହାରେ
ବିଦ୍ୟାପତି କହେ ସହି　　　　ଲକ୍ଷେ ଜନେ ଜଣେ କେହି
　　　　ନ ମିଳିଲେ ପ୍ରାଣ ତୋଷିବାରେ ।

ଏହି ଗୀତଟି ସମ୍ପର୍କରେ ବିଶିଷ୍ଟ ଆଲୋଚକ ଶ୍ରୀକୁମାର ବନ୍ଦୋପାଧ୍ୟାୟଙ୍କ ଉକ୍ତି ଏଠାରେ ପ୍ରଣିଧାନଯୋଗ୍ୟ—“ଏଠାରେ କୌଣସି ଏକ ବିଶେଷ ଲୌକିକ ପ୍ରେମର ବ୍ୟର୍ଥତା ପ୍ରକାଶ ପାଇନାହିଁ । ମାନବ ଚିତ୍ତର ସନାତନ ରହସ୍ୟର ସୂକ୍ଷ୍ମ ତାତ୍ପର୍ଯ୍ୟଟି ଏଠାରେ ସାର୍ଥକ ଭାବରେ ପ୍ରତିଫଳିତ ହୋଇଅଛି । ପ୍ରେମର ଚିରନ୍ତନ ଅତୃପ୍ତି, ଆଦର୍ଶ ଓ ବାସ୍ତବ ମଧ୍ୟରେ ଅନତିକ୍ରମ୍ୟ ବ୍ୟବଧାନ, ସୌନ୍ଦର୍ଯ୍ୟର ଖଣ୍ଡିତ ଆଂଶିକ ପ୍ରକାଶରୁ ଏହାର ମୂଳ ପ୍ରସ୍ରବଣ ଆଡ଼କୁ ଦୁରୂହ ଅଭିଯାନ, ରୂପରେ

ରୂପାନ୍ତରର ବ୍ୟଞ୍ଜନା, ଅନନ୍ୟୋକ୍ତ ଆର୍ତ୍ତିକୁ ବ୍ୟାକୁଳ ହସ୍ତ ପ୍ରସାରଣ ଇତ୍ୟାଦି ପ୍ରେମର ଦୁରବଗାହ ମହିମା ଓ ଆକର୍ଷଣର ସୁର ଏହି କବିତାରେ ଯେପରି ଆଶ୍ଚର୍ଯ୍ୟ ଅଭିବ୍ୟକ୍ତି ଲାଭ କରିଛି, ତହିଁରୁ ଏହା ପୃଥିବୀର ଶ୍ରେଷ୍ଠ ଗୀତ ସମୂହ ମଧ୍ୟରେ ସ୍ଥାନ ଲାଭ ପାଇଁ ଉପଯୁକ୍ତ । କୀଟ୍‌ସଙ୍କ ସୌନ୍ଦର୍ଯ୍ୟ ଉପଭୋଗରେ ଅପରିତୃପ୍ତି ଓ ସେଲିଙ୍କ ଆଦର୍ଶ ସନ୍ଧାନରେ ଊର୍ଦ୍ଧ୍ୱାଭିଯାନପ୍ରୟାସୀ ହୃଦୟାବେଗ ଯେପରି ଏହି ମହାଗୀତରେ ନିବିଡ଼ ଏକାତ୍ମତାରେ ଯୁକ୍ତ ହୋଇଅଛି ।” (୧)

ନବୀନ ବୟସୀ ଶ୍ରୀରାଧାଙ୍କ ପ୍ରଥମ ପ୍ରଣୟୋଦ୍‌ଗମ, ଗୃଢ଼ଙ୍କୁ ବ୍ୟାପ୍ତ ଓ ରହସ୍ୟମୟ କରିବାରେ ବିଦ୍ୟାପତିଙ୍କ ପ୍ରତିଭା କିପରି ତନ୍ମୟ ତାହା ନିମ୍ନୋକ୍ତ ଗୀତଟିରୁ ଅନୁମେୟ—

ଖନେ ଖନେ ନୟନ କୋନ ଅନୁସରଇ
ଖନେ ଖନେ ବସନ ଧୂଲି ତନୁ ଭରଇ ।

ଖନେ ଖନେ ଦଶନ ଛଟା ଛୁଟ ହାସ
ଖନେ ଖନେ ଅଧର ଆଗେ କରୁ ବାସ ।

ଚଉଁକି ଚଲଏ ଖନେ ଖନେ ଚଲୁମନ୍ଦ
ମନମଥ ପାଠ ପହିଲ ଅନୁବନ୍ଧ ।

ହୃଦୟ-ମୁକୁଳ ହେରି ହେରି ଥୋର
ଖନେ ଆଁଚର ଦଏ ଖନେ ହୋୟ ଭୋର ।

ବାଲା ଶୈଶବ ତାରୁନ ଭେଟ
ଲଖଏ ନ ପରିଅ ଜେଠ କନେଠ ।

ବିଦ୍ୟାପତି କହ ଶୁନ୍ ବରକାନ
ତରୁନିମ ଶୈଶବ ଚିହ୍ନଇ ନଜାନ ।”

ଓଡ଼ିଆ ପଦ୍ୟାନୁବାଦ—

କ୍ଷଣୁ କ୍ଷଣ ନୟନ କୋଣକୁ ଅନୁସରଇ
କ୍ଷଣୁ କ୍ଷଣ ବସନର ଧୂଳି ତନୁ ଭରଇ ।

---

(୧) ବାଙ୍ଗଲା ସାହିତ୍ୟର କଥା—ଶ୍ରୀକୁମାର ବନ୍ଦୋପାଧ୍ୟାୟ (ପୃ ୭୨)

କ୍ଷଣୁ କ୍ଷଣ ଦଶନ ଛଟାରେ ଫୁଟେ ହସ
କ୍ଷଣୁ କ୍ଷଣ ଅଧରେ ସେ ଆଚ୍ଛାଦଇ ବାସ ।
ଚମକି ଚଳଇ ବେଗେ କେବେ ଚଳେ ଧୀର
ଆଦ୍ୟ ଭୂମିକାଟି ଏହି ମନ୍ମଥ ପାଠର ।
କେବେ ଅଳପ ନିରେଖି ହୃଦୟ ମୁକୁଳ
ବସନେ ଆବରି ପରକ୍ଷଣେ ହୁଏ ଭୋଳ ।
ଶୈଶବ ଯୌବନ ଭେଟ ବାଳାର ଶରୀରେ
କିଏ ବଡ଼ କିଏ ସାନ ବାରିନୁହେଁ ତାରେ
କହେ ବିଦ୍ୟାପତି ଶୁଣ ହେ କାହ୍ନୁ ପ୍ରଧାନ
ବାରି ହୁଏ ନାହିଁ ଏବେ ଶୈଶବ ଯୌବନ ।

ଏହିପରି ପ୍ରଣୟ ରାଗରଞ୍ଜିତ ବିଚିତ୍ର କଳା ବିଳାସର ଉଦ୍ଭାବନ ଛନ୍ଦ-ବର୍ଣ୍ଣ-ଭାବ-ରୂପ ସୁଷମାର ବୈଚିତ୍ର୍ୟ ପ୍ରକଟନ ଓ ବେଦନା ଆକ୍ଷେପର ମଧୁର ଅଭିବ୍ୟକ୍ତି ଯୋଗୁଁ ତାହାଙ୍କ ସଙ୍ଗୀତ କପରି ଅପୂର୍ବ ରସମୟ ତାହାର ଆଉ ଗୋଟିଏ ଦୃଷ୍ଟାନ୍ତ ଏଠାରେ ଦିଆଯାଇ ପାରେ—

"ଫୁଟଲ କୁସୁମ ନବ କୁଞ୍ଜ କୁଟୀର ବନ
କୋକିଳ ପଞ୍ଚମ ଗାଓଇରେ ।
ମଲୟାନିଲ ହିମ ସିଖର ସିଧାରଲ
ପିୟା ନିଜ ଦେଶ ନ ଆଓଇରେ ।
ଚନ୍ଦନ ଚନ୍ଦ ତନ ଅଧିକ ଉତାପଏ
ଉପବନ ଅଲି ଉତରୋଲ ରେ ।
ସମୟ ବସନ୍ତ କାନ୍ତ ରହୁ ଦୂର ଦେଶ
ଜାନଲ ବିହି ପ୍ରତିକୂଳ ରେ ।
ଆନମି ନୟନ ନାହ ମୁଖ ନିରଖଇତ
ତିରପିତ ନଭେଲ ନୟନରେ ।
ଇ ସୁଖ ସମୟ ସହଏ ଏତ ସଙ୍କଟ
ଅବଳା କଟିନ ପରାଣରେ ।

ଦିନୁ ଦିନ ଝିନ ତନୁ କମଲିନୀ ଜନୁ
ନ ଜାନି କି ଜୀବ ପରଜନ୍ତରେ
ବିଦ୍ୟାପତି କହ ଧିକ ଧିକ ଜୀବନ
ମାଧବ ନିକରୁଣ କନ୍ତରେ ।"

ଓଡ଼ିଆ ପଦ୍ୟାନୁବାଦ—

ଫୁଟିଲି କୁସୁମ ନବ କୁଞ୍ଜ କୁଟିର ବନ
କୋକିଳ ପଞ୍ଚମେ ଏବେ ଗାଇଲାରେ

ମଳୟ ଅନିଳ ହିମ ଶିଖରୁ ଆସିଲା ବହି
ପ୍ରିୟ ଗୃହେ ଫେରିତ ନ ଆସିଲାରେ ।

ଚନ୍ଦ୍ର ଚନ୍ଦନ ତନୁକୁ ଅଧିକ ତପତ କଲା
ବନ ମୁଖରିତ ଅଳି ବୋଲରେ

ସମୟ ବସନ୍ତ ଏବେ କାନ୍ତ ରହିଲେ ବିଦେଶେ
ଜାଣିଲି ମୁଁ ବିଧି ପ୍ରତିକୂଳରେ ।

ଅନିମେଷ ମୋ ନୟନ ଦର୍ଶନେ ପ୍ରିୟ ବଦନ
ତୃପତ ନ ହେଲା ଏ ନୟନରେ ।

ଏହି ସୁଖର ସମୟେ ଏତେ ସଙ୍କଟ କେ ସହେ
ଅବଳାର କଠିନ ପରାଣରେ

ଦିନୁ ଦିନୁ କ୍ଷୀଣ ତନୁ ଯଥା ବନେ କମଳିନୀ
ନ ଜାଣେ ମୁଁ ଜୀଇବି କେମନ୍ତରେ

କହେ ବିଦ୍ୟାପତି ଧିକ ଧିକ ମୋ ଜୀବନ
କଠୋର ମାଧବ ମୋର କାନ୍ତରେ ।

ରାଧାକୃଷ୍ଣ ଲୀଳାତ୍ମକ ଗୀତ ବ୍ୟତୀତ କବି କେତେକ ଶିବ ବନ୍ଦନା ଓ ଆତ୍ମାନୁଭୂତିମୂଳକ ଗୀତ ମଧ୍ୟ ରଚନା କରିଯାଇ ଅଛନ୍ତି । ପରିଣତ ବୟସରେ ଲିଖିତ ନିମ୍ନୋକ୍ତ ଗୀତରୁ ତାହାଙ୍କ ଭକ୍ତିମତ୍ତା ଓ ଆତ୍ମସମର୍ପଣ ଭାବ ସୂଚିତ ହୁଏ ।

"ତାତଲ ସୈକତେ ବାରି ବିନ୍ଦୁ ସମ
ସୁତ, ମିତ, ରମନି, ସମାଜ
ତୋହେ ବିସରି ମନ ତାହେ ସମରପିନୁ
ଅବ ମଝୁ ହବ କୌନ କାଜ ।୧।

ମାଧବ, ହମ ପରିନାମ ନିରସା
ତୁହୁ ଜଗ ତାରନ ଦୀନ ଦୟାମୟ
ଅତଏ ତୋହରି ବିସବାସା ।୨।

ଆଧ ଜନମ ହମ ନିନ୍ଦ ଗମାୟନୁ
ଜରା ସିସୁ କତଦିନ ଗେଲା
ନିଧୁବନ ରମନି-ରଭସ ରଙ୍ଗ ମାତନୁ
ତୋହେ ଭଜବ କୌନ ବେଲା ।୩।

କାତ ଚତୁରାନନ ମରି ମରି ଯାଓତ
ନ ତୁଯା ଆଦି ଅବସାନ
ତୋହେ ଜନମି ପୁନ ତୋହେ ସମାଓତ
ସାଗର ଲହରି ସମାନ ।୪।

ଭନଇ ବିଦ୍ୟାପତି ସେସ ସମନ ଭୟ
ତୁଅ ବିନା ଗତି ନାହିଁ ଆରା
ଆଦି ଅନାଦିକ ନାଥ କହାଓସି
ଅବ ତାରନ ଭାର ତୋହାରା ।" ।୫।

ଓଡ଼ିଆ ପଦ୍ୟାନୁବାଦ—

ମାଧବ, ଶେଷରେ ଏଇ ମୋ ଆଶା
ଦୀନ ଦୟାମୟ ଜଗତ ତାରଣ
ତୁମେଇ ମୋର ଭରସା ।୦।
ତାତଲା ବାଲିରେ ବାରି ବିନ୍ଦୁ ସମ
ସୁତ, ମିତ, ନାରୀଗଣ
ତୋତେ ଭୁଲି ତାଙ୍କୁ ମନ ଅରପିଲି
ଏବେ ହେବ କି କାରଣ ।୧।

ଅଧେ ଯୌବନ ମୋ    କଟିଲ୍ ନିଦରେ
(ଜଗ) ଶଇଶବ ଗଲା ଗୃଳ
କ୍ରୀଡ଼ା କଉତୁକେ    ରମଣୀ ବିଳାସେ
କେବେ ବା ତୋତେ ଭଜିଲି ?
କେତେ ବ୍ରହ୍ମା ଆସି    ଦେଇଗଲେ ବିଦାୟ
ନାହିଁ ତୋ ଆଦି ବିଳୟ
ତୋ ଠାରୁ ଜନମି    ତୋ ଠାରେ ବିଲୀନ
ଯେସନେ ଲହରୀଚୟ ।୩।
ଭଣେ ବିଦ୍ୟାପତି    ଶମନ ଭୟରୁ
ନାହିଁ ଗତି ତୁମ୍ଭ ବିନା
ତୁ ବୋଲଉ    ଆଦି ଅନାଦି କାରଣ
ତାରିବା ଭାର ତୋ ସିନା । ୪ ।



# ବିଦ୍ୟାପତି ଓ ଓଡ଼ିଆ ସାହିତ୍ୟ

ଶ୍ରୀଚୈତନ୍ୟଙ୍କ ଓଡ଼ିଶା ଆଗମନ ପୂର୍ବରୁ ବିଦ୍ୟାପତିଙ୍କ ଗୀତି ରଚନା ଓଡ଼ିଶାରେ ପ୍ରସାର ଲାଭ କରିଥିବା ସୁନିଶ୍ଚିତ ମନେହୁଏ । ତତ୍କାଳୀନ ଓଡ଼ିଶାର ଦକ୍ଷିଣାଞ୍ଚଳରେ ଶାସକ ଓ ରାଜ ପ୍ରତିନିଧି ରାୟ ରାମାନନ୍ଦ ସ୍ୱରଚିତ ଏକ ବ୍ରଜବୋଲି କବିତା ଶ୍ରୀଚୈତନ୍ୟଙ୍କୁ ପ୍ରଥମ ସମ୍ଭାଷଣ କାଳରେ ଶୁଣାଇଥିବା ପ୍ରସଙ୍ଗ ଚୈତନ୍ୟ ଚରିତାମୃତରୁ ଜଣାଯାଏ । ସେ ମଧ୍ୟ ପରବର୍ତ୍ତୀକାଳରେ ଚୈତନ୍ୟଙ୍କୁ ଭାବାନୁରୂପ ବିଦ୍ୟାପତିଙ୍କ କେତେକ କବିତା ମଧ୍ୟ ଶୁଣାଉଥିଲେ । ରାମାନନ୍ଦ ମୈଥିଳୀ କବିତା ରୀତିରେ ବଙ୍ଗଳା, ବ୍ରଜଭାଷା ଓ ଓଡ଼ିଆ ଶବ୍ଦାବଳୀ ମିଶାଇ ବହୁ ପଦାବଳୀ ରଚନା କରିଛନ୍ତି ।

ଷୋଡ଼ଶ ଶତାବ୍ଦୀରେ ଓଡ଼ିଶାରେ ବ୍ରଜବୋଲି ଭାଷାରେ ଅନ୍ୟ କେତେକ କବି ମଧ୍ୟ ଗୀତ ରଚନା କରିଥିଲେ । ଏତାଦୃଶ ଗୀତ ରଚୟିତା ଭାବରେ ପ୍ରତାପରୁଦ୍ର, ଚମ୍ପତିରାୟ, ମାଧବୀ ଦାସୀ, କାହ୍ନୁ ଦାସ, ମୁରାରି ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ । ବଙ୍ଗଳା ପଦକଳ୍ପତରୁ, ଖାନନ୍ଦ ଚିନ୍ତାମଣିରେ ଏହି କବିମାନଙ୍କ କେତେକ ଗୀତ ସଂକଳିତ ହୋଇଅଛି । ସପ୍ତଦଶ ଶତାବ୍ଦୀରେ ଓଡ଼ିଶାର ବ୍ରଜବୋଲି ଗୀତ ରଚୟିତା ଭାବେ ରାୟ ଦାମୋଦର ଦାସ, ବୃନ୍ଦ କବି, ଯଦୁପତି ଦାସ ପ୍ରଭୃତି କବିଗଣ ସୁବିଖ୍ୟାତ । ରାୟ ଦାମୋଦର ଓ ବୃନ୍ଦ କବି ପୁରୀର ରାଜା ରାମଚନ୍ଦ୍ର ଦେବଙ୍କ ସଭାକବି ଏବଂ ଯଦୁପତି ଦାସ ନରସିଂହ ଦେବଙ୍କ ସଭାକବି ଥିଲେ । ପ୍ରାଚୀ ସମିତି ପକ୍ଷରୁ ପ୍ରକାଶିତ 'ପ୍ରାଚୀନ ଗଦ୍ୟ ପଦ୍ୟାଦର୍ଶ'ରେ ଏହି କବି ସପ୍ତଙ୍କ କେତେଗୋଟି ସଙ୍ଗୀତ ସଂକଳିତ ହୋଇଅଛି ।

ପରିତାପର ବିଷୟ, ଓଡ଼ିଶାର କବିମାନଙ୍କ ରଚିତ ବ୍ରଜବୋଲି ଗୀତିମାନଙ୍କର ସଂକଳନ ଓ ତତ୍‌ସମ୍ପର୍କୀୟ ଅନୁଶୀଳନ ଏପର୍ଯ୍ୟନ୍ତ ହୋଇ ପାରିନାହିଁ ।

ଊନବିଂଶ ଶତାବ୍ଦୀର ଶେଷ ଦଶକ ପର୍ଯ୍ୟନ୍ତ ଓଡ଼ିଶାର ବହୁ ବୈଷ୍ଣବ କବି ଏହି ମିଶ୍ର ଭାଷାରେ ବିଦ୍ୟାପତିଙ୍କ ସଙ୍ଗୀତ ଆଦର୍ଶରେ ଗୀତ ରଚନା କରୁଥିବାର ପ୍ରମାଣ ମିଳୁଅଛି । ଉଦାହରଣ ସ୍ୱରୂପ ଅଷ୍ଟାଦଶ ଶତକର କବି ପିଣ୍ଡିକ ଶ୍ରୀଚନ୍ଦନ ଓ ଗୌରଚରଣ ଅଧିକାରୀ (୧୮୧୪-୧୮୯୦)ଙ୍କ ନିମ୍ନୋକ୍ତ ଗୀତ ଦୁଇଟିର ଆଦ୍ୟ ପଦ ଉଲ୍ଲେଖ କରାଗଲା ।

(୧) ଓହେ ମାଧବ ତବ ବିରହେ ଦୁଃଖୀ ରାଈ
ତୁଷର ମନସିଜ ବିଶିଖ ଭୟ ହର
ତୁହ୍ମା ଭବେ ଲୀନ ହୋଇ ହେ ।୦।

ରୋଦତ ଖେଦ ଅଧୀର ଭଲ ନନ୍ଦତା
ଚନ୍ଦନ ଶୃଙ୍ଗ ଉଦଆରି
ବିଷଧରପୁର ଗରଳ ବହି ଆନତ
ମାନତ ମଳୟ ସମୀରି ।୨।

(ବସନ୍ତରାସ—ପିଣ୍ଡିକ ଶ୍ରୀଚନ୍ଦନ)

(୨) ଗାନ କର ହରିନାମ ରସିଆ ବରଜରାଜ କାହ୍ନୁପ୍ୟାର
ଗୋପ ଗୁଆଲିନୀ ମାନସ ଲୁଟେ ମୋହନ ବେଶ ବନୟ୍ୟାର ।୦।
(ଗୌରଚରଣ)

ଅତୀତରେ କେତେକ ଆଲୋଚକ ଏତାଦୃଶ ଗୀତ ରଚନାକୁ ବିକୃତ ବଙ୍ଗଳା ମନେକରି ଏହାପ୍ରତି ଉପେକ୍ଷା ପ୍ରଦର୍ଶନ କରିଅଛନ୍ତି । ଓଡ଼ିଶାର କବିଗଣ ବ୍ରଜବୋଲି ଭାଷାରେ ଗୀତ ରଚନା କଲାବେଳେ ତହିଁରେ ଓଡ଼ିଶାର ଦେଶଜ ଶବ୍ଦ ସଂଯୋଜନ କରିବା ଏକାନ୍ତ ସ୍ୱାଭାବିକ । ଚମ୍ପତିଙ୍କ ରଚନାରୁ ଦୁଇଟି ପଦ ଉଦାହରଣ ସ୍ୱରୂପ ଏଠାରେ ଉଦ୍ଧାର କରାଗଲା ।

୧-(କ) ଦଶଗୁଣ ଅଧିକ ଅନଳେ ତନୁ ଦାହ୍ଲ
ରତ୍ତ ଚନ୍ଦ୍ର ଦେଖି ଦ୍ରୁତ ଅଙ୍ଗେ
ଚମ୍ପକ ପେଉ଼ କପୂର ଯବ ନମିଲବ
ତବ ମୀଲବ ହର ସଙ୍ଗେ ।

ବୈଷ୍ଣବ ପଦାବଳୀ ପୃ ୫୬୪

(ପେଉ଼ = ପଇଡ଼—କର୍ପୂର ମିଶା ପଇଡ଼ ପାଣି ପିଇଲେ ବିଷ ହୁଏ)

(ଖ) ତାହେ ଲାଗି ଅନ୍ନ ପାନ ସବ ତେଜଲ
ଜପକରୁ ତାଙ୍କର ନାମ
ଚମ୍ପକ ପତ୍ତ କହ ସୋଇ ଯୁବତବର
ଖାଓତ ପୁନ ତକ୍ରୁ ଗାମ ।

(ଅନ୍ନପାନ = ଭାତପାଣି । ତାଙ୍କର = ତାହାଙ୍କର । ଗାମ = ଗୁଣସମୂହ)

ଓଡ଼ିଆରେ ନୂତନ ଛନ୍ଦର ଅନୁପ୍ରବେଶ କ୍ଷେତ୍ରରେ ମଧ୍ୟ ବିଦ୍ୟାପତିଙ୍କ ପ୍ରଭାବକୁ ଅସ୍ୱୀକାର କରାଯାଇ ନପାରେ । କେତେକ ଓଡ଼ିଆ ଛନ୍ଦର ଆଦ୍ୟରୂପ ବିଦ୍ୟାପତିଙ୍କ ସଙ୍ଗୀତାବଳୀରେ ପରିଦୃଷ୍ଟ ହୁଏ । ଯଥା—

(୧) ଓଡ଼ିଆ ନବାକ୍ଷରୀ ବୃତ୍ତ ବା ଗୁଜ୍ଜରୀ ରାଗ ସହ ବିଦ୍ୟାପତିଙ୍କ ନିମ୍ନୋକ୍ତ ଗୀତଟିର ସାଦୃଶ୍ୟ ବିଦ୍ୟମାନ—

'ଏ ଧନି କର ଅବଧାନ
ତୋ ବିନେ ଉନମତ କାନ ।
କାରଣ ବିନୁ ଖେଣେ ହାସ
କି କହ ଏ ଗଦ ଗଦ ଭାଷ ।'
( କାନ—କାହ୍ନୁ )

(୨) ଅଷ୍ଟ ଅକ୍ଷର ବିଶିଷ୍ଟ ଓଡ଼ିଆ ନଳିନୀ ଗୌଡ଼ା ବୃତ୍ତ ସହ ବିଦ୍ୟାପତିଙ୍କ ବସନ୍ତ ବର୍ଣ୍ଣନାମୂଳକ ନିମ୍ନୋକ୍ତ ଗୀତଟିର ସାଦୃଶ୍ୟ ସୁସ୍ପଷ୍ଟ ।

"ମଳୟ ପବନ ବହ
ବସନ୍ତ ବିଜୟ କହ ।

ଭ୍ରମର କରଇ ରୋଳ
ପରିମଳ ବହୁ ଓର ।
ଋତୁପତି ରଙ୍ଗ ଦେଲା
ହୃଦୟ ରଭସଁ ଭେଲା ।

(ଭେଲା—ହେଲା । ରଭସଁ—ଆନନ୍ଦିତ)

(୩) ଦଶ ଅକ୍ଷର ବଶିଷ୍ଟ ଓଡ଼ିଆ ବୃତ୍ତ ମୁଖାରି ସହ ବିଦ୍ୟାପତିଙ୍କ ନିମ୍ନୋକ୍ତ ଗୀତଟିର ସାଦୃଶ୍ୟ ବିଦ୍ୟମାନ ।

'ମଧୁଋତୁ ମଧୁକର ପାନ୍ତି
ମଧୁର କୁସୁମ ମଧୁ ମାତି ।
ମଧୁର ବୃନ୍ଦାବନ ମାଝ
ମଧୁର ମଧୁର ରସରାଜ ।

× ×

ମଧୁର ମଧୁର ରସଗାନ
ମଧୁର ବିଦ୍ୟାପତି ଭାନ ।'

(ପାନ୍ତି—ପଙ୍କ୍ତି । ମାଝ—ମଝିରେ । ଭାନ—ଭଣେ)

(୪) କେଦାର, ଦେଶାକ୍ଷ, ଚକ୍ରକେଳି ପ୍ରଭୃତି ନାମରେ ପରିଚିତ ଏକାଦଶ ଅକ୍ଷର ବଶିଷ୍ଟ ଓଡ଼ିଆ ବୃତ୍ତ ସହ ସାଦୃଶ୍ୟ—

'ଆଜୁ କାହେ ତୋହି ଐସନ ଦେଖି
ଛୋଡୁ ଛୁଲୁ ଛୁଲୁ ଅରୁନ ଆଁଖି ।
ଅଙ୍ଗ ଦେଇ ମୋଡ଼ି କହଛ କଥା
ଜନୁ ଅନ୍ତରେ କ ଭେଲ ବ୍ୟଥା ।

× × ×

ବିଦ୍ୟାପତି କହ ଏକଥା ଦଢ଼
ଗୋପନ ପୀରତି ବିସମ ବଡ଼ ।'

(ଆଜୁ—ଆଜି । କାହେ—କଣ୍ଠା । ତୋୟ—ତୋତେ । ଐସନ—ଏପରି । ହୋଯ୍—ହୁଏ । ଜନୁ—ଯେପରି । ଭେଲ—ହେଲା । ଦଢ଼—ଦୃଢ଼ ।)

(ଝ) ୧୬ଶ ଅକ୍ଷର ବଶିଷ୍ଟ ଓଡ଼ିଆ ଗ୍ରାମକେଶୀ ବୃତ୍ତ ଓ ବିଦ୍ୟାପତିଙ୍କ ଗୀତର ସାଦୃଶ୍ୟ—

'ନାମିତ ଅଳକେ ବେଢ଼ଲ
ମୁଖ-କମଳ ଶୋଭେ
ରାହୁକ ବାହୁ ପରଶଲ
ଶଶି ମଣ୍ଡଳ ଲୋଭେ ।
× × ×
କଳସ କୁଚ ଲୋଟାଇଲି
ଘନ ସାମର ବେଣୀ
କନକ ପରଖ ସୁତଲି
ଜାନ କାରି ନାଗିନୀ ।'

(ନଇଁ ପଡ଼ିଥିବା ଅଳକ ବେଷ୍ଟିତ ମୁଖମଣ୍ଡଳ ଶୋଭା ପାଉଛି । (ଏହା) ଶଶିମଣ୍ଡଳ ଲୋଭରେ ରାହୁର ବାହୁସ୍ପର୍ଶ କରିବା ସଦୃଶ । (ତାହାର) ଘନକୃଷ୍ଣ ବେଣୀ କୁଚ କଳସରେ ଲୋଟୁଛି । ସ୍ୱର୍ଣ୍ଣ ପର୍ବତ ଉପରେ କୃଷ୍ଣସର୍ପିଣୀ ଶୋଇବା ସଦୃଶ ।)

ବିଦ୍ୟାପତିଙ୍କ ନିମ୍ନୋକ୍ତ ଗୀତ ସହ ସପ୍ତଦଶ ଶତାବ୍ଦୀର କବି ଦେବଦୁର୍ଲଭ ଦାସଙ୍କ ରହସ୍ୟ ମଞ୍ଜରୀର ଏକ ଛନ୍ଦର ସାଦୃଶ୍ୟ ମଧ୍ୟ ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ । ଯଥା ବିଦ୍ୟାପତିଙ୍କ ଗୀତ—

'ଯବ ଗୋଧୂଳି ସମୟ ବେଲି
ଧନି ମନ୍ଦିର ବାହିର ଭେଲି ।
ନବ ଜଳଧର ବିଜୁରି ରେହା
ଦ୍ୱନ୍ଦ୍ୱ ପସାରିଆ ଗେଲି । ୧ ।
ଧନୀ ଅଳପ ବୟସୀ ବାଳା
ଜନୁ ଗାଁଥନି ପୁହପ ମାଳା

ଥୋଇ ଦରଶନେ ଆଶା ନ ପୂରଇ
ବାଢ଼ଲ ମଦନ ଜ୍ୱାଳା । ୨ ।

ଦେବଦୂର୍ଲଭଙ୍କ ରଚନା—

'ସଜଳ ଜଳଦ କାନ୍ତି
ନୀଳମଣି ଜିଣି ଭାନ୍ତି
ଅମଳ କମଳ ମୁଖ ମଞ୍ଜୁଳ
ଅଳକ ଅଳକା ପନ୍ତି ।
ଅରୁଣ ଅଧର ରାଜେ
ମୁରଲୀ ମଧୁର ବାଜେ
ନାସେ ମୋତିବର ଗଗନେ ଶୁକ୍ର
ଅଧର ପରେ ବିରାଜେ ।'

ଅଭିମନ୍ୟୁ ପ୍ରଭୃତି ବୈଷ୍ଣବ କବିଙ୍କ କବିତାରେ ବିଦ୍ୟାପତିଙ୍କ କବିତାର ଭାବର ପ୍ରଭାବ ମଧ୍ୟ ନିହିତ । ବିଶେଷତଃ ବୟଃ ସନ୍ଧିମୂଳକ ଗ୍ରନ୍ଥଟିରୁ ଏହା ସୁସ୍ପଷ୍ଟ ।

ବିଦ୍ୟାପତିଙ୍କ ସଙ୍ଗୀତର ପ୍ରଭାବ ଯୋଗୁ ଅସମିଆ ସାହିତ୍ୟରେ ମଧ୍ୟ ବ୍ରଜବୋଲି ଭାଷାରେ ବହୁ ପଦାବଳୀ ରଚିତ ହୋଇଥିଲା । ଆସାମର ବିଶିଷ୍ଟ କବି ଶଙ୍କର ଦେବ (୧୪୪୯-୧୫୬୮) ସର୍ବାଦୌ ଏତାଦୃଶ ଗୀତ ରଚନା କରିଥିଲେ । ପରବର୍ତ୍ତୀକାଳରେ ଅନ୍ୟାନ୍ୟ କବି ମଧ୍ୟ ଏତାଦୃଶ ଗୀତ ରଚନାରେ ମନୋନିବେଶ କରିଥିବା ଜଣାଯାଏ । ଏହି ଗୀତଗୁଡ଼ିକ 'ବର ଗୀତ' ବା ଦିବ୍ୟ ସଙ୍ଗୀତ ନାମରେ ପରିଚିତ । ଏହିପରି ଭାବେ ଏହି ମହାନ କବିଙ୍କ ସଙ୍ଗୀତ ଶହ ଶହ ବର୍ଷ ଧରି ପୂର୍ବାଞ୍ଚଳୀୟ ଭାଷା ଓ ସାହିତ୍ୟକୁ ବିପୁଳ ପରିମାଣରେ ପ୍ରଭାବିତ କରିବା ସଙ୍ଗେ ସଙ୍ଗେ ଏକ ସୁବିସ୍ତୃତ ଅଞ୍ଚଳରେ ଯେ ସମ୍ପ୍ରୀତି ଓ ସମ୍ମେଳନର ଲହରୀ ଖେଳାଇ ଦେଇଥିଲା, ଏ ବିଷୟରେ ସନ୍ଦେହର ଅବକାଶ ନାହିଁ । ଯାହାହେଉ ଏହି ପ୍ରଭାବ ସମ୍ପର୍କରେ ଓଡ଼ିଶାରେ ଅଧିକ ଅନୁଶୀଳନର ଯେ ଆବଶ୍ୟକତା ରହିଛି ଏହା ଅନସ୍ୱୀକାର୍ଯ୍ୟ ।

# କବୀର

**ଜୀବନ କଥା**—ଭାରତର ମଧ୍ୟଯୁଗର ବିଶିଷ୍ଟ ସାଧକମାନଙ୍କ ମଧ୍ୟରୁ କବୀର ଅନ୍ୟତମ । ମଧ୍ୟକାଳୀନ ହିନ୍ଦୀ ସାହିତ୍ୟର ବିଶିଷ୍ଟ ସନ୍ଥ କବି ବା ଭକ୍ତ କବି ଭାବରେ ମଧ୍ୟ ତାହାଙ୍କ ନାମ ଅଗ୍ରଗଣ୍ୟ; ମାତ୍ର ସେ ଥିଲେ ନିରକ୍ଷର । କବି ହେବାର ଅଭିଳାଷ ତାଙ୍କର ନଥିଲା । ସେ ଥିଲେ ମୁଖ୍ୟତଃ ଭକ୍ତ ଓ ସାଧକ । 'କବୀର ପନ୍ଥ' ନାମକ ଏକ ଧର୍ମ ସମ୍ପ୍ରଦାୟର ଗୁରୁ ଭାବରେ ସେ ସ୍ୱୀକୃତ । ସବୁ ଧର୍ମଗୁରୁଙ୍କ ପରି ତାହାଙ୍କ ଜନ୍ମ, ତିରୋଧାନ, ପରିବାର ଓ କାର୍ଯ୍ୟକାଳ ସମ୍ପର୍କରେ ବହୁ ଅଲୌକିକ କିଂବଦନ୍ତୀ ଶୁଣିବାକୁ ମିଳିଥାଏ । ଚତୁର୍ଦ୍ଦଶ ଶତାବ୍ଦୀର ଶେଷ ଭାଗରେ ଉତ୍ତରପ୍ରଦେଶର ଗୋରଖପୁର ନିକଟବର୍ତ୍ତୀ ମଗହର ନାମକ ଏକ ଗ୍ରାମରେ ଏକ ଧର୍ମପ୍ରାଣ ମୁସଲମାନ ତନ୍ତୁବାୟ ପରିବାରରେ ସେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କ ପିତାଙ୍କ ନାମ ନୀରୁ ଓ ମାତାଙ୍କ ନାମ ନିମା; ମାତ୍ର କବୀରଙ୍କ ହିନ୍ଦୁ ଶିଷ୍ୟମାନେ ଏହା ସ୍ୱୀକାର କରନ୍ତି ନାହିଁ । ସେମାନଙ୍କ ମତରେ କବୀର ହେଉଛନ୍ତି ଜନୈକ ବ୍ରାହ୍ମଣଙ୍କ ବିଧବା କନ୍ୟାର ପୁତ୍ର । ନୀରୁ ଓ ନିମାଙ୍କ ପରିବାରରେ ସେ ପ୍ରତିପାଳିତ ହୋଇଥିଲେ । ପଣ୍ଡିତମାନଙ୍କ ମତରେ ଖ୍ରୀ: ୧୩୯୮ରେ ତାଙ୍କର ଜନ୍ମ ହୋଇଥିଲା । କାଜିଙ୍କଦ୍ୱାରା କୋରାନ୍ ଅନୁଯାୟୀ ମୁସଲମାନ ରୀତିରେ ତାଙ୍କର ନାମକରଣ ହୋଇଥିଲା 'କବୀର'—ଏହାର ଅର୍ଥ ମହାନ୍ । ମୁସଲମାନ ହେଲେହେଁ କବୀରଙ୍କ ପିତା ସମ୍ଭବତଃ 'ଦଶନାମୀ' ଅଥବା ନାଥ ସମ୍ପ୍ରଦାୟର ଦୀକ୍ଷା ଗ୍ରହଣ କରିଥିଲେ ।

କବୀରଙ୍କ ଶୈଶବ ଓ କୈଶୋର ଜୀବନ ସମ୍ପର୍କରେ ଜନଶ୍ରୁତିରୁ ବିଶେଷ ଉପାଦାନ ମିଳେନାହିଁ । ଆର୍ଥିକ ଅସ୍ୱଚ୍ଛଳ ଅବସ୍ଥା ଦୃଷ୍ଟିରୁ

ଏହି ସମୟରେ ସେ କୌଳିକ ବୃତ୍ତିରେ ନିୟୋଜିତ ହୋଇଥିବା ସମ୍ଭବପର । ସାଂପ୍ରଦାୟିକ ପୂଜା ଓ ଉପାସନା ପ୍ରତି ଏହି ବୟସରୁ ହିଁ ତାଙ୍କ ମନରେ ବିରାଗ ଜନ୍ମିଥିଲା ଓ ସେ ବିଶିଷ୍ଟ ବୈଷ୍ଣବ ସାଧକ ରାମାନନ୍ଦଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ଏହା ଫଳରେ ମୁସଲମାନ ସମ୍ପ୍ରଦାୟ ତାଙ୍କ ପ୍ରତି କ୍ଷୁବ୍ଧ ହେବା ସ୍ୱାଭାବିକ । ମାତ୍ର ଆପଣାର ବ୍ୟକ୍ତିତ୍ୱ, ସାଧନା ଓ ଚରିତ୍ରବଳ ଯୋଗୁ କ୍ରମେ ହିନ୍ଦୁ ମୁସଲମାନ ଉଭୟ ସମ୍ପ୍ରଦାୟର ବହୁ ବ୍ୟକ୍ତି ତାଙ୍କ ପ୍ରତି ଆକୃଷ୍ଟ ହୋଇଥିଲେ ।

ସାଧୁ ସଙ୍ଗ ଉଦ୍ଦେଶ୍ୟରେ କବୀର ବହୁ ସ୍ଥାନ ଭ୍ରମଣ କରିଥିବା ଜଣାଯାଏ । ତାହାଙ୍କ ଜୀବନର ଅଧିକାଂଶ ଭାଗ କାଶୀରେ ଅତିବାହିତ ହୋଇଥିଲା । ତାହାଙ୍କ ପାରିବାରିକ ଜୀବନ ସମ୍ପର୍କରେ ମତଭେଦ ଥିଲେହେଁ ସେ ଗୃହୀ ଥିଲେ ଓ ତାଙ୍କର ସ୍ତ୍ରୀ ସନ୍ତାନସନ୍ତତି ଥିବା ଜଣାଯାଇଅଛି । ତାହାଙ୍କ ପତ୍ନୀଙ୍କ ନାମ ଲୁଇ ଓ ତୁଇ ପୁତ୍ର, କନ୍ୟାଙ୍କ ନାମ କମାଲ ଓ କମାଲୀ । ମାତ୍ର କବୀରଙ୍କ ହିନ୍ଦୁ ଶିଷ୍ୟମାନେ ଏ ବିଷୟ ସ୍ୱୀକାର କରନ୍ତି ନାହିଁ ।

ସଂସାରୀ ହେଲେହେଁ ସେ ଥିଲେ ଉଦାସୀ ଓ ଭାବେଭୋଳା ପ୍ରକୃତିର । ଭଗବତ ଭାବନାରେ ହିଁ ସେ ସର୍ବଦା ବିଭୋର ହୋଇ ରହୁଥିଲେ । ଅଧିକ ଧନ ଆହରଣ ପ୍ରତି ତାଙ୍କର କୌଣସି ସ୍ପୃହା ନଥିଲା । ଜୀବନ ଧାରଣ ପାଇଁ ଯେତିକ ଆବଶ୍ୟକ ସେଥିରେ ହିଁ ସେ ଥିଲେ ସନ୍ତୁଷ୍ଟ । ଆପଣାର ଓ ପରିବାରର ସମସ୍ତ ଭାର ସେ ଭଗବାନଙ୍କ ଉପରେ ଛାଡ଼ି ଦେଇଥିଲେ । ଏଭଳି ଅବସ୍ଥାରେ ତାହାଙ୍କ ପରିବାରର ଲୋକେ ଦୁଃଖ ଓ ଅଭାବରେ କାଳଯାପନ କରୁଥିବା ସ୍ୱାଭାବିକ । ହିନ୍ଦୁ ଗୁରୁଙ୍କ ଶିଷ୍ୟତ୍ୱ ଗ୍ରହଣ ମଧ୍ୟ ତାହାଙ୍କ ପାରିବାରିକ ଅଶାନ୍ତିର ଅନ୍ୟତମ କାରଣ ଥିଲା । କବୀରଙ୍କ ପାରିବାରିକ ଜୀବନ ଶାନ୍ତିପୂର୍ଣ୍ଣ ନଥିଲେ ହେଁ ସେ ଏଥିରେ ବିଚଳିତ ନ ହୋଇ ଭଗବତ ଭାବନାରୁ ହିଁ ଶାନ୍ତି ଖୋଜି ପାଇଥିଲେ ।

ଆପଣାର ନିର୍ଭୀକତା ଏବଂ ନୂତନ ଧର୍ମବିଶ୍ୱାସ ଯୋଗୁଁ ସେ ମଧ୍ୟ କମ୍ ନିର୍ଯ୍ୟାତିତ ହୋଇନାହାନ୍ତି । ସମାଜର ନିମ୍ନଶ୍ରେଣୀରେ ଜନ୍ମଗ୍ରହଣ

କରି ଓ ସେମାନଙ୍କ ଗହଣରେ ଜାଲାତ୍ପାତ କରି ଯେ ପତିତ ନିଗୃହୀତ ଜନସାଧାରଣଙ୍କ ଦୁଃଖ-ଦୁର୍ଦ୍ଦଶା, ଭ୍ରାନ୍ତି ଓ କୁସଂସ୍କାରକୁ ମର୍ମେ ମର୍ମେ ଉପଲବ୍ଧି କରିଥିଲେ । ହିନ୍ଦୁ ଓ ମୁସଲମାନ ଉଭୟ ସମ୍ପ୍ରଦାୟର ଧର୍ମାନ୍ଧତା ଓ କୁସଂସ୍କାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଥିବାରୁ ତାହାଙ୍କ ବିରୁଦ୍ଧରେ ରାଜାଙ୍କ ନିକଟରେ ଅଭିଯୋଗ ହୋଇଥିଲା । ସେତେବେଳେ ଦିଲ୍ଲୀର ସମ୍ରାଟ ଥାନ୍ତି ସିକନ୍ଦର ଲୋଦୀ । ସେ କବୀରଙ୍କୁ ଦିଲ୍ଲୀକୁ ଡକାଇ ଆଣି ତାଙ୍କୁ ନାନାଭାବରେ ନିଗୃହୀତ ତଥା ଦଣ୍ଡିତ କରାଇଥିଲେ । ଏ ସମ୍ପର୍କରେ ମଧ୍ୟ ବହୁ କିଂବଦନ୍ତୀ ଶୁଣିବାକୁ ମିଳେ । କଥିତ ଅଛି ସିକନ୍ଦର ଲୋଦୀ ତାଙ୍କୁ ପାଣିରେ ବୁଡ଼ାଇ, ନିଆଁରେ ପକାଇ, ହାତୀ ପାଦତଳେ ପକାଇ ମଧ୍ୟ ମାରିପାରିଲେ ନାହିଁ । କବୀରଙ୍କର ଏପରି ଅଲୌକିକ ଶକ୍ତି ଦେଖି ସେ ଅବଶେଷରେ ତାଙ୍କର ଶରଣାପନ୍ନ ହୋଇଥିଲେ । ଏଥିରୁ ଏହା ହିଁ ଜଣାଯାଏ ଯେ କବୀର ଥିଲେ ତାହାଙ୍କ ଧର୍ମ ବିଶ୍ୱାସରେ ଅଟଳ, ନିର୍ଭୀକ ଓ ଅବିଚଳିତ । ଯାହାହେଉ କ୍ରମେ ହିନ୍ଦୁ ମୁସଲମାନ ଉଭୟ ସମ୍ପ୍ରଦାୟର ବହୁ ବ୍ୟକ୍ତି ତାଙ୍କର ଶିଷ୍ୟତ୍ୱ ସ୍ୱୀକାର କରିଥିଲେ । ସମାଜର ନିମ୍ନଶ୍ରେଣୀ ବ୍ୟକ୍ତିମାନଙ୍କ ବ୍ୟତୀତ ବହୁ ରାଜା ଜମିଦାର ଓ ଧନିକ ବ୍ୟକ୍ତି ମଧ୍ୟ ତାହାଙ୍କ ଶିଷ୍ୟ ହୋଇଥିଲେ । ତାହାଙ୍କ ପ୍ରଧାନ ଶିଷ୍ୟଭାବେ ରାଜା ବୀରସିଂହ ଓ ଧର୍ମଦାସଙ୍କ ନାମରେ ବହୁ କିଂବଦନ୍ତୀ ମଧ୍ୟ ପ୍ରଚଳିତ ।

କବୀର ଥିଲେ ଦୀର୍ଘଜୀବୀ । ସେ ପ୍ରାୟ ଏକ ଶହ ବର୍ଷ ବଞ୍ଚିଥିଲେ । ଆଲୋଚକମାନଙ୍କ ମତରେ ଖ୍ରୀ: ୧୫୧୮ ଅଥବା ଖ୍ରୀ: ୧୪୯୮ରେ ତାଙ୍କର ଦେହାନ୍ତ ହୋଇଥିଲା । ଏ ସମ୍ପର୍କରେ ଯେଉଁ କିଂବଦନ୍ତୀ ପ୍ରଚଳିତ ତାହା ବେଶ୍ କୌତୂହଳପ୍ରଦ ।

କବୀର ଦେହତ୍ୟାଗ କରିବା ଅଭିପ୍ରାୟରେ କାଶୀ ପରିତ୍ୟାଗ କରି ସ୍ୱଜନ୍ମସ୍ଥାନ ମଗହର ଯିବାକୁ ସଂକଳ୍ପ କରିଛନ୍ତି—ଏହା ପ୍ରଚାରିତ ହୋଇଗଲା । ବହୁ ଭକ୍ତ ଏହା ଶୁଣି ଏଥିରୁ ତାଙ୍କୁ ନିବର୍ତ୍ତାଇବାକୁ ଚେଷ୍ଟା କଲେ; ମାତ୍ର କବୀର କହିଲେ—ଯାହାର ହୃଦୟ ଭକ୍ତିଭାବ ପୂର୍ଣ୍ଣ ଓ ନିର୍ମଳ ସେ ଯେଉଁ ସ୍ଥାନରେ ଦେହତ୍ୟାଗ କଲେ ମଧ୍ୟ ମୁକ୍ତି ପାଇବ । କାଶୀରେ ଦେହତ୍ୟାଗ କଲେ ଯେ ମୁକ୍ତି ମିଳିବ ଏ ଭାବନା

ଭୁଲ । କବୀର ଆପଣାର ଜନ୍ମସ୍ଥାନ ଉଦ୍ଦେଶ୍ୟରେ ଯାତ୍ରାରମ୍ଭ କରିବାରୁ ହଜାର ହଜାର ଶିଷ୍ୟ ତାହାଙ୍କ ଶେଷ ଦର୍ଶନ ଓ ଶେଷ ସାନ୍ନିଧ୍ୟ କାମନାରେ ତାହାଙ୍କ ପଛେ ପଛେ ଗ୍ଭଲିଲେ । ମଗହର ନିକଟରେ ପ୍ରବାହିତ ଅମୀ ନଦୀ ତୀରରେ ଥିବା ଏକ ପରିତ୍ୟକ୍ତ ଶୂନ୍ୟ କୁଟୀର ନିକଟରେ କବୀର ପହଞ୍ଚି ସେହି କୁଟୀରରେ ଆଶ୍ରୟ ନେଲେ । ଶିଷ୍ୟ-ମାନଙ୍କୁ କହିଲେ—"ମୋ ପାଇଁ କିଛି ପଦ୍ମଫୁଲ ଓ ଦୁଇଟି ଧଳା ଗ୍ଭଦର ଆଣ ।" ଶିଷ୍ୟମାନେ ଅନତିବିଳମ୍ବେ ବହୁ ପଦ୍ମଫୁଲ ଓ ଧଳା ଗ୍ଭଦର ଦୁଇଟି ଆଣି ତାଙ୍କୁ ଦେଲେ । କବୀର କହିଲେ—ଏଥର ତୁମେମାନେ କୁଡ଼ିଆ କବାଟଟି ବନ୍ଦ କରି ଗ୍ଭଲିଯାଅ ମୁଁ ବର୍ତ୍ତମାନ ଟିକିଏ ଶୋଇବି ।"

ହିନ୍ଦୁ ମୁସଲମାନ ଦୁଇ ସମ୍ପ୍ରଦାୟର ନେତା ବୁଝିପାରିଲେ, ଗୁରୁଜୀ ବୋଧହୁଏ ଅଳ୍ପ ସମୟ ମଧ୍ୟରେ ଶେଷ ନିଦ୍ରାରେ ଶୟନ କରି ସମାଧିସ୍ଥ ହେବେ । ହିନ୍ଦୁ ଶିଷ୍ୟମାନଙ୍କ ନେତା ବୀରସିଂହ ଗୁରୁଙ୍କୁ ପ୍ରଣାମ କରି ଜଣାଇଲେ—"ମୋତେ ଅନୁମତି ଦିଅନ୍ତୁ ଆପଣଙ୍କ ଦେହାବସାନ ପରେ ଆପଣଙ୍କ ପବିତ୍ର ଦେହକୁ ମୁଁ ନେଇ ହିନ୍ଦୁ ପ୍ରଥାରେ ସତ୍କାର କରିବି ।"

ମୁସଲମାନ ଶିଷ୍ୟମାନଙ୍କ ପକ୍ଷରୁ ବିଜୁଲୀ ଖାଁ ମଧ୍ୟ ସେହିପରି କହିଲେ—"ମୋତେ ଅନୁମତି ଦିଅନ୍ତୁ, ମୁଁ ଆପଣଙ୍କ ପବିତ୍ର ଦେହକୁ ମୁସଲମାନ ରୀତିରେ କବର ଦେବି ।"

କବୀର ଦେଖିଲେ ତାଙ୍କର ସମାଧି ପରେ ତାହାଙ୍କ ଦେହକୁ ସତ୍କାର କରିବା ଲାଗି ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ନିଶ୍ଚୟ ସଂଘର୍ଷର ସୂତ୍ରପାତ ହେବ, ଏଣୁ ସେ ସମସ୍ତଙ୍କୁ ଡାକିଦେବା ସଙ୍ଗେ ସଙ୍ଗେ ଜଣାଇ ଦେଲେ "ମୋର ନଶ୍ୱର ଦେହ ପାଇଁ ତୁମେମାନେ ବିବାଦ କରିବା ଉଚିତ ନୁହେଁ । ଏଥିପାଇଁ ତୁମ ଭିତରେ ବିବାଦ ବା ରକ୍ତପାତ ନ ହେଉ । ଏହାହିଁ ମୋର ଆଦେଶ, ଏହା ପାଳିତ ହେଲେ ହିଁ ତୁମର କଲ୍ୟାଣ ହେବ ।"

ଉଭୟ ସମ୍ପ୍ରଦାୟର ଲୋକେ ଏହାକୁ ଯଥାଯୋଗ୍ୟ ମାନିନେଲେ । ଶିଷ୍ୟମାନେ କୁଡ଼ିଆର ଦୁଆରଟିକୁ ଆଉଜେଇ ଦେଇ ଦୂରକୁ ଅପସରି

ଗଲେ । ଗୁରୁ ଦେହତ୍ୟାଗ କରୁଛନ୍ତି, ଏଇ ଦୁଃଖରେ ଶିଷ୍ୟ ଭକ୍ତମାନେ କ୍ରନ୍ଦନ କରୁଥାନ୍ତି, କବୀରଙ୍କ ଜୟଧ୍ୱନିରେ ଚତୁର୍ଦ୍ଦିଗ କମ୍ପିତ ହେଉଥାଏ । ଏହିପରି ବହୁ ସମୟ ଅତିବାହିତ ହେବା ପରେ କୁଟୀରର ଦ୍ୱାର ଉନ୍ମୁକ୍ତ କରାଗଲା । ଦେଖାଗଲା, କୁଟୀର ମଧ୍ୟରେ କେବଳ ଦୁଇଟି ଶୁଦ୍ଧର ବସ୍ତ୍ର ହୋଇଛି ଓ ଶୁଦ୍ଧର ଉପରେ କିଛି ପଦ୍ମ ଫୁଲ ରହିଛି । ଗୁରୁଙ୍କ ଦେହର କୌଣସି ଚିହ୍ନ ବର୍ତ୍ତି ନାହିଁ ।

ରାଜା ବୀର ସିଂହ ପଦ୍ମଫୁଲ ସହ ସେଇ ଶୁଦ୍ଧର ମଧ୍ୟରୁ ଗୋଟିକୁ କାଶୀକୁ ନେଇଯାଇ ସେଠାରେ ତାହାକୁ ବିଧିପୂର୍ବକ ଦାହ କଲେ । ତାହାର ପବିତ୍ର ଭସ୍ମକୁ ସେ ଯେଉଁଠି ପ୍ରୋଥିତ କରିଥିଲେ ତାହା ଏବେ 'କବୀର ଚୌରା' ନାମରେ ପରିଚିତ । ବିଜଲି ଖାଁ ଅନ୍ୟ ଶୁଦ୍ଧରଟିକୁ ମଗହରରେ କବର ଦେଇଥିଲେ । ଏଠାରେ ହିନ୍ଦୁ ମୁସଲମାନ ଉଭୟ ଗୋଷ୍ଠୀଙ୍କ ମିଳିତ ଉଦ୍ୟମରେ ଏକ ମଠ ପ୍ରତିଷ୍ଠିତ ହୋଇଥିଲା । ଏହା ମଧ୍ୟ ଏବେ ଏକ ତୀର୍ଥ ସ୍ଥାନ ଭାବେ ପ୍ରସିଦ୍ଧ । ଏହିପରି ଭାବେ କବୀର ହିନ୍ଦୁ ମୁସଲମାନ ଦୁଇ ଧର୍ମଗୋଷ୍ଠୀ ମଧ୍ୟରେ ବିବାଦର ଅବସାନ କରାଇ ଏକତା ପ୍ରତିଷ୍ଠା କରିପାରିଥିଲେ ।

## ବ୍ୟକ୍ତିତ୍ୱ ଓ ଧର୍ମମତ

କବୀର ଥିଲେ ଭାବୁକ ଓ ବିଚାରବନ୍ତ । ତାହାଙ୍କ ଉକ୍ତିରେ ଭାବ ପ୍ରବଣତାର ସ୍ପର୍ଶ ଅନୁଭୂତ ହୁଏ ନାହିଁ । ପରନ୍ତୁ ସ୍ଥିର ବୁଦ୍ଧି ଓ ବିଚାର ପ୍ରବଣତା ହିଁ ତହିଁରେ ପ୍ରତିଫଳିତ । ଯାହା ସେ ସତ୍ୟ ବୋଲି ଉପଲବ୍ଧି କରୁଥିଲେ ତାହାକୁ ହିଁ ନିର୍ଭୀକ ଭାବେ ବ୍ୟକ୍ତ କରିଯାଇଅଛନ୍ତି । ଏଥିରୁ ତାହାଙ୍କ ଚରିତ୍ରର ଦୃଢ଼ତା ସହଜରେ ଅନୁମେୟ । ସୁଗଭୀର ଈଶ୍ୱର-ଭକ୍ତି ଓ ଆତ୍ମବିଶ୍ୱାସ ହିଁ ତାଙ୍କୁ କରିଥିଲା ବଳୀୟାନ । ବୈଷ୍ଣବ ଭକ୍ତ-ମାନଙ୍କ ପରି ସେ ନିଜକୁ କେଉଁଠି ପତିତ ବା ନୀଚ ବୋଲି ଅଭିହିତ କରିନାହାନ୍ତି । ତାଙ୍କ ପକ୍ଷେ ଭଗବତ୍‌ ସାଧନା ଥିଲା ଆପଣାର ପ୍ରବୃତ୍ତି ଓ ବିଷୟଲିପ୍ସା ବିରୁଦ୍ଧରେ ଏକ ସଂଗ୍ରାମ । ନିର୍ଭୀକ ଥିବା ଯୋଗୁ ହିଁ ବ୍ୟକ୍ତି ବିଶେଷଙ୍କ ଦୋଷ, ଦୁର୍ବଳତା, ଭଣ୍ଡତା, କପଟତାକୁ ସେ ଆଘାତ କରିବାକୁ ପଶ୍ଚାତ୍‌ପଦ ହୋଇନାହାନ୍ତି । ସମକାଳୀନ ଧର୍ମ ଓ ଭଣ୍ଡାମି

ବିରୁଦ୍ଧରେ ସେ ଏକ ପ୍ରକାର ଯୁଦ୍ଧ ଘୋଷଣା କରିଛନ୍ତି । କେବଳ ଆପଣାର ମୁକ୍ତି ନୁହେଁ, ଜନସାଧାରଣଙ୍କ କଲ୍ୟାଣ ବିଧାନ ହିଁ ଥିଲା ତାଙ୍କର ଲକ୍ଷ୍ୟ । ମନୁଷ୍ୟର ଅନ୍ତର୍ନିହିତ ଶକ୍ତି ସମ୍ପର୍କରେ ମଧ୍ୟ ତାଙ୍କର ଥିଲା ଦୃଢ଼ ବିଶ୍ୱାସ । ସେଥିପାଇଁ ଏହି ନିରକ୍ଷର ସାଧକଙ୍କ ବାଣୀ ମଧ୍ୟଯୁଗର ତଥା ପରବର୍ତ୍ତୀ କାଳର ଅସଂଖ୍ୟ ଜନ ମାନସରେ ଯେଉଁ ପ୍ରଭାବ ବିସ୍ତାର କରିଥିଲା, ତାହାର ଦୃଷ୍ଟାନ୍ତର ନାହିଁ । ଡଃ ହଜାରୀ ପ୍ରସାଦ ଦ୍ୱିବେଦୀ କବୀରଙ୍କୁ ସେଥିପାଇଁ ଯଥାର୍ଥତଃ ଏକ 'ଯୁଗାବତାର' ଭାବେ ଅଭିହିତ କରି ଯାଇଅଛନ୍ତି । (କବୀର ପୃ-୧୬୯)

ମଧ୍ୟଯୁଗରେ ଭାରତୀୟ ସାମାଜିକ ପରିସ୍ଥିତିରୁ କବୀରଙ୍କ ଆବିର୍ଭାବ ଏକାନ୍ତ ସ୍ୱାଭାବିକ ମନେହୁଏ । ସେତେବେଳେ ବହୁ ଜାତିରେ ବିଭକ୍ତ ହିନ୍ଦୁ ସମାଜରେ ନିମ୍ନ ଜାତିର ଲୋକଙ୍କୁ ଧର୍ମାଚରଣର ସୁଯୋଗ ମିଳୁ ନ ଥିଲା । ସମାଜରେ ଅନେକେ ନୀଚ, ପତିତ ଓ ଅସ୍ପୃଶ୍ୟ ବିବେଚିତ ହେଉଥିଲେ । ସେମାନଙ୍କୁ ଧର୍ମାଚରଣର ସୁଯୋଗ ଦେବାଲାଗି ଓ ସମାଜର କୁସଂସ୍କାର ଦୂର କରିବା ଲାଗି ଯେ କବୀରଙ୍କ ଭଳି ମହାପୁରୁଷ ଜନ୍ମଗ୍ରହଣ କରିଥିଲେ ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ । ଏତଦ୍‌ବ୍ୟତୀତ ସେ ସମୟରେ ଅତ୍ୟାଚାର, ଅଜ୍ଞତା ଅଥବା ପ୍ରଲୋଭନର ବଶବର୍ତ୍ତୀ ହୋଇ କେହି କେହି ଧର୍ମ ପରିବର୍ତ୍ତନ ମଧ୍ୟ କରୁଥିଲେ । ଏହି ଜନ ସାଧାରଣଙ୍କୁ ସ୍ୱୀୟ ଧର୍ମମତ ଉପରେ ଦୃଢ଼ଭାବରେ ପ୍ରତିଷ୍ଠିତ ହେବାଲାଗି ପ୍ରଚୁର ଶକ୍ତି କେବଳ କବୀରଙ୍କର ଧର୍ମ ପ୍ରଚାର ହିଁ ଦେଇ ପାରିଥିଲା । ମୁସଲମାନୀ ସଂସ୍କୃତିରେ ପ୍ରତିପାଳିତ ହୋଇଥିଲେ ହେଁ ସେ ଯେଉଁ ସାର୍ବଜନୀନ ଭାବ ପ୍ରଚାର କରିଥିଲେ, ତହିଁରୁ ହିନ୍ଦୁଧର୍ମ ମଧ୍ୟ ଯଥେଷ୍ଟ ପ୍ରେରଣା ଓ ଦୃଢ଼ତା ଲାଭ କରିଥିଲା । କବୀରଙ୍କ "ସନ୍ଥମତ" ଜାତିବନ୍ଧନ-ନିପୀଡ଼ିତ ହିନ୍ଦୁମାନଙ୍କୁ ଧାର୍ମିକ ଚେତନାରେ ଉଦ୍‌ବୁଦ୍ଧ କରାଇ ପାରିଥିଲା ।

ଜାତିଗତ ନିକୃଷ୍ଟତା, ଭଗବତ୍ ଉପାସନା ଓ ଭକ୍ତି କ୍ଷେତ୍ରରେ ବାଧକ ନୁହେଁ । ଏହା ତାଙ୍କ ପୂର୍ବରୁ ରାମାନନ୍ଦ ପ୍ରଚାର କରିଥିଲେ ହେଁ କବୀର ହିଁ ଜୀବନାଚରଣ ଓ ବ୍ୟାବହାରିକ କ୍ଷେତ୍ରରେ ଏହା ଦୃଢ଼ ଭାବରେ ପ୍ରୟୋଗ କରି ପାରିଥିଲେ । ଏକ ସଂପ୍ରଦାୟ ଗଠନ କରି ସେ

"ଏକେଶ୍ୱର ବାଦ" ଓ ଧର୍ମତ୍ତ୍ୱ ସିଦ୍ଧାନ୍ତକୁ ପ୍ରତିଷ୍ଠିତ କରିପାରିଥିଲେ । ତାହାଙ୍କ ଭାଷାରେ, "ଈଶ୍ୱରଙ୍କ ଦୃଷ୍ଟିରେ କୀଟ ଓ କୁଞ୍ଜର (ହାତୀ) ସମାନ; ବ୍ରାହ୍ମଣ ଓ ଚଣ୍ଡାଳ ମଧ୍ୟରେ କୌଣସି ଭେଦ ନାହିଁ । ଦୁହିଁଙ୍କ ମଧ୍ୟରେ ଏକମାତ୍ର ବ୍ରହ୍ମଙ୍କର ଜ୍ୟୋତି ବିଦ୍ୟମାନ । ଯେପରି କାଳଗାଈ ଓ ଧଳା ଗାଈର ଦୁଧ କେବଳ ଧଳା ହିଁ ହୋଇଥାଏ—ଏହା ଠିକ୍ ସେହିପରି ।"

ସେତେବେଳେ ହିନ୍ଦୁମାନଙ୍କର ସମସ୍ତ ଧର୍ମଶାସ୍ତ୍ର ସଂସ୍କୃତ ଭାଷାରେ ଲିଖିତ ହୋଇଥିଲା । ଜନସାଧାରଣଙ୍କ କଥିତ ଭାଷାର କୌଣସି ସ୍ୱୀକୃତ ହୋଇ ନ ଥିଲା । ଧର୍ମଗ୍ରନ୍ଥ ଅଧ୍ୟୟନ କେବଳ ମୁଷ୍ଟିମେୟ ସମ୍ପ୍ରଦାୟ ବିଶେଷଙ୍କ ମଧ୍ୟରେ ସୀମିତ ଥିଲା । ଏଣୁ ଜନସାଧାରଣ ଧର୍ମଶାସ୍ତ୍ରୀୟ ଜ୍ଞାନଲାଭରୁ ବଞ୍ଚିତ ହେଉଥିଲେ । କବୀର ଜନସାଧାରଙ୍କଭାଷାରେ ଆଚାରୋ ମାର୍ମିକ ସିଦ୍ଧାନ୍ତକୁ ସ୍ପଷ୍ଟଭାବରେ ଜନସାଧାରଣଙ୍କ ନିକଟରେ ଉପସ୍ଥାପିତ କରି ଲୋକଭାଷାର ଗୌରବ ବୃଦ୍ଧି କରିପାରିଥିଲେ । କବୀର ହିଁ ସର୍ବ-ପ୍ରଥମେ ଲୋକ ପ୍ରଚଳିତ ଭାଷାରେ ଜୀବନର ଜଟିଳ ସମସ୍ୟାର ସମାଧାନ-ମୂଳକ ଧର୍ମ ଓ ଦାର୍ଶନିକ ସିଦ୍ଧାନ୍ତକୁ ସରଳ ସୁବୋଧ୍ୟ ଭାଷାରେ ପ୍ରକାଶ କରିଥିଲେ ।

ଗର୍ଭାବସ୍ଥାରେ କୁଳ ବା ଜାତିର ଚିହ୍ନ ନଥାଏ । କାରଣ ଏକ ବ୍ରହ୍ମ ବିନ୍ଦୁରୁ ସମସ୍ତଙ୍କ ଉତ୍ପତ୍ତି ହୋଇଥାଏ । ହେ ପଣ୍ଡିତ ! କୁହ ତ ତୁମେ କେବେ ବ୍ରାହ୍ମଣ ହେଲ ? କବୀର କହୁଛନ୍ତି ଯେ ବ୍ରହ୍ମର ବିଚାର କରିପାରନ୍ତି ସେଇ ହିଁ ମୋ ମତରେ ବ୍ରାହ୍ମଣ ।

'ଗରଭ ବାସ ମହ କୁଲ୍ ନହିଁ ଜାତି
ବ୍ରହମ ବିନ୍ଦୁତେ ସଭୁ ଉତପାତି ।
କହୁରେ ପଣ୍ଡିତ ବାମନ କବ କେ ହୋଏ
ବାମନ କହି କହି ଜନମୁ ମତ ଖୋଏ ।

× × ×

କହ୍ କବୀର ଯେ ବ୍ରହମୁ ବିଚୃରୈ
ସେ ବ୍ରହ୍ମମଣ କହିଅ ତୁ ହୈ ହମାରୈ ।'

କବୀର ଏକ ନୂତନ ଧର୍ମ ସମ୍ପ୍ରଦାୟ ଗଠନ କରିବା ସଙ୍ଗେ ସଙ୍ଗେ ସାମ୍ୟ, ମୈତ୍ରୀ ଓ ବ୍ୟକ୍ତି ସ୍ୱାଧୀନତାର ମହତ୍ତ୍ୱ ଘୋଷଣା କରିଯାଇଅଛନ୍ତି । ଭଗବାନ ସମସ୍ତଙ୍କୁ ସୃଷ୍ଟି କରିଅଛନ୍ତି । ଏଣୁ ସମସ୍ତେ ସମାନ—ଏହା ହିଁ ଥିଲା ତାହାଙ୍କ ମତ । ତାହାଙ୍କ ଭାଷାରେ—

'ଉଁଚ ନୀଚ ସମ ସମାୟା—ତାଥୌ ଜନ କବୀର କସ୍‌ତଭିଆ' । ଜାତି-ଭେଦ, ବର୍ଣ୍ଣ-ବ୍ୟବସ୍ଥା, ସ୍ପୃଶ୍ୟା-ସ୍ପୃଶ୍ୟ ଭେଦକୁ ସେ ସ୍ୱୀକାର କରୁ ନଥିଲେ । ସେ ଯେପରି ହିନ୍ଦୁ କର୍ମକାଣ୍ଡର ଅସାରତା ବ୍ରତ, ଶ୍ରାଦ୍ଧ, ତୀର୍ଥଯାତ୍ରା ପ୍ରଭୃତିର ନିରର୍ଥକତା ଦର୍ଶାଇ ଅଛନ୍ତି, ସେହିପରି ମୁସଲମାନ ଧର୍ମାଚରଣର ରୋଜା, ନମାଜ୍, ହଜ୍ ପ୍ରଭୃତିର ନିରର୍ଥକତା ଦର୍ଶାଇ ଅଛନ୍ତି । ସେ ଏକାଧାରରେ ବ୍ରାହ୍ମଣ, ପଣ୍ଡିତ ତଥା ମୁସଲମାନ ମୌଲବୀ ମାନଙ୍କୁ ଉପହାସ କରିଯାଇଅଛନ୍ତି ।

"ସେଖ ସବୁରୀ ବାହିରା କ୍ୟା ହଜ୍ କାବେଁ ଜାଇ
ଜାକାହିଲ୍ ସାବତ ନହୀ ତାକୋ କାହାଁ ଖୁଦାଇ ।"

କବୀର ଥିଲେ ଶୁଦ୍ଧଭକ୍ତି ଉପାସକ । ନିଃସ୍ୱାର୍ଥପରତା, ସରଳ ଆଚରଣ ଓ ସତ୍ୟର ସମର୍ଥକ । ତାହାଙ୍କ ରଚନାବଳୀ ମୁଖ୍ୟତଃ ଜ୍ଞାନ ଉପଦେଶମୂଳକ । କବୀରଙ୍କୁ ହିନ୍ଦୀ ସାହିତ୍ୟର ନିର୍ଗୁଣ ଭକ୍ତି ଓ ଜ୍ଞାନାଶ୍ରୟୀ ଶାଖାର ସର୍ବଶ୍ରେଷ୍ଠ କବି ଭାବରେ ଗଣନା କରାଯାଏ । ବେଦାନ୍ତ ସାଧନାର କଠିନତା, ପ୍ରେମ, ମହିମା, ସଦ୍‌ପୁରୁଷ ନିରୂପଣ, ମାୟା ବର୍ଣ୍ଣନା, ଗୁରୁମହିମା, ହୃଦୟଶୁଦ୍ଧି, ସତ୍ୟଭାଷଣ, ନାମମହିମା, ସତ୍‌ସଙ୍ଗ, କର୍ମକାଣ୍ଡ ଓ ବିଧର୍ମୀର ନିନ୍ଦା ପ୍ରଭୃତି ବିଷୟରେ ସେ ବହୁ ପଦ ବା ସଙ୍ଗୀତ ଓ 'ସାଖୀ' ବା 'ସଲୋକ' ରଚନା କରିଯାଇଛନ୍ତି । ଜଗତରେ ଭଗବାନଙ୍କ ନାମ ସ୍ମରଣ ଶ୍ରେଷ୍ଠ—'କବୀର ସୁମରିନ ସାର ହୈ, ଔର ସକଲ ଜଞ୍ଜାଲ' ଏହାହିଁ ତାଙ୍କର ଉକ୍ତି । ଭାବ ଭକ୍ତିରେ ହରିଙ୍କୁ ଆରାଧନା ନକଲେ ଜନ୍ମ ମରଣ, କାମନା ବାସନାରୁ ମୁକ୍ତି ମିଳେ ନାହିଁ ।

'ଭାବଭଗତିସୁ ହରିନ ଅରାଧା
ଜନମ ମରନକୀ ମିଟିନ ସାଧା ।'

ଜପ, ତପ, ସନ୍ନ୍ୟାସ, ତୀର୍ଥ ଭ୍ରମଣଠାରୁ ନାମ କୀର୍ତ୍ତନ ଶ୍ରେଷ୍ଠ । କବୀଙ୍କ ଭାଷାରେ—

'ଯୋଗୀ ଜଙ୍ଗ ତପୀ ସନଆସୀ ବହୁ ତୀରଥ ଭ୍ରମନା
ଲକ୍ସି ତ ମୁନ୍ଦ୍ରିତ ମୋନ ଜଟାଧାର ଅନ୍ତତଉ ମରନା
ତାତେ ସେଵଅସେ ରାମନା
ରସନା ରାମ ନାମ ହିତୁ ଜା କୈ କହାକରୈ ଜମନା ।'

ତାହାଙ୍କର ରଚନାଗୁଡ଼ିକରେ ମୌଳିକତା ପରିଲକ୍ଷିତ ହୁଏ । ଚମତ୍କାର ରୂପକ ଅନ୍ୟୋକ୍ତି ଓ ବ୍ୟଞ୍ଜନା ସଂଯୋଗରେ ତାହା ଅତ୍ୟନ୍ତ ସରସ, କବିତ୍ୱ ପୂର୍ଣ୍ଣ ଓ ପ୍ରଭାବଶାଳୀ । କବୀରଙ୍କ ଭାଷାକୁ "ସଧୁକ୍କଡ଼ି" କୁହାଯାଏ । ଏଥିରେ ରାଜସ୍ଥାନୀ, ପଞ୍ଜାବୀ, ଖଡ଼ିବୋଲି ଓ ବ୍ରଜଭାଷା ଶବ୍ଦାବଳୀର ସମ୍ମିଶ୍ରଣ ପରିଲକ୍ଷିତ ହେଲେ ହେଁ ଏହା ମୁଖ୍ୟତଃ ପୂର୍ବୀ ହିନ୍ଦି । ତାହାଙ୍କ ରଚନା କପରି ରୂପକ ଓ ଉପମା ଅଳଙ୍କାରରେ ସୁଶୋଭିତ, ତାହା ତାହାଙ୍କ କେତୋଟି "ସାଖୀ"ର ଉଦାହରଣରୁ ଅନୁମେୟ !

"କବୀର ସଭତେ ହମ ବୁରେ
ହମ ତଜ ଭଲ ସବ କୋଇ
ଜନ ଐଷା କହି ବୁଝିଆ ମୀତୁ ହମାରା ସୋଇ"

ଅର୍ଥାତ୍ କବୀର କହୁଛନ୍ତି, ମୁଁ ସବୁଠାରୁ ଖରାପ, ମୋ ଛଡ଼ା ଅନ୍ୟ ସମସ୍ତେ ଭଲ । ଏହା ଯେ ବୁଝିଥାଏ ସେ ମୋର ମିତ୍ର ହୋଇ ପାରେ ।

"କବୀର ଜଗୁ କାଜଲ କ କୋଠରୀ
ଅନ୍ଧପରେ ତିସ ମହି
ହଉ ବଲିହାରୀ ତିନହି କଉ
ପୈସି ଜୁ ନୀକସି ଯାଇ ।"

ଅର୍ଥାତ୍ କବୀର କହୁଛନ୍ତି, ଏହି ସଂସାର ଏକ କଳା କୋଠରୀ ଓ ଏଥିରେ ରହୁଥିବା ଲୋକେ ଅନ୍ଧ । ଯେହେତୁ ସେମାନେ ଏଥିରୁ

ବାହାର ପାରୁନାହାଁନ୍ତି । ମୁଁ ତାକୁ ହିଁ ଧନ୍ୟ କହେ, ଯେ ଏଥିରେ ପଶି ଏଥିରୁ ବାହାରିଯାଏ ।

"କବୀର ମାନବ ଜନମ ଦୁର୍ଲଭ ହୈ
ହୋଇ ନ ବାରୌ ବାର
ଯଉବନ ଫଳ ପାକେ ଭୂଇ ଗିରହି
ବହୁରି ନ ଲାଗହି ଡାର ।"

ଏହି ମନୁଷ୍ୟ ଜନ୍ମ ଦୁର୍ଲ୍ଲଭ । ଏହା ବାରମ୍ବାର ମିଳେ ନାହିଁ, ଯେପରି ବନର ବୃକ୍ଷରେ ହୋଇଥିବା ଫଳ ପୃଥିବୀ ଉପରେ ପଡ଼ିଲା ପରେ ପୁଣି ଯାଇ ଡାଳରେ ଲଗେ ନା ସେହିପରି ।

ଈଶ୍ୱରଙ୍କୁ ସେ ରାମ, ଗୋବିନ୍ଦ, ମାଧବ ପ୍ରଭୃତି ବିନ୍ଧୁ ନାମରେ ଯେପରି ସମ୍ବୋଧନ କରିଯାଇ ଅଛନ୍ତି ସେହିପରି ତାହାଙ୍କୁ ସତ୍ ପୁରୁଷ (ବା ନିର୍ଗୁଣ ବ୍ରହ୍ମ), ସଦ୍‌ଗୁରୁ, ପ୍ରଭୃତି ନାମରେ ମଧ୍ୟ ଅଭିହିତ କରିଅଛନ୍ତି ।

ଆମୃଙ୍କାନ, ଭଗବଦ୍‌ଭକ୍ତ ତାହାଙ୍କ ସାଧନା ଓ ପ୍ରଚ୍ଛରର ଆଭିମୁଖ୍ୟ ଥିବାରୁ ସେ ପୁସ୍ତକ ଜ୍ଞାନକୁ ବିଶ୍ୱାସ କରୁ ନ ଥିଲେ । ରାମଭକ୍ତି ବ୍ୟତୀତ ସମସ୍ତ ଜାଗତିକ ବିଷୟ ତାହାଙ୍କ ମତରେ ନିରର୍ଥକ ଥିଲା । ହରି ଭଜନ ହିଁ ମନୁଷ୍ୟ ଜନ୍ମର ସାର୍ଥକତା—ଏହା ହିଁ ଥିଲା ତାଙ୍କର ଦୃଢ଼ ବିଶ୍ୱାସ । ଜନ୍ମାନ୍ତର ବାଦରେ ସେ ବିଶ୍ୱାସ କରୁଥିଲେ; ମାତ୍ର ଅବାସ୍ତବ ଭକ୍ତି ସାଧନାର ପକ୍ଷପାତୀ ନ ଥିଲେ । କ୍ଷୁଧା ପୀଡ଼ିତ ରହି ଭକ୍ତି ସାଧନା ସମ୍ଭବ ନୁହେଁ । ଏଣୁ ଜୀବନ ଧାରଣରେ ସାଧାରଣ କର୍ମ ପ୍ରଭୃତି ବିଷୟରେ ଅବହିତ ହେବାଲାଗି ସେ ଉପଦେଶ ଦେଇ ଯାଇଛନ୍ତି ।

ଭାରତୀୟ ସମାଜରେ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ବିଭୁତ୍ୱ ଭାବକୁ କବୀରଙ୍କ ରଚନା ଓ ପ୍ରଚ୍ଛର ଦୃଢ଼ୀଭୂତ କରିଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ଏହି ସମଦୃଷ୍ଟି ଯୋଗୁ ସେ ସାର୍ବଜନୀନ ଓ ସାର୍ବଭୌମ କବି ଏବଂ ସନ୍ଥ ଗୁରୁର ସମ୍ମାନଭାଜନ ହୋଇ ପାରିଥିଲେ

ଏବଂ ସେ ଦୃଢ଼ଭାବରେ ଘୋଷଣା କରିଥିଲେ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ କୌଣସି ଭେଦ ନାହିଁ—

'ଭୂଲ ଭରମି ପରେ ଜନ କୋଇ
ହିନ୍ଦୁ ତୁରୁକ ଝୁଠ କୁଳ ହୋଇ ।'

କବୀରଙ୍କ ରଚନାବଳୀରେ ଆମ୍ଭେମାନେ ଜୀବନ ସମ୍ବନ୍ଧରେ ଯେଉଁ ସିଦ୍ଧାନ୍ତର ଉଲ୍ଲେଖ ଦେଖୁ ତାହା କୌଣସି ଶାସ୍ତ୍ରୀୟ ଗ୍ରନ୍ଥରୁ ଗୃହୀତ ହୋଇ ନାହିଁ । ସେ ଏହି ସିଦ୍ଧାନ୍ତକୁ ବ୍ୟକ୍ତିଗତ ଜୀବନର ଦୈନନ୍ଦିନ ଅନୁଭୂତ ଓ ପ୍ରାତ୍ୟହିକ ପରିସ୍ଥିତିରୁ ହିଁ ଗ୍ରହଣ କରି ତାହାକୁ ରୂପ ଦେଇଅଛନ୍ତି । ତାହାଙ୍କ ଯୁକ୍ତି ଦର୍ଶନସମ୍ମତ ନ ହେଲେ ହେଁ ତାହା ସହଜଜ୍ଞାନ ସହ ଓତପ୍ରୋତ ଭାବରେ ଜଡ଼ିତ । ଯଥା—

ଉଲଗ୍ନ ଭାବରେ ବୁଲିଗଲେ ଯଦି ଯୋଗ ସାଧିତ ହୋଇଥାନ୍ତା, ତେବେ ବନର ମୃଗମାନେ କେଉଁ ଦିନୁ ମୁକ୍ତି ପାଆନ୍ତେଣି । ମସ୍ତକକୁ ମୁଣ୍ଡନ କରାଇଲେ ଯଦି ସିଦ୍ଧି ଲାଭ ହୋଇଥାନ୍ତା, ତେବେ ମେଣ୍ଢାମାନେ ମୁକ୍ତି ଆଡ଼କୁ କାହିଁକି ଚାଲିଯାଉନାହାଁନ୍ତି ?

"ନଗନ ଫିରତେ ଜୋ ପାଇଅ ଯୋଗୁ
ବନକା ମିରଗ ମୁକତି ସବୁ ହୋଗୁ
ମୁଣ୍ଡ ମୁଣ୍ଡାଏ ଜୋ ସିଧି ପାଇ,
ମୁକତି ଭେଡ଼ ନ ଗଇଆ କାଇ ।"

ସଂସାରରେ ଜୀବନ ଯୌବନର ନଶ୍ୱରତାକୁ ବର୍ଣ୍ଣନା କରି ସେ ଲେଖିଥିଲେ—ଚମଡ଼ାରେ ଆଚ୍ଛାଦିତ ହାଡ଼ ଉପରେ ଗର୍ବ କରିବା ଉଚିତ ନୁହେଁ । କାରଣ ଯେ ଶ୍ରେଷ୍ଠ ଘୋଡ଼ା ଉପରେ ବସି ଛତ୍ରରେ ମଣ୍ଡିତ ଥାଏ ସେ ମଧ୍ୟ ଶେଷରେ ପୃଥିବୀରେ ଗଡ଼ିମରେ ।

'କବୀର ଗରବୁ ନ କଜିଏ ଚୃମ ଲପେଟେ ହାଡ଼
ହୈବର ଉପର ଛତ୍ରତର ତୋ ଫନ ଧରଣୀ ଗାଡ଼ ।'

ପୁନଶ୍ଚ କବୀର କହନ୍ତି ଯେ ସୁନ୍ଦର ଶରୀରକୁ ଦେଖି ଗର୍ବ କରିବା ଉଚିତ ନୁହେଁ । ତୁମେ ଆଜି ବା କାଲି ଏହାକୁ ଛାଡ଼ି ଏପରି ଚାଲିଯିବ ଯେପରି ସାପ କାଞ୍ଚ ଛାଡ଼ି ଚାଲିଯାଏ ।

“କବୀର ଗରବୁ ନ କୀଜଏ ଦେହି ଦେଖି ସୁରଂଗ
ଆଜୁ କାଲି ତଜି ଜାହୁଗେ ଜିଉ କଂଚୁରୀ ଭୁଜଂଗ ।”
“କବୀର ପାପୀ ଭଗତି ନ ଭାବଇ ହରିପୂଜା ନ ସୁହାଇ
ମାଖୀ ଚଂଦନୁ ପରହରୈ ଜହଂ ବିଗଂଧ ତହଂଜାଇ ।”

କବୀରଙ୍କ ମତରେ ପାପୀଙ୍କୁ ଭକ୍ତି ଭଲ ଲାଗେ ନାହିଁ କିମ୍ବା ହରିଙ୍କପୂଜା ତାଙ୍କୁ ପ୍ରସନ୍ନ କରି ପାରେନା, ଯେପରି ମକ୍ଷିକା ଚନ୍ଦନକୁ ଛାଡ଼ି ଦୁର୍ଗନ୍ଧ ସ୍ଥାନକୁ ଯାଏ ।

ଭଗବାନଙ୍କ ମହିମା ବର୍ଣ୍ଣନା କରି ସେ ଲେଖିଛନ୍ତି—
“କବୀର ସାତ ସମୁନ୍ଦହି ମସୁ କରଉ
କଲମ କରଉ ବନରାଇ
ବସୁଧା କାଗଦୁ ଜଉ କରଉ
ହରିଜସୁ ଲିଖନୁ ନ ଜାଇ ।”

ଯଦି ସାତ ସମୁଦ୍ରକୁ ସ୍ୟାହି, ସମସ୍ତ ବନରାଜିକୁ ଆପଣା କଲମ ଓ ସାରା ପୃଥିବୀକୁ କାଗଜ ଭାବରେ ଗ୍ରହଣ କରିଯାଏ, ତେବେ ମଧ୍ୟ ହରିଙ୍କ ଯଶ ଲେଖାଯାଇ ପାରିବ ନାହିଁ ।

ଏହିସବୁ ବିଷୟ ଯେ ଜନସାଧାରଣଙ୍କ ଅନୁଭୂତିଗମ୍ୟ ବିଷୟ ଏହା କହିବା ଅନାବଶ୍ୟକ ।

ସମାଜର ଉଚ୍ଚବର୍ଗଙ୍କଦ୍ୱାରା ଏହି କବିତାସମୂହ ସାମୟିକ ଆଦୃତ ନ ହୋଇଥିଲେ ହେଁ ଜନତା ସେଗୁଡ଼ିକୁ ଶ୍ରଦ୍ଧା ଓ ଆନ୍ତରିକତାର ସହିତ ଗ୍ରହଣ କରି ନେଇଥିଲେ । କବୀର ଆପଣାର ଅନୁଭୂତି ସିଦ୍ଧାନ୍ତ ଏବଂ ଜୀବନର ବାସ୍ତବତାର ସମନ୍ୱୟରେ ଆପଣା କାବ୍ୟକୁ ଶ୍ରୀମଣ୍ଡିତ

କରି ଯାଇଅଛନ୍ତି । ସେ ପୁସ୍ତକ ଜ୍ଞାନ ଅପେକ୍ଷା ଅନୁଭୂତ ଜନିତ ଜ୍ଞାନକୁ ଅଧିକ ପ୍ରାଧାନ୍ୟ ଦେଇଅଛନ୍ତି । ପୁସ୍ତକ ଜ୍ଞାନରୁ ଅହଙ୍କାର ରୂପକ ବିଷ ଉତ୍ପନ୍ନ ହୋଇଥାଏ, ମାତ୍ର ଜୀବନର ସହଜ ଜ୍ଞାନରୁ ସନ୍ତୋଷ ଓ ବିଶ୍ୱାସର ସୁମଧୁର ରସ ମନରେ ସଞ୍ଚରିତ ହୋଇଥାଏ । ଏହାହିଁ ଥିଲା ତାଙ୍କର ସିଦ୍ଧାନ୍ତ ।

କବୀରଙ୍କ ନାମରେ ଭଣିତା ହୋଇଥିବା ବହୁ ରଚନା ହିନ୍ଦୀ ସାହିତ୍ୟରେ ଦେଖିବାକୁ ମିଳେ; ମାତ୍ର ତନ୍ମଧ୍ୟରୁ ଅନେକ ରଚନା ତାହାଙ୍କ ଭକ୍ତମାନଙ୍କଦ୍ୱାରା ରଚିତ ହୋଇ ତାହାଙ୍କ ନାମରେ ଭଣିତା ହୋଇଥିବା ଜଣାଯାଏ । ତାହାଙ୍କ ରଚିତ ୨୪୩ । ସଲୋକା ବା ସାଖୀ (ଉପଦେଶ) ଓ ୧୭ଟି ରାଗରେ ରଚିତ ଶତାଧିକ ସଙ୍ଗୀତ (ପଦ) ୫ମ ଶିଖଗୁରୁ ଅର୍ଜୁନ ଦେବଙ୍କଦ୍ୱାରା ଖ୍ରୀ: ୧୬୨୪ରେ ସଙ୍କଳିତ ଶ୍ରୀଗୁରୁ ଗ୍ରନ୍ଥସାହେବରେ ସନ୍ନିବିଷ୍ଟ ହୋଇଥିଲା । ଏହାହିଁ କବୀରଙ୍କ ରଚନାବଳୀର ସର୍ବପ୍ରଥମ ଓ ପ୍ରାମାଣିକ ସଂଗ୍ରହ । ଏଥିରେ 'ବାବନ ଅଖରୀ' ନାମକ ଗୋଟିଏ ଚୌତିଶା ମଧ୍ୟ ସନ୍ନିବିଷ୍ଟ । ଏତଦ୍‌ବ୍ୟତୀତ ବହୁ ଦୋହା, ରମୈନି, ଅଠପହରା, ବାରମାସୀ, ଜ୍ଞାନ ଚୌତିଶା, ଭାଷୋଷଢ଼ି ଚୌତିଶା, ଆରତି, ରେଖତା, ବୀଜକ, ସମ୍ବାଦ ଗୀତା ପ୍ରଭୃତି ଅସଂଖ୍ୟ ଗୀତ ରଚନା ତାହାଙ୍କ ନାମରେ ପ୍ରଚଳିତ । ସନ୍ଥ, ଭକ୍ତ, ସାଧକ, ଧର୍ମ ପ୍ରବର୍ତ୍ତକ ହେଲେ ହେଁ ସବୁ କବିଙ୍କ ପରି ତାହାଙ୍କ ରଚନାରେ ବିଶ୍ୱଜନୀନ ସାମ୍ୟ ମୈତ୍ରୀର ବାଣୀ ହିଁ ଉଦ୍‌ଘୋଷିତ ହୋଇଥିବାରୁ ତାହାଙ୍କୁ ମହାନ କବି ଭାବରେ ଗ୍ରହଣ କରାଯାଇଥାଏ ।

କବୀରଙ୍କ ଧର୍ମମତ ସହ ଓଡ଼ିଶାର ନିର୍ଗୁଣ ଭକ୍ତସାଧକ ପଞ୍ଚସଖାଙ୍କ ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ ଓ ଧର୍ମମତର ସାମଞ୍ଜସ୍ୟ ରହିଛି । ଏଠାରେ ପ୍ରଦତ୍ତ କବୀରଙ୍କ ଦୁଇଟି ଶବ୍ଦ ବା ସଙ୍ଗୀତରୁ ତାହା ସହଜରେ ଅନୁମେୟ ।

୧—ଇସ ଘଟ (୧) ଅନ୍ତର ବାଗ ବଗିଚେ, ଇସୀମେଁ ସିରଜନହାରା

ଇସ ଘଟ ଅନ୍ତର ସାତ ସମୁନ୍ଦର, ଇସୀମେଁ ନୌଲଖ ତାରା

(୧) ଘଟ—ଦେହ

ଇସ ଘଟ ଅନ୍ତର ପାରସ ମୋତି, ଇସୀମେଁ ପରଖନ ହାରା
ଇସ ଘଟ ଅନ୍ତର ଅନହଦ ଗରଜୈ, ଇସୀମେ ଉଠତ ଫୁହାରା
କହତ କବୀର ସୁନୋ ଭାଇ ସାଧୋ, ଇସୀମେ ସାଇଁ ହମାରା ।

ପଦ୍ୟାନୁବାଦ—

ଏଇ ଘଟେ ରହିଛି ବାଗ ବଗିଚା ଏଥିରେ ସରଜନା କାରୀ ।୦।
ଏଇ ଘଟେ ରହିଛି ସାତ ସମୁଦ୍ର
ଏଥିରେ ତାରା ଅସୁମାର ।୧।
ଏଇ ଘଟେ ରହିଛି ପରଶମଣି
ଏଥିରେ ଚହ୍ଲରା ତାହାର ।୨।
ଏଇ ଘଟେ ଗରଜେ ଅନାହତ ନାଦ
ଏଥିରେ ଫୁଆରା ଝର ।୩।
କହନ୍ତି କବୀର ଶୁଣ ଭାଇ ସାଧୁ
ଏଥିରେ ପ୍ରଭୁ ମୋହର ।୪।

୨—ରସ ଗଗନ ଗୁଫାମେଁ ଅଜର ଝରୈ
ବିନ ବାଜା ଝନ୍‌କାର ଉଠେ ଜହ ସମଝି ପରୈ ଜବ ଧ୍ୟାନ ଧରୈ
ବିନ ତାଲ ଜହଁ କଁ ଓ୍ୱଲ ଫୁଲାନେ,
ତେହି ଚଢ଼ି ହଂସୋ କେଲି କରୈ
ବିନ ଚନ୍ଦା ଉଁଜିୟାରୀ ଦରୈସେ, ଜହଁ ତହଁ ହଁସା ନଜର ପରୈ
ଦସୱେଁ ଦ୍ୱାରେ ତାରୀ ଲାଗୀ, ଅଲଖ ପୁରୁଷ ଜାକୋ ଧ୍ୟାନ ଧରୈ
କାଳ କରାଲ ନିକଟ ନହିଁ ଆରୈ, କାମ-କ୍ରୋଧ-ମଦ-ଲୋଭ ଜରୈ
ଜୁଗନ୍ ଜୁଗନକୀ ତୃଷା ବୁଝାନୀ, କର୍ମ-ଭର୍ମ-ଅଧ-ବ୍ୟାଧି-ଟରୈ
କହୈ କବୀର ସୁନୋ ଭାଇ ସାଧୋ, ଅମର ହୋୟ କବହୁଁ ନମରୈ

---

ଗଗନ ଗୁଂଫା—ସତ୍ୟ ଲୋକ, ବ୍ରହ୍ମାଣ୍ଡ ତଥା ପିଣ୍ଡର ସର୍ବୋଚ୍ଚ ସ୍ଥାନ ବା ସହସ୍ରାର ଚକ୍ର ।

ହଂସ—ଜୀବାତ୍ମା ।

ଦୋହାନୁବାଦ—

ଗଗନ ଗୁମ୍ଫାରୁ ରସ ଝରତେ ଝରେ ।୦।
ବାଦ୍ୟ ବିନା ତହିଁ ଉଠଇ ଝଂକାର
ସମସ୍ତେ ସେହୁ ସେହୁ ଧ୍ୟାନ କରେ ।୧।

ପୋଖରୀ ନ ଥାଇ (ତହିଁ) ଫୁଟଇ କମଳ
କରଇ କେଳି ହଂସ ତଥି ଉପରେ ।୨।

ଚନ୍ଦ୍ରବିନା ତହିଁ ଚନ୍ଦ୍ରିମା ଚମକେ
ଯହିଁ ତହିଁ ହଂସ ନଜରେ ପଡ଼େ ।୩।

ଦଶମ ଦୁଆରେ ସମାଧି ହୋଇଛି
ଯହିଁ ଅଲେଖ ପୁରୁଷ ସଦା ବିହରେ ।୪।

କାଳ ତା' ପାଖକୁ ଭରସି ନ ପାରେ
କାମ କ୍ରୋଧ ଲୋଭ ମଦ ଗାରମା ସରେ ।୫।

ଯୁଗ ଯୁଗ ତୃଷ୍ଣା ମିଟଇ ତାହାର
କର୍ମ ପାଶ ଆଧି ବ୍ୟାଧି ନ ଛୁଏଁ ତାରେ ।୬।

କହଇ କବୀର ଶୁଣ ଭାଇ ସାଧୁ
ଅମର ହୁଏ ସେହୁ କେବେ ନ ମରେ ।୭।



# ରାୟ ରାମାନନ୍ଦ

ମଧ୍ୟଯୁଗର ବଶିଷ୍ଟ କବି, ପଣ୍ଡିତ, ଭକ୍ତ ସାଧକ ଓ ଭକ୍ତି-ତତ୍ତ୍ୱବିତ୍ ଭାବେ ରାମାନନ୍ଦ ସ୍ୱନାମଧନ୍ୟ । ଷୋଡଶ ଶତାବ୍ଦୀରେ ସେ ଓଡ଼ିଶାରେ ଆବିର୍ଭୂତ ହୋଇଥିଲେ । ତାହାଙ୍କ ଆବିର୍ଭାବ ଓ ତିରୋଧାନ କାଳ ନିର୍ଣ୍ଣୀତ ହୋଇଥିଲେହେଁ ସେ ସମ୍ପର୍କରେ ସନ୍ଦେହର ଅବକାଶ ଅଛି । ତାହାଙ୍କ ଜୀବନ ଚରିତର ବହୁ ବିଷୟ ତଥାପି ଅଜ୍ଞାତ ରହିଛି । କୃଷ୍ଣଦାସ କବିରାଜଙ୍କ ବଙ୍ଗଳା 'ଚୈତନ୍ୟ ଚରିତାମୃତ' ଓ ବଙ୍ଗଳାର ଅନ୍ୟାନ୍ୟ ଚୈତନ୍ୟଜୀବନୀ କାବ୍ୟମାନଙ୍କରୁ ତାହାଙ୍କ ଜୀବନ ଚରିତ ସମ୍ପର୍କରେ କେତେକ ବିଷୟ ଜଣାଯାଇଥାଏ; ମାତ୍ର ସମକାଳୀନ ଉତ୍କଳୀୟ କବି ଓ ଭକ୍ତମାନଙ୍କ ରଚନାବଳୀରୁ ରାମାନନ୍ଦଙ୍କ ସମ୍ପର୍କରେ ଆଶାନୁରୂପ ଉପାଦାନ ମିଳେନାହିଁ । ସମ୍ଭବତଃ ତତ୍କାଳୀନ ଉତ୍କଳୀୟ ବୈଷ୍ଣବ ସମ୍ପ୍ରଦାୟ ଓ ଧର୍ମାଚରଣ ଗୁଡ଼ିକରେ ରାମାନନ୍ଦଙ୍କର ବିଶ୍ୱାସ ନ ଥିଲା । ଏଣୁ ଉତ୍କଳୀୟ ବୈଷ୍ଣବ ସାଧକ ଓ କବିଗଣ ତାହାଙ୍କ ସମ୍ପର୍କରେ ଏପରି ନୀରବତା ଅବଲମ୍ବନ କରିଅଛନ୍ତି । ବହୁ ପରବର୍ତ୍ତୀ କାଳରେ ଅଷ୍ଟାଦଶ ଶତକର ବୈଷ୍ଣବକବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ରାମାନନ୍ଦଙ୍କ ମତକୁ ସମର୍ଥନ କରି ଲେଖିଥିଲେ—

'ଶ୍ରୀ ରୂପ ଗୋସ୍ୱାମୀ ରାମାନନ୍ଦ ମତ ଯାହି
ବେଦ ବଚନୁ ଅଧିକ ଆମ୍ଭେ ମଣୁ ତାହି ।'

ପରମ୍ପରାକ୍ରମେ ବଙ୍ଗ ଓ ଓଡ଼ିଶାର ଗୌଡ଼ୀୟ ସମ୍ପ୍ରଦାୟରେ ରାୟ ରାମାନନ୍ଦ ଯେ ବରେଣ୍ୟ ବ୍ୟକ୍ତିରୂପେ ଗୃହୀତ ହୋଇ ଆସୁଛନ୍ତି ଏ ବିଷୟରେ

ସନ୍ଦେହର ଅବକାଶନାହିଁ । 'ଜଗନ୍ନାଥ ବଲ୍ଲଭ ନାଟକ' ପ୍ରଣେତା ଭାବେ ମଧ୍ୟ ସେ ସଂସ୍କୃତ ସାହିତ୍ୟ ଇତିହାସରେ ସୁବିଦିତ ।

ପୁରୀ ନିକଟବର୍ତ୍ତୀ ବେଣ୍ଟପୁର ଗ୍ରାମରେ ଆନୁମାନିକ ଖ୍ରୀ: ୧୪୭୦ରେ ଏକ ସମ୍ଭ୍ରାନ୍ତ, ଧନାଢ୍ୟ ପରିବାରରେ ସେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କ କୌଳିକ ପଦବୀ ପଟ୍ଟନାୟକ ଓ ପିତାଙ୍କ ନାମ ଭବାନନ୍ଦ । ରାମାନନ୍ଦଙ୍କର ଆଉ ଚାରିଗୋଟି ଭାଇ ଥିଲେ ଓ ସେମାନଙ୍କ ମଧ୍ୟରୁ କେତେକ ଉଚ୍ଚ ରାଜ-କାର୍ଯ୍ୟରେ ମଧ୍ୟ ନିଯୁକ୍ତ ହୋଇଥିଲେ । ଓଡ଼ିଶାର ତତ୍କାଳୀନ ରାଜା ପ୍ରତାପରୁଦ୍ରଦେବ ସମ୍ଭବତଃ ରାମାନନ୍ଦଙ୍କ ରାଜନୀତି-କୁଶଳତା ଓ କର୍ମପଟୁତା ଯୋଗୁ ତାଙ୍କୁ ତତ୍କାଳୀନ ଓଡ଼ିଶାର ଏକ ଉପଦ୍ରୁତ ଅଞ୍ଚଳର ରାଜପ୍ରତିନିଧି ଓ ଶାସକ ଭାବେ ନିଯୁକ୍ତ କରିଥିଲେ । ଓଡ଼ିଶାର ଦକ୍ଷିଣାଞ୍ଚଳ ଗୋଦାବରୀ ନଦୀ ତଟବର୍ତ୍ତୀ ରାଜମହେନ୍ଦ୍ରୀ ଥିଲା ରାମାନନ୍ଦଙ୍କ ମୁଖ୍ୟ କର୍ମପୀଠ । କଥିତ ଅଛି ଯୁଦ୍ଧରେ ପାରଦର୍ଶିତା ଦର୍ଶାଇଥିବାରୁ ହିଁ ରାଜା ପ୍ରତାପରୁଦ୍ର ତାଙ୍କୁ 'ରାୟ' ପଦବୀ ପ୍ରଦାନ କରିଥିଲେ । ମାତ୍ର ଚୈତନ୍ୟ ଜୀବନୀ ଗ୍ରନ୍ଥମାନଙ୍କରେ ଆମ୍ଭେମାନେ ରାମାନନ୍ଦଙ୍କ ଶୌର୍ଯ୍ୟ ଓ ରାଜନୀତି କୁଶଳତାର କୌଣସି ନିଦର୍ଶନ ପାଉ ନାହିଁ । ତାଙ୍କୁ ମୁଖ୍ୟତଃ ଭକ୍ତ ଚରିତ୍ର ରୂପେ ହିଁ ଏଥିରେ ଚିତ୍ରଣ କରାଯାଇଅଛି ।

ରାମାନନ୍ଦ ଥିଲେ ବହୁ ଭାଷାରେ ସୁପଣ୍ଡିତ । ସଂସ୍କୃତ, ପ୍ରାକୃତ, ମୈଥିଳୀ, ବଙ୍ଗଳା ପ୍ରଭୃତି ଭାଷା ସହ ଓଡ଼ିଶାର ସାଂସ୍କୃତିକ ସମ୍ପର୍କ ଅଧିକ ଘନିଷ୍ଠ ଥିଲା । ରାମାନୁଜ ପ୍ରଭୃତି ଦକ୍ଷିଣ ଭାରତର ଭକ୍ତ ସାଧକଗଣ ଶ୍ରୀକ୍ଷେତ୍ରକୁ ଆସି ସେମାନଙ୍କ ଧର୍ମମତ ପ୍ରଚାର କରିଥିଲେ । ରାମାନନ୍ଦ ତରୁଣ ବୟସରେ ଏ ବିଷୟରେ ଅବହିତ ହୋଇଥିବେ । ଏତଦ୍‌ବ୍ୟତୀତ କର୍ମ ଜୀବନରେ ସ୍ୱୟଂ ଦକ୍ଷିଣ ଭାରତରେ ଅବସ୍ଥାନ କରି ସେହି ଅଞ୍ଚଳର ଭକ୍ତି ପ୍ରବାହ ସହ ସେ ଆପଣାକୁ ସଂପୃକ୍ତ କରି ପାରିଥିଲେ । ଏଣୁ ଚୈତନ୍ୟଙ୍କ ଶ୍ରୀକ୍ଷେତ୍ରକୁ ଆସିବାର ବହୁ ପୂର୍ବରୁ ସେ ପ୍ରେମଭକ୍ତିତତ୍ତ୍ୱ ବିଷୟରେ ଥିଲେ ଅଭିଜ୍ଞ । କେତେକଙ୍କ ମତରେ ମାଧବେନ୍ଦ୍ର ପୁରୀଙ୍କ କୌଣସି ଶିଷ୍ୟଙ୍କଠାରୁ ସେ ପ୍ରେମଭକ୍ତି ତତ୍ତ୍ୱ ବିଷୟ ସର୍ବାଦୌ ଅବଗତ ହୋଇଥିଲେ ।

ରାମାନନ୍ଦଙ୍କ ସଂସ୍କୃତରେ ବିରଚିତ ରାଧାକୃଷ୍ଣ ଲୀଳାତ୍ମକ 'ଜଗନ୍ନାଥ ବଲ୍ଲଭ ନାଟକଟି ଏକ ପ୍ରଖ୍ୟାତ ନାଟକ ଭାବେ ପରିଗୃହୀତ । ନାଟକର ଏତାଦୃଶ ନାମକରଣ ତାତ୍ପର୍ଯ୍ୟପୂର୍ଣ୍ଣ । ଏହା ଚୈତନ୍ୟଙ୍କ ଉତ୍କଳ ଆଗମନର ଅବ୍ୟବହିତ ପୂର୍ବରୁ ପ୍ରଣୀତ ହୋଇଥିଲା । ସେତେବେଳେ ଜୟଦେବଙ୍କ 'ଗୀତ ଗୋବିନ୍ଦ' ଓଡ଼ିଶାରେ ବିପୁଳ ଜନପ୍ରିୟତା ଅର୍ଜନ କରିଥିଲା । କବି ରାମାନନ୍ଦ ଗୀତ ଗୋବିନ୍ଦ ଅନୁକରଣରେ ଏହି ପଞ୍ଚାଙ୍କ ନାଟକଟି ରଚନା କରିଅଛନ୍ତି । ଗୀତ ଗୋବିନ୍ଦର ବିଭିନ୍ନ ସର୍ଗ ଭଳି ଏହି ନାଟକର ଅଙ୍କଗୁଡ଼ିକ ପୂର୍ବରାଗ, ଭାବ ପରୀକ୍ଷା, ଭାବ ପ୍ରକାଶ, ଶ୍ରୀ ରାଧାର ଅଭିସାର, ଓ ଶ୍ରୀରାଧା ସଂଗମ ନାମରେ ନାମିତ । ଏହି ନାଟକରେ ଗଦ୍ୟାତ୍ମକ ସଂଳାପ ଅପେକ୍ଷା ବହୁ ସଂସ୍କୃତ ଶ୍ଳୋକ ଓ ରାଗାଶ୍ରୟୀ ସଂସ୍କୃତ ଗୀତ ସନ୍ନିବିଷ୍ଟ ହୋଇଅଛି । କବି ଏହି ଗୀତଗୁଡ଼ିକରେ ପ୍ରତାପରୁଦ୍ରଙ୍କ ନାମ ଉଲ୍ଲେଖ କରିଅଛନ୍ତି । ନାଟକଟି ପୁରୀ ଶ୍ରୀ ମନ୍ଦିରରେ ଶ୍ରୀ ଚୈତନ୍ୟଙ୍କ ଉପସ୍ଥିତିରେ ଅଭିନୀତ ହୋଇଥିବା ବିଷୟ 'ଚୈତନ୍ୟ ଚରିତାମୃତ'ରୁ ଜଣାଯାଏ । ଏଥିରେ ସନ୍ନିବିଷ୍ଟ ଶ୍ରୀକୃଷ୍ଣଙ୍କ ରୂପବର୍ଣ୍ଣନାତ୍ମକ ନିମ୍ନୋକ୍ତ ଗୀତାରୁ 'ଗୀତଗୋବିନ୍ଦ'ର ପ୍ରଭାବ ସହଜରେ ଅନୁମେୟ ।

'ମୃଦୁତର ମାରୁତ ବେଲ୍ଲିତ ପଲ୍ଲବ ବଲ୍ଲୀ ବଳିତ ଶିଖଣ୍ଡମ
ତିଳକ ବିଡ଼ମ୍ବିତ ମରକତ ମଣିତଳ ବିମ୍ବିତ ଶଶଧର ଖଣ୍ଡମ୍
ଯୁବତି ମନୋହର ବେଶମ୍
କଳୟ କଳାନିଧି-ଶିବ ଧରଣୀ ମନୁ ପରିଣତ ରୂପ ବିଶେଷମ୍ ।ଧ୍ରୁ
ଖେଳା ଦୋଳା-ସ୍ଥିତ ମଣିକୁଣ୍ଡଳ ରୁଚି ରୁଚିରାନନ ଶୋଭମ୍
ହେଳା ତରଳିତ ମଧୁର ବିଲୋକନ ଜନିତ ବଧୂଜନ ଜେଓମ୍ ।
ଗଜପତି ରୁଦ୍ର ନରାଧିପ ଚେତସି ଜନୟିତୁ ମୁଦ ମନୁବାରମ୍
ରାମାନନ୍ଦ କବି ରାୟଭଣିତଂ ମଧୁରପୁ ରୂପ ମୁଦାରମ୍ ।'
( ଜଗନ୍ନାଥ ବଲ୍ଲଭ ନାଟକ)

(କୁସୁମ କଶଳୟରେ ଶୋଭିତ, ସୁନ୍ଦର ଲତା ଜାଲରେ ପରିବେଷ୍ଟିତ ଶ୍ରୀକୃଷ୍ଣଙ୍କ ଚୂଡ଼ାର ଶିଖିଚନ୍ଦ୍ରକ ମୃଦୁତର ପବନ ହିଲ୍ଲୋ-ଳନରେ କଂପୁଅଛି । ତାହାଙ୍କ ଲଲାଟରେ ତିଳକ ମରକତ ମଣୀ ଦେହରେ ପ୍ରତିବିମ୍ବିତ ଶଶିକଳାକୁ ପରାଜିତ କରିଅଛି । ଯୁବତୀଜନ

ମନୋହାରୀ, ବିଶେଷ ବେଶଧାରୀ, ଧରଣୀ ତଳରେ ସମୁଦିତ ପୂର୍ଣ୍ଣଚନ୍ଦ୍ର ସଦୃଶ ଶ୍ରୀକୃଷ୍ଣଙ୍କୁ ଅବଲୋକନ କର ! କ୍ରୀଡ଼ାଚଞ୍ଚଳ ମଣିକୁଣ୍ଡଳ ପ୍ରଭାବରେ ତାହାଙ୍କ ବଦନ ସୌନ୍ଦର୍ଯ୍ୟ ଅଧିକତର ଶୋଭାମୟ ହୋଇଅଛି । ସେ ବିଳାସ ତରଳ ମଧୁର ବିଲୋକନ ବ୍ରଜବଧୂଗଣଙ୍କୁ ଲୋଭାତୁର କରି ଦେଉଛନ୍ତି । କବି ରାମାନନ୍ଦ ରାୟଙ୍କ ବର୍ଣ୍ଣିତ ମଧୁରିମାଙ୍କର ଏହି ଉଦାରରୂପ ନରନାଥ ଗଜପତି ପ୍ରତାପରୁଦ୍ରଙ୍କ ଚିତ୍ତକୁ ବାରମ୍ବାର ଆନନ୍ଦିତ କରୁ ।)

‘ଚନ୍ଦ୍ରକ ଚାରୁ ମୟୂର ଶିଖଣ୍ଡକ ମଣ୍ଡଳ ବଳୟିତ କେଶମ୍
ପ୍ରଚୁର ପୁରନ୍ଦର ଧନୁରନୁ ରଞ୍ଜିତ ମେଦୁର ମୁଦିର ସୁବେଶମ୍ ।
ଗୋପ କଦମ୍ବ-ନିତମ୍ବବତୀମୁଖ ଚୁମ୍ବନ ଲମ୍ଭିତ ଲୋଭଂ
ବନ୍ଧୁଜୀବ ମଧୁ-ରାଧର ପଲ୍ଲବ ମୁଲ୍ଲସିତ ସ୍ମିତ ଶୋଭମ୍ ।

× × ×

ମଣିମୟମକର-ମନୋହର କୁଣ୍ଡଳ ମଣ୍ଡିତ ଗଣ୍ଡମୁଦାରଂ
ପୀତବସନ ମନୁ-ଗତମୁନିମନୁଜ ସୁରାସୁର ବର ପରିବାରଂ ।’

(ଗୀତ ଗୋବିନ୍ଦ ୨ୟ ସର୍ଗ)

ଦୁଇଟିଯାକ ଗୀତ ଗୁର୍ଜରୀ ରାଗରେ ରଚିତ ଓ ଉପଯୁକ୍ତ ଉକ୍ତିରୁ ରାମାନନ୍ଦଙ୍କ କବିତ୍ୱ ସହଜରେ ଅନୁମେୟ ।

ବଙ୍ଗଳା ‘ଚୈତନ୍ୟ ମଙ୍ଗଳ’ ପ୍ରଣେତା ଲୋଚନ ଦାସ ‘ଜଗନ୍ନାଥ ବଲ୍ଲଭ’ ନାଟକକୁ ବଙ୍ଗଳାରେ ଅନୁବାଦ କରିଥିବା ବିଷୟ ‘ଭାରତେର ସାଧକ’ ପୁସ୍ତକରୁ ଜଣାଯାଏ । (ଶେଷ ଖଣ୍ଡ ପୃ ୬୯)

ପ୍ରତାପରୁଦ୍ରଙ୍କ ରାଜତ୍ୱକାଳରେ ଖ୍ରୀ ୧୫୧୦ରେ ଶ୍ରୀ ଚୈତନ୍ୟ ଶ୍ରୀ କ୍ଷେତ୍ରକୁ ଆସିଥିଲେ । ସେତେବେଳେ ତାଙ୍କୁ ଚବିଶ ବର୍ଷ ବୟସ ଓ ରାମାନନ୍ଦଙ୍କ ବୟସ ଚାଳିଶ । ଏଣୁ ରାମାନନ୍ଦ ଥିଲେ ଚୈତନ୍ୟଙ୍କଠାରୁ ବୟୋଜ୍ୟେଷ୍ଠ । ଚୈତନ୍ୟଙ୍କ ଆଚରିତ ପ୍ରେମଭକ୍ତିତତ୍ତ୍ୱ କେବଳ ରାମାନନ୍ଦଙ୍କୁ ଉତ୍ତମରୂପେ ଜଣାଥିବା ବିଷୟ ପୁରୀର ନୈୟାୟିକ ପଣ୍ଡିତ ବାସୁଦେବ ସାର୍ବଭୌମ ଚୈତନ୍ୟଙ୍କୁ ଜଣାଇଥିଲେ । ଚୈତନ୍ୟ ଦକ୍ଷିଣ

ଭାରତରେ ତୀର୍ଥାଟନ କରୁଥିବା ସମୟରେ ଗୋଦାବରୀ ତୀରରେ ରାମାନନ୍ଦଙ୍କ ସାକ୍ଷାତ ଲାଭ କରିଥିଲେ । ଏହି ସାକ୍ଷାତ୍‌କାର ଉଭୟଙ୍କ ମଧ୍ୟରେ ଏକ ଅପୂର୍ବ, ଅଲୌକିକ ସଖ୍ୟ ଓ ଆନୁଗତ୍ୟ ସୃଷ୍ଟି କରିଥିଲା । ଉଭୟେ ଭକ୍ତି-ତତ୍ତ୍ୱାଲୋଚନାରେ ଆତ୍ମବିହ୍ୱଳ ହୋଇ ପଡ଼ିଥିଲେ । ଚୈତନ୍ୟଙ୍କ ପରାମର୍ଶକ୍ରମେ ପାରମାର୍ଥିକ ଜୀବନ ଯାପନ ଉଦ୍ଦେଶ୍ୟରେ ରାମାନନ୍ଦ ଦାୟିତ୍ୱ ସମ୍ପନ୍ନ ରାଜକାର୍ଯ୍ୟରୁ ଅବ୍ୟାହତି ନେଇ ପୁରୀକୁ ଫେରି ଆସିଥିଲେ । ଚୈତନ୍ୟ ମଧ୍ୟ ନିବିଡ଼ ଭାବରେ କାମନା କରିଥିଲେ ରାମାନନ୍ଦଙ୍କ ସାହଚର୍ଯ୍ୟ ।

ଚୈତନ୍ୟଙ୍କ ଜୀବନର ଶେଷ ଅଠର ବର୍ଷ ପୁରୀରେ ଅତିବାହିତ ହୋଇଥିଲା । ତାହାଙ୍କ ସାହଚର୍ଯ୍ୟରେ ଓ ଭକ୍ତି ସାଧନା ଏବଂ କାବ୍ୟ-କବିତା ପ୍ରଣୟନରେହିଁ ରାମାନନ୍ଦଙ୍କ ଅବଶିଷ୍ଟ ଜୀବନକାଳ ପୁରୀରେ ଅତିବାହିତ ହୋଇଥିଲା । ପୁରୀ ବଡ଼ଦାଣ୍ଡରେ ଅବସ୍ଥିତ ଜଗନ୍ନାଥବଲ୍ଲଭ ମଠ ଥିଲା ତାହାଙ୍କ ବାସସ୍ଥଳୀ । ପ୍ରାୟ ପ୍ରତ୍ୟହ ସେ ଚୈତନ୍ୟଙ୍କ ନିକଟକୁ ଯାଉଥିଲେ ଓ ତାହାଙ୍କୁ ଶ୍ରୀକୃଷ୍ଣଙ୍କ ଚରିତ ଶୁଣାଉଥିଲେ ।

ରାମାନନ୍ଦ ସନ୍ନ୍ୟାସ ଧର୍ମ ଗ୍ରହଣ କରିନଥିବା ଅନୁମିତ ହୁଏ । ରାଜକାର୍ଯ୍ୟରୁ ଅବ୍ୟାହତି ନେବାପରେ ରାଜା ତାଙ୍କୁ ଅର୍ଥ ସାହାଯ୍ୟ କରୁଥିଲେ । ଶ୍ରୀଚୈତନ୍ୟ ତାଙ୍କୁ ସମଧର୍ମୀ ଭକ୍ତ ସାଧକଭାବେ ଗ୍ରହଣ କରିଛନ୍ତି ଓ ଅନେକାର ପାର୍ଶ୍ୱଦମାନଙ୍କ ମଧ୍ୟରେ ସର୍ବଶ୍ରେଷ୍ଠ ବୋଲି ସ୍ୱୀକାର କରିଅଛନ୍ତି । ତାଙ୍କୁ ବାଉଳ ପ୍ରେମସାଧକ ବୋଲି ଅଭିହିତ କରି ସେ କହିଥିଲେ—

"ଆମି ଏକ ବାଉଲ ତୁମି ଦ୍ୱିତୀୟ ବାଉଲ
ଅତଏବ ତୋମାର ଆମାର ସମତୁଲ ।"

ରାମାନନ୍ଦହିଁ ହେଉଛନ୍ତି ଗୌଡ଼ୀୟ ବୈଷ୍ଣବ ଦର୍ଶନର ପ୍ରଥମ ଓ ପ୍ରସିଦ୍ଧ ବ୍ୟାଖ୍ୟାକାର । ରାଜମହେନ୍ଦ୍ରୀରେ ଚୈତନ୍ୟ ଓ ରାମାନନ୍ଦଙ୍କ ତତ୍ତ୍ୱାଲୋଚନା ଓ ରାମାନନ୍ଦ ବ୍ୟାଖ୍ୟାକୁ ଗୌଡ଼ୀୟ ପ୍ରେମଭକ୍ତିତତ୍ତ୍ୱର ନିର୍ଯ୍ୟାସ ଓ ଚୂଡ଼ାନ୍ତ ଅଭିବ୍ୟକ୍ତ ଭାବେ ଗ୍ରହଣ କରାଯାଏ । ରାମନନ୍ଦଙ୍କ

ତତ୍ତ୍ୱ ଉପଲବ୍ଧି ଓ ସାଧନାର ଉତ୍କର୍ଷକୁ ସ୍ୱୀକାର କରି ଚୈତନ୍ୟ କହିଥିଲେ-

'ଏସବୁ ଶିଖାଇଲା ମୋରେ ରାୟ ରାମାନନ୍ଦ
ରାୟେର ପ୍ରସାଦେ ଶିଖିନୁ ବ୍ରଜେର ପ୍ରେମଭାବ ।'

ରାମାନନ୍ଦ ଥିଲେ ଗୀତ ବାଦ୍ୟ ନୃତ୍ୟରେ ସୁପ୍ରବୀଣ । ସେ ପୁଣି ଶ୍ରୀ ମନ୍ଦିରରେ ଦାକ୍ଷିଣାତ୍ୟ ମନ୍ଦିର ଅନୁରୂପ ଦେବଦାସୀ ପ୍ରଥାର ପ୍ରବର୍ତ୍ତକ ବୋଲି କେହି କେହି ଆଲୋଚକ ମତ ବ୍ୟକ୍ତ କରିଅଛନ୍ତି । ନିଜ ବାସ ଭବନରେ ସେ ତରୁଣୀ ଦେବଦାସୀକନ୍ୟାମାନଙ୍କୁ ଗୀତ ଅଭିନୟ ଶିକ୍ଷା ଦେଉଥିଲେହେଁ ଅତ୍ୟନ୍ତ ସଂଯତ ଓ ନିର୍ବିକାର ଥିଲେ । ଚୈତନ୍ୟଙ୍କ ଭାଷାରେ-

'ନିର୍ବିକାର ଦେହ ମନ କାଷ୍ଠ ପାଷାଣ ସମ
ଆଶ୍ଚର୍ଯ୍ୟ ତରୁଣୀ ସ୍ପର୍ଶେ ନିର୍ବିକାର ମନ ।

× × ×

ଏକା ରାମାନନ୍ଦେର ହୟ ଏଇ ଅଧିକାର
ସତେ ଜାନି ଅପ୍ରାକୃତ ଦେହ ତାର ।

× × ×

ରାଗାନୁଗା ମାର୍ଗେ ଜାନି ରାୟେର ଭଜନ
ସିଦ୍ଧ ଦେହ ତୁଲ୍ୟ ତାତେ ପ୍ରାକୃତ ନହେ ମନ ।'

ସାଧନା ବଳରେ ସେ ଭକ୍ତିମୟ ଦିବ୍ୟଦେହ ଲାଭ କରିଥିଲେ— ଏଣୁ ତାଙ୍କ ବିଷୟରେ କୁହାଯାଇଛି...'ମାନୁଷ ନହେ ରାୟ କୃଷ୍ଣଭକ୍ତିମୟ', ସେ ଆତ୍ମ ପ୍ରଚାର ଗ୍ରହିଁ ନ ଥିଲେ ବା କୌଣସି ଗୋଷ୍ଠୀର ନେତୃତ୍ୱ କାମନା କରି ନ ଥିଲେ । ତାହାଙ୍କ ପରମ ବୈଷ୍ଣବୋଚିତ ବିନୟ ଓ ମହାନୁଭବତାକୁ ଚୈତନ୍ୟ ବହୁ ପ୍ରସଙ୍ଗରେ ସ୍ୱୀକାର କରିଛନ୍ତି...

"ପ୍ରଭୁ କହେ ରାମାନନ୍ଦ ବିନୟେର ଖଣି
ଆପନାର କଥା ପରମୁଣ୍ଡେ ଦେନ ଆଣି ।

ମହାନୁଭବେର ଏଇମତ ସ୍ୱଭାବହୟ
ଆପନାର ଗୁଣ ନାହିଁ ଆପନେ କହୟ ।"

ସାଧକ ଭାବରେ ସେ ଯେପରି ଥିଲେ ସର୍ବଶ୍ରେଷ୍ଠ, ସେହିପରି ତାହାଙ୍କର ପାଣ୍ଡିତ୍ୟ ମଧ୍ୟ ଥିଲା ଶୀର୍ଷ ସ୍ଥାନୀୟ । ଗୌଡ଼ୀୟ ବୈଷ୍ଣବତତ୍ତ୍ୱର ବାଖ୍ୟାକାର ଓ କବିରୂପେ ତଥା ଚୈତନ୍ୟ-ଅନୁଗାମୀ ଅନ୍ୟାନ୍ୟ ଲେଖକମାନଙ୍କ ରଚନାବଳୀର ଆଦ୍ୟ ସମୀକ୍ଷକ ରୂପେ ସେ ଥିଲେ ବରେଣ୍ୟ । ଅନ୍ୟ ଲେଖକମାନଙ୍କ ସାହିତ୍ୟକୃତି ସମ୍ପର୍କରେ ରାମାନନ୍ଦଙ୍କ ଅଭିମତକୁ ଚୈତନ୍ୟ ଯଥାର୍ଥ ବିବେଚନା କରୁଥିଲେ । ଯେଉଁ ଗ୍ରନ୍ଥକୁ ରାମାନନ୍ଦ ସୁଧାରସ୍ କରୁଥିଲେ ତାହାହିଁ ଚୈତନ୍ୟ ଶୁଣୁଥିଲେ ବା ପାଠ କରୁଥିଲେ । ରୂପ ଗୋସ୍ୱାମୀ ରାମାନନ୍ଦଙ୍କ ନିକଟରେ ତାହାଙ୍କ ରଚିତ 'ବିଦଗ୍ଧ ମାଧବ' ଓ 'ଲଳିତ ମାଧବ' ନାଟକ ପଢ଼ି ଶୁଣାଇଥିଲେ । ରାମାନନ୍ଦ ଏହାକୁ ପ୍ରଶଂସା କରିବାରୁ ରୂପଗୋସ୍ୱାମୀ ରାମାନନ୍ଦଙ୍କ କବିତ୍ୱ ଓ ପାଣ୍ଡିତ୍ୟକୁ ମହତ୍ତର ବୋଲି ସ୍ୱୀକାର କରି କହିଛନ୍ତି···

'ରୂପ କହେ କାହାଁତୁମି ସୂର୍ଯ୍ୟସମ ଭାସ
ମୁଇଁ କୋନ କ୍ଷୁଦ୍ରଯେନ ଖଦ୍ୟୋତ ପ୍ରକାଶ ।'

ରାମାନନ୍ଦ ସଂସ୍କୃତ, ବଙ୍ଗଳା, ମୈଥିଳି, ବ୍ରଜବୋଲି ପ୍ରଭୃତି ଭାଷାରେ ପ୍ରାଜ୍ଞତା ଅର୍ଜନ କରିଥିବାରୁ ସେ ବିଦ୍ୟାପତି ଓ ଚଣ୍ଡୀଦାସଙ୍କ ଗୀତାବଳୀରୁ ଭାବାନୁରୂପ ଅଂଶ ପଢ଼ି ଚୈତନ୍ୟଙ୍କୁ ଶୁଣାଉଥିଲେ ।

"ବିଦ୍ୟାପତି ଚଣ୍ଡୀଦାସ ଶ୍ରୀ ଗୀତ ଗୋବିନ୍ଦ
ଭାବାନୁରୂପ ଶ୍ଳୋକ ପଢ଼େ ରାୟ ରାମାନନ୍ଦ ।"

ବ୍ରଜବୋଲି ଭାଷାରେ ମଧ୍ୟ ସେ କେତେକ ଗୀତ ରଚନା କରିଥିଲେ । କେହି କେହି ତାଙ୍କୁ ବ୍ରଜବୋଲି ଭାଷାରେ ପ୍ରଥମ ସଙ୍ଗୀତ ରଚୟିତା ଭାବେ ଗ୍ରହଣ କରିଅଛନ୍ତି । ତାହାଙ୍କ ରଚିତ କେତେକ ବଙ୍ଗଳା ଗୀତର ସନ୍ଧାନ ମିଳିଅଛି; ମାତ୍ର ତାହାଙ୍କ ରଚିତ କୌଣସି ଓଡ଼ିଆ ଗୀତର ସନ୍ଧାନ ଏପର୍ଯ୍ୟନ୍ତ ମିଳି ପାରିନାହିଁ ।

ବଙ୍ଗଳା ଭାଷାରେ ସେ 'ଦଣ୍ଡାତ୍ମକ ଲୀଳା' ନାମକ ଏକ କାବ୍ୟ ମଧ୍ୟ ରଚନା କରିଥିବା ଶୁଣାଯାଏ । ପ୍ରିୟରଞ୍ଜନ ସେନ ରାମାନନ୍ଦଙ୍କ ଶତାଧିକ କୃଷ୍ଣଲୀଳାତ୍ମକ ସଙ୍ଗୀତ ସଂଗ୍ରହ କରି ସେଗୁଡ଼ିକୁ 'ରାୟ ରାମାନନ୍ଦେର ଭଣିତାଯୁକ୍ତ ପଦାବଲୀ' ନାମରେ ପ୍ରକାଶ କରି ଅଛନ୍ତି । ଏହି ଗୀତଗୁଡ଼ିକ ଅତୀବ ରସପୂର୍ଣ୍ଣ ଓ ଏଥିରେ ମୈଥିଳୀ, ବ୍ରଜଭାଷା ଓ ବଙ୍ଗଳା ଶବ୍ଦାବଳୀର ସଂଯୋଜନା ଦେଖିବାକୁ ମିଳେ । ଦୃଷ୍ଟାନ୍ତସ୍ୱରୂପ ଏହି ବଙ୍ଗଳା ଗୀତଟି ଏଠାରେ ଉଲ୍ଲେଖନୀୟ ।

'ସଭ ସଖାଗଣ କୃଷ୍ଣେ ବଲୟେ ବଚନ
ସ୍ନାହାନ ବାଡ଼ାଅ ମୋର ମିଲବ ଅଖନ ।

ସୁବେଶ ମନ୍ଦିରେ ବଜେ ହରି ହଳଧର
ଗୋପାଳ ଚଲେନ ଘରେ ସ୍ନାହାନେ ତତ୍ପର ।

ନିତ୍ୟକର୍ମ ସାରି ସଭେ ଭେଟଲ ମୋହନ
ଚନ୍ଦନ ଯୋଗାଚ୍ଛେ କେହ ଦେଖାଏ ଦର୍ପନ ।

ମଲୟ କୁସୁମ ମଧୁ ଶ୍ରୀ ଅଙ୍ଗେ ମଣ୍ଡଲ
ରାମାନନ୍ଦ ଶାନ୍ତ ରୂପ ଆନନ୍ଦେ ବୁଡ଼ଲ ।'

ବ୍ରଜବୋଲି ଭାଷାରେ ରଚିତ ତାହାଙ୍କର ଗୋଟିଏ ଗୀତ ଚରିତାମୃତରେ ଲିପିବଦ୍ଧ । ଗୀତଟି ବୈଷ୍ଣବ ସମାଜରେ ସୁପରିଚିତ ତଥା ସୁପ୍ରସିଦ୍ଧ । ଗୀତଟି ହେଉଛି···

'ପହିଲହି ରାଗ ନୟନ ଭଙ୍ଗ ଭେଲ
ଅନୁଦିନ ବାଢ଼ଲ ଅବଧି ନାଗେଲ ।

ନା ସୋ ରମଣ ନା ହମ ରମଣୀ
ଦୁହୁଁ ମନ ମନୋଭବ ପେଷଲ ଜାନି ।

ଏ ସଖୀ ସେ ସବ ପ୍ରେମ କହାନି
କାନୁ ଠାମେ କହବି ବିଛୁରହି ଜାନି ।

ନାଖୋଜଲୁ ଦୂତୀ ନା ଖୋଜଲୁ ଆନ
ଦୁହୁଁଙ୍କ ମିଲନେ ମଧ୍ୟତ ପଞ୍ଚବାଣ ।

ଅବ ସୋ ବିରାଗେ ତୁହୁ ଭେଲି ଦୂତି
ସୁପୁରୁଖ ପ୍ରେମିକ ଐଛନ ରୀତି ।
ବର୍ଦ୍ଧନ ରୁଦ୍ର ନରାଧିପ ମାନ
ରାମାନନ୍ଦ ରାୟ କବି ଭାଣ ।'

ଗୀତଟିରେ ପୂର୍ବରାଗରୁ ଆରମ୍ଭ କରି ମିଳନ ପର୍ଯ୍ୟନ୍ତ ସମସ୍ତ ଭାବ ଓ ଅଦ୍ୱୈତରେ ଦ୍ୱୈତତତ୍ତ୍ୱର ସମ୍ମିଳନ ପ୍ରସଙ୍ଗଟି ଚମତ୍କାର ଭାବେ ଅଭିବ୍ୟକ୍ତ । ସଖୀ ପ୍ରତି ଶ୍ରୀରାଧାଙ୍କ ଉକ୍ତି ଛଳରେ ଏହା କଥିତ । ଗୀତଟିର ଓଡ଼ିଆ ପଦ୍ୟରୂପ ହେଉଛି:···

ପହିଲେ ଜନ୍ମିଲା ରାଗ ନୟନ ମିଶିଲା
ଦିନୁଦିନ ବଢ଼ିଲା ତା' ଅନ୍ତ ନ ମିଳିଲା ।

ସେ ନୁହେଁ ରମଣ ମୋର ମୁଁ ନୁହେଁ ରମଣୀ
ମନୋଭବ ପିଷ୍ଟିକଲା ଦୁଇ ମନ ଆଣି ।

ଆଗୋ ସଖୀ ! ସେଇ ସବୁ ପ୍ରେମର କାହାଣୀ
କାହ୍ନୁ ଆଗେ କହିବୁଟି ନ ଭୁଲିବୁ ଜାଣି ।

ନ ଖୋଜିଲୁ ଦୂତୀ ଆଉ ନ ଖୋଜିଲୁ କାରେ
ମନୋଜ ମଧ୍ୟସ୍ଥ ହେଲା ଆମ ମିଳନରେ ।

ଏବେ ସେ ବିରାଗଯୁକ୍ତ ତୁ ହେଉଛୁ ଦୂତୀ
ସୁପୁରୁଷ ପ୍ରେମିକର ଏସନଟି ରୀତି ।

ମାନନ୍ତି ଏହା ବର୍ଦ୍ଧନରୁଦ୍ର ନରପତି
ରାମାନନ୍ଦ ରାୟ ଏହା ଗୀତରେ ଭଣନ୍ତି ।

ଚୈତନ୍ୟଙ୍କ ଜୀବନର ଶ୍ରୀକ୍ଷେତ୍ର ବାସକାଳୀନ ଶେଷ ବାରବର୍ଷ 'ଗମ୍ଭୀର ଲୀଳା' ନାମରେ ଆଖ୍ୟାତ । ଏହି ସମୟରେ ସେ କାଶୀ ମିଶ୍ରଙ୍କ ଗୃହର ଗମ୍ଭୀର ଘର ଭିତରେ ମୁଖ୍ୟତଃ କୃଷ୍ଣ ବିରହ ଜର୍ଜରିତ ଦିବ୍ୟୋନ୍ମାଦ ଅବସ୍ଥାରେ ଅବସ୍ଥାନ କରୁଥିଲେ । ତାଙ୍କର ଏତାଦୃଶ ଭାବତନ୍ମୟ ଜୀବନର ପ୍ରଧାନ ସଙ୍ଗୀ ଥିଲେ ରାୟ ରାମାନନ୍ଦ ଓ ସ୍ୱରୂପ ଦାମୋଦର ।

ରାମାନନ୍ଦ ଏହି ସମୟରେ ତାଙ୍କୁ ପ୍ରବୋଧ ଦେଉଥିଲେ ଓ ଭାଗବତ ଅଥବା ସ୍ୱରଚିତ ନାଟକର ଶ୍ଲୋକ ସବୁ ପଢ଼ି ଶୁଣାଉଥିଲେ ।

'ରାମାନନ୍ଦେର କୃଷ୍ଣକଥା ସ୍ୱରୂପେର ଗାନ
ବିରହ ବେଦନାୟ ପ୍ରଭୁର ରାଖୟ ପରାନ'

ରାମାନନ୍ଦ 'ବିବିଧ ଭାଷା ସଙ୍କଳନ, ଖଣ୍ଡଶ୍ଲୋକ, ଗୌର ପଦାବଳୀ, ଗୌରପଦ ତରଙ୍ଗିଣୀ ପ୍ରଭୃତି ଅନେକ ଗ୍ରନ୍ଥ ରଚନା କରିଥିବା ବିଷୟ ଜଗବନ୍ଧୁ ସିଂହ 'ପ୍ରାଚୀନ ଉତ୍କଳ'ରୁ ଜଣାଯାଏ; ମାତ୍ର ତାହାଙ୍କ ପ୍ରଣୀତ ଗ୍ରନ୍ଥ ସମୂହ ଏ ପର୍ଯ୍ୟନ୍ତ ସଂଗୃହୀତ ହୋଇପାରିନାହିଁ । ତାହାଙ୍କ ପାରିବାରିକ ଜୀବନ ଓ ତିରୋଧାନ ସମ୍ପର୍କରେ ମଧ୍ୟ ଚରିତାମୃତରୁ କିଛି ଜଣାଯାଏ ନାହିଁ । ଶ୍ରୀ ଚୈତନ୍ୟଙ୍କ ତିରୋଧାନର ପରବର୍ଷ ଖ୍ରୀ: ୧୫୩୪ରେ ରାମାନନ୍ଦ ସ୍ୱର୍ଗାରୋହଣ କରିଥିଲେ ବୋଲି ନରେନ୍ଦ୍ରନାଥ ବସୁ ନିର୍ଦ୍ଧାରଣ କରି ଅଛନ୍ତି । ଉଦାରପନ୍ଥୀ ରାମାନନ୍ଦ ଯେ ଓଡ଼ିଶାରେ ଗୌଡ଼ୀୟ ଓ ତୈଲଙ୍ଗୀୟ ସାଂସ୍କୃତିକ ପ୍ରବାହର ସମନ୍ୱୟ ସମ୍ପାଦନରେ ଏକଦା ନେତୃତ୍ୱ ଗ୍ରହଣ କରିଥିଲେ ଏ ବିଷୟରେ ସନ୍ଦେହର ଅବକାଶ ନାହିଁ । ରକ୍ଷଣଶୀଳ ଓଡ଼ିଶାର ସାମାଜିକ ପରିବେଶରେ ସମ୍ଭବତଃ ତାହା ଆଶାନୁରୂପ ସ୍ୱୀକୃତି ଲାଭ କରି ପାରି ନଥିଲା । ଅଭିଜ୍ଞ ପ୍ରଶାସକ, ଚୈତନ୍ୟଙ୍କ ବନ୍ଧୁ ଓ ଉପଦେଷ୍ଟା ମହାନ ଗୁଣୀ ଓ ସାଧକ, କବି ଓ କଳାବିତ୍ ରାମାନନ୍ଦଙ୍କ ଜୀବନ ଓ କୃତି ଏହି ଦୃଷ୍ଟିରୁ ପୁନଃ ଅନୁସନ୍ଧାନ ସାପେକ୍ଷ ।

# ମିର୍ଜା ଗାଲିବ

ଉର୍ଦ୍ଦୁ ସାହିତ୍ୟର ବରିଷ୍ଠ କବିମାନଙ୍କ ମଧ୍ୟରୁ ମିର୍ଜା ଗାଲିବ ଅନ୍ୟତମ । ପାର୍ସୀ ଭାଷାରେ ସେ ଅନେକ ଗ୍ରନ୍ଥ ରଚନା କରିଥିଲେହେଁ ତାହାଙ୍କୁ ଉର୍ଦ୍ଦୁ ଭାଷାର ସର୍ବଶ୍ରେଷ୍ଠ କବିର ଗୌରବ ପ୍ରଦାନ କରା-ଯାଇଥାଏ । ଉର୍ଦ୍ଦୁ ଗଦ୍ୟ ଓ ପଦ୍ୟ ଉଭୟ କ୍ଷେତ୍ରରେ ତାହାଙ୍କର କୃତିତ୍ୱ ଥିଲା ଅପରିସୀମ । ବିଗତ ଶତାବ୍ଦୀରେ ପ୍ରଣୀତ ତାହାଙ୍କ ରଚନାବଳୀ ଉର୍ଦ୍ଦୁ ସାହିତ୍ୟ କ୍ଷେତ୍ରକୁ ଯେପରି ପ୍ରଭାବିତ କରିଅଛି, ତାହାର ଦୃଷ୍ଟାନ୍ତର ନାହିଁ ।

**ଜୀବନ ଯାତ୍ରା—**

ଗାଲିବଙ୍କ ଜୀବନ ବୃତ୍ତାନ୍ତ ଅତୀବ ଘାତ ପ୍ରତିଘାତ ସଂକୁଳ ଓ ରୋମାଞ୍ଚକର । ଯେପରି ଦୟନୀୟ ସେହିପରି ଗୌରବସଂପନ୍ନ । ତାହଙ୍କ ପ୍ରକୃତ ନାମ ହେଉଛି ଆସାଦୁଲ୍ଲା ବେଗ୍ ଖାନ୍ । ଗାଲିବ ଥିଲା ତାହାଙ୍କ ରଚନାରେ ବ୍ୟବହୃତ ଛଦ୍ମନାମ; ମାତ୍ର ଏହି ଗାଲିବ ନାମରେ ହିଁ ସେ ସର୍ବତ୍ର ପରିଚିତ । ଏକ ସମ୍ଭ୍ରାନ୍ତ ସୈନିକ ପରିବାରରେ ଖ୍ରୀ: ୧୭୯୭ରେ ଆଗ୍ରା ସହରରେ ସେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କ ପିତାଙ୍କ ନାମ ଅବଦୁଲ୍ଲା ବେଗ୍ ଖାନ । ସେ ଥିଲେ ଖୁବ୍ ସାହସୀ ଓ ଉଚ୍ଚାଭିଳାଷୀ । ସୈନିକ ଓ ଅଶ୍ୱାରୋହୀ ସେନାର ଅଧ୍ୟକ୍ଷଭାବେ ସେ ବିଭିନ୍ନ ଦେଶୀୟରାଜ୍ୟମାନଙ୍କରେ ବେଶ୍ କୃତିତ୍ୱ ଦର୍ଶାଇଥିଲେ; ମାତ୍ର ଏକ ବିଦ୍ରୋହ ଦମନ କରିବାକୁ ଯାଇ ଅଳ୍ପବୟସରେ ସେ ମୃତ୍ୟୁ ବରଣ କଲେ । ସେତେବେଳକୁ ଗାଲିବଙ୍କ ବୟସ ମାତ୍ର ପାଞ୍ଚବର୍ଷ । ଏହି ପରିସ୍ଥିତିରେ ଗାଲିବଙ୍କ ପରିବାରର ଦାୟିତ୍ୱ ବହନ କରିଥିଲେ ତାହାଙ୍କ ପିତୃବ୍ୟ ନସରୁଲ୍ଲା ବେଗ୍ ଖାଁ ।

ଦକ୍ଷ ପ୍ରଶାସକ ଓ ସେନାଧକ୍ଷ ଭାବେ ନସରୁଲ୍ଲା ବେଗ୍ ମଧ୍ୟ ଖ୍ୟାତି ଅର୍ଜନ କରିଥିଲେ । ସେନାଧକ୍ଷ ଭାବେ ଇଂରେଜମାନଙ୍କୁ ସାହାଯ୍ୟ କରିଥିବାରୁ ସେ ଇଂରେଜମାନଙ୍କଠାରୁ ନୂଇଟି ଜିଲ୍ଲା ଉପଢ଼ୌକନ ସ୍ୱରୂପ ଲାଭ କରିଥିଲେ; ମାତ୍ର ଦୁର୍ଭାଗ୍ୟବଶତଃ ହାତୀ ଉପରୁ ଖସି ପଡ଼ିବା ଫଳରେ ସେ ମଧ୍ୟ ଅକାଳରେ ମୃତ୍ୟୁ ବରଣ କଲେ । ସେତେବେଳକୁ ଗାଲିବଙ୍କୁ ମାତ୍ର ସାତ ବର୍ଷ ବୟସ । ଏପରି ବିପନ୍ନ ଅବସ୍ଥାରେ ନସରୁଲ୍ଲଙ୍କ ଶ୍ୟାଳକ ଅହମ୍ମଦ ବକ୍ସ ଖାନ ଏହି ଦୁଇଟି ପରିବାରର ପ୍ରଭୂତ ସହାୟତା କରିଥିଲେ । ଅହମ୍ମଦ ବକ୍ସ ଥିଲେ ଆଗ୍ରାର ଜନୈକ ନବାବ । ଇଂରେଜ ଶାସକବର୍ଗ ତାଙ୍କୁ ଖୁବ୍ ବିଶ୍ୱାସ କରୁଥିଲେ । ତାହାଙ୍କ ପ୍ରଚେଷ୍ଟା ଫଳରେ ନସରୁଲ୍ଲଙ୍କ ପରିବାର ଇଂରେଜ ସରକାରଙ୍କଠାରୁ ବାର୍ଷିକ ଦଶହଜାର ଟଙ୍କା ଭତ୍ତା ପାଇବାର ବ୍ୟବସ୍ଥା ହୋଇଗଲା । ଏହି ଟଙ୍କାରୁ ଗାଲିବଙ୍କୁ ବାର୍ଷିକ ଟ ୭୫୦ ଭତ୍ତା ମିଳୁଥିଲା । ଗାଲିବଙ୍କ ମାତା ମଧ୍ୟ ଆଗ୍ରାର ଏକ ଧନାଢ଼୍ୟ ଓ ସମ୍ଭ୍ରାନ୍ତ ପରିବାରର କନ୍ୟା ଥିଲେ । ସେହି ଭାବରେ ମାତୁଳାଳୟରୁ ମଧ୍ୟ ଗାଲିବ ଆବଶ୍ୟକ ଆର୍ଥିକ ସାହାଯ୍ୟ ପାଉଥିଲେ ।

ଗାଲିବ ଥିଲେ ଖୁବ୍ ବୁଦ୍ଧିମାନ ଓ ତୀକ୍ଷ୍ଣ ସ୍ମୃତିସଂପନ୍ନ । ଶୈଶବ ଓ କୈଶୋରରେ ଆଗ୍ରାର ଏକ ମାଦ୍ରାସା (ବିଦ୍ୟାଳୟ)ରେ ସେ ପାର୍ଶୀ ଭାଷା ଅଧ୍ୟୟନ କରିଥିଲେ । ଏତଦ୍‌ବ୍ୟତୀତ ଉକ୍ତ ଭାଷାରେ ଅଧିକ ବ୍ୟୁତ୍ପନ୍ନ ହେବା ଉଦ୍ଦେଶ୍ୟରେ ଅବଦୁସ୍ ସମାଦ ନାମକ ଜନୈକ ପାର୍ଶୀ ପଣ୍ଡିତଙ୍କୁ ନିଜ ଘରେ ସେ ଦୁଇବର୍ଷ ରଖି ତାଙ୍କଠାରୁ ପାର୍ଶୀ ଭାଷା ଶିକ୍ଷା କରିଥିଲେ ।

ମାତ୍ର ତେରବର୍ଷ ବୟସରେ ଦିଲ୍ଲୀର ଏକ ସମ୍ଭ୍ରାନ୍ତ ପରିବାରରେ ଗାଲିବଙ୍କର ବିବାହ ହୋଇଥିଲା । ବିବାହର ତିନିବର୍ଷ ପରେ ସମ୍ଭବତଃ ଶ୍ୱଶୁରାଳୟର ପ୍ରରୋଚନାରେ ସେ ଆଗ୍ରା ପରିତ୍ୟାଗ କରି ଦିଲ୍ଲୀକୁ ଆସି ସେଠାରେ ସ୍ଥାୟୀ ଭାବେ ରହିଲେ । ଏହାପରେ ଆପଣା ପରିବାରର ଦାୟିତ୍ୱ ଗାଲିବଙ୍କୁ ବହନ କରିବାକୁ ପଡ଼ିଲା; ମାତ୍ର ଏହି ବିଷୟରେ ଗାଲିବ ବିଶେଷ ମନୋଯୋଗୀ ଥିବା ଜଣାଯାଏ ନାହିଁ । ତତ୍‌କାଳୀନ ସମ୍ଭ୍ରାନ୍ତ ପରିବାରସୁଲଭ ବିଳାସ ବ୍ୟସନ ପ୍ରତି ଗାଲିବ ଆକୃଷ୍ଟ ହେବା ସ୍ୱାଭାବିକ; ମାତ୍ର ସେଥିପାଇଁ ତାଙ୍କର ସମ୍ବଳ ନ ଥିଲା । ତା' ଛଡ଼ା ସେ ଥିଲେ ବେହିସାବୀ ଓ ବଦଖର୍ଚ୍ଚୀ । ଏଣୁ ସେ ସବଦା ଅର୍ଥାଭାବଗ୍ରସ୍ତ ହେଉଥିଲେ ।

ଇତ୍ୟବସରରେ ତାହାଙ୍କ ପାରିବାରିକ ପେନସନ ବା ଭତ୍ତା ପାଇବାରେ ଅନ୍ତରାୟ ସୃଷ୍ଟି ହେଲା । ଏହାର ନବୀକରଣ ଲାଗି ସେ ଖ୍ରୀ ୧୮୨୭ରେ କଲିକତା ଯାତ୍ରା କଲେ । ସେତେବେଳେ କଲିକତା ଥିଲା ଇଂରେଜମାନଙ୍କର ସର୍ବୋଚ୍ଚ ଶାସନ କେନ୍ଦ୍ର ଓ ବଡ଼ଲାଳୟ । ଗାଲିବ ପ୍ରାୟ ଏକବର୍ଷ କଲିକତାରେ ରହିଥିଲେ । ଏହି ସମୟ ମଧ୍ୟରେ ସେ କଲିକତାର ଉର୍ଦ୍ଦୁ କବିମାନଙ୍କ ସମ୍ପର୍କରେ ଆସିବାର ତଥା କଲିକତା ଫୋର୍ଟ ଉଇଲିଅମ୍ କଲେଜ ପକ୍ଷରୁ ପ୍ରକାଶିତ ଉର୍ଦ୍ଦୁ ପୁସ୍ତକାବଳୀ ପାଠ କରିବାର ସୁଯୋଗ ଲାଭ କରିଥିଲେ; ମାତ୍ର ଯେଉଁ ଉଦ୍ଦେଶ୍ୟରେ ସେ କଲିକତା ଯାଇଥିଲେ, ତାହାର କୌଣସି ନିଷ୍ପତ୍ତି ହୋଇପାରି ନଥିଲା ।

ପାରିବାରିକ ପେନସନ ସମ୍ପର୍କୀୟ ତାହାଙ୍କ ଆବେଦନ ଓ ତାହାର ବିଚାର ଗାଲିବଙ୍କ ଜୀବନର ଏକ ବ୍ୟର୍ଥ ପ୍ରଚେଷ୍ଟାର କରୁଣ ଅଧ୍ୟାୟ । ଏହି ବିଚାର ପ୍ରାୟ ଚଉଦ ବର୍ଷଧରି ଚାଲିଥିଲା ଓ ଏଥିପାଇଁ ଗାଲିବଙ୍କୁ ବ୍ୟସ୍ତ ବିବ୍ରତ ହେବା ସଙ୍ଗେ ସଙ୍ଗେ ପ୍ରଚୁର ଆର୍ଥିକ କ୍ଷତି ମଧ୍ୟ ସହିବାକୁ ପଡ଼ିଥିଲା । ସେ ଋଣଗ୍ରସ୍ତ ହେବାର ଏହା ମଧ୍ୟ ମୁଖ୍ୟ କାରଣ । ଏହି ସମୟ ମଧ୍ୟରେ ସେ ମଦ୍ୟପାନ ଓ ଦ୍ୟୁତ କ୍ରୀଡ଼ାରେ ମଧ୍ୟ ଅଭ୍ୟସ୍ତ ହୋଇ ପଡ଼ିଥିଲେ । ସରକାରୀ ନିଷେଧ ସତ୍ତ୍ୱେ ନିଜ ଘରେ ଜୁଆ ଖେଳରେ ଲିପ୍ତ ଥିବାଯୋଗୁ ତାଙ୍କୁ ଅର୍ଥଦଣ୍ଡ ଓ କାରାଦଣ୍ଡ ମଧ୍ୟ ଭୋଗିବାକୁ ପଡ଼ିଥିଲା । ତଥାପି ଏହି ସମୟରେ ବହୁ ବନ୍ଧୁଙ୍କ ଅକୃତ୍ରିମ ସାହାଯ୍ୟ ଓ ସହଯୋଗ ମଧ୍ୟ ସେ ପାଇଥିଲେ । ଏହିପରି ଜନୈକ ବନ୍ଧୁଙ୍କ ପ୍ରଚେଷ୍ଟାରେ ସେ ଖ୍ରୀ ୧୮୫୦ରେ ଦିଲ୍ଲୀର ତତ୍‌କାଳୀନ ସାହି ଦରବାରରେ ଇତିହାସ ଲେଖକ ଭାବେ ନିଯୁକ୍ତି ପାଇପାରିଥିଲେ ।

ସେତେବେଳକୁ ଦିଲ୍ଲୀର ରାଜଶକ୍ତି ସମ୍ପୂର୍ଣ୍ଣ ଦୁର୍ବଳ, ଅକ୍ଷମ ଓ ଶକ୍ତିହୀନ । ମୋଗଲ ବାଦଶା ଦ୍ୱିତୀୟ ବାହାଦୁର ଶାହ ନାମକୁ ମାତ୍ର ଭାରତର ସମ୍ରାଟ । ତାହାଙ୍କ ପ୍ରଭୁତ୍ୱ କେବଳ ଦିଲ୍ଲୀର ପରିସୀମା ମଧ୍ୟରେହିଁ ଆବଦ୍ଧ ଥିଲା । ଯାହାହେଉ, ଦିଲ୍ଲୀ ଦରବାରରେ ନିଯୁକ୍ତି ଓ ରାଜକୀୟ ସମ୍ପର୍କ ଫଳରେ ଗାଲିବଙ୍କ ଜୀବନ ଯାତ୍ରା ବହୁ ପରିମାଣରେ ସ୍ୱଚ୍ଛଳ ଓ ସ୍ୱଚ୍ଛନ୍ଦ ହୋଇପାରିଥିଲା; ମାତ୍ର ଏହା ମଧ୍ୟ ଥିଲା ଅଚିରସ୍ଥାୟୀ । ଖ୍ରୀ ୧୮୫୭

ମସିହାରେ ସିପାହୀ ବିଦ୍ରୋହ ବା ଭାରତର ପ୍ରଥମ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହୋଇଗଲା । ଏହି ବିକ୍ଷୁବ୍ଧ ପରିସ୍ଥିତିରେ ଦିଲ୍ଲୀ ହେଲା ବିଦ୍ରୋହର ମୁଖ୍ୟ ପୀଠ । ୮୨ ବର୍ଷ ବୟସ୍କ ବୃଦ୍ଧ ବାଦଶା ୨ୟ ବାହାଦୁର ସାହା ଅନିଚ୍ଛାସତ୍ତ୍ୱେ ବିଦ୍ରୋହୀମାନଙ୍କ ନେତୃତ୍ୱ ଗ୍ରହଣ ଅନୁରୋଧକୁ ସ୍ୱୀକାର କଲେ; ମାତ୍ର ଅଳ୍ପ କେତେମାସ ମଧ୍ୟରେ ବ୍ରିଟିଶମାନଙ୍କଦ୍ୱାରା ଏହି ବିଦ୍ରୋହ ଅବଦମିତ ହେଲା ଓ ଦିଲ୍ଲୀ ହେଲା ବ୍ରିଟିଶମାନଙ୍କର ଅଧିକୃତ । ଶେଷ ମୋଗଲ ସମ୍ରାଟ ବନ୍ଦୀଭାବେ କଲିକତାକୁ ପ୍ରେରିତ ହେଲେ ।

ରାଜଶକ୍ତିର ଏହି ଆକସ୍ମିକ ପରିବର୍ତ୍ତନ ଫଳରେ ଗାଲିବ ବ୍ୟକ୍ତିଗତଭାବେ ବହୁ ଦ୍ୱନ୍ଦ୍ୱ ଓ ଅସୁବିଧାର ସମ୍ମୁଖୀନ ହୋଇଥିଲେ । ମୋଗଲ ଦରବାରର ଇତିହାସ ଲେଖା ଗୁଜରତ ଗଲା; ତା ଛଡ଼ା ମୋଗଲ ଦରବାରରେ ବାହାଦୁର ସାହାଙ୍କ ସମର୍ଥକ ଥିବା ଅଭିଯୋଗରେ ଇଂରେଜ ସରକାର ତାଙ୍କୁ ଦେଉଥିବା ପେନସେନ ମଧ୍ୟ ବନ୍ଦ କରିଦେଲେ । ଗାଲିବଙ୍କ ଦୁର୍ଭାଗ୍ୟ. ଜୀବନସାରା ସେ ଯେଉଁ ଡାଳକୁ ଆଶ୍ରା କରିଛନ୍ତି ଦୁର୍ଭାଗ୍ୟକୁ ତାହା ଭାଙ୍ଗି ଯାଇଛି । ଆପଣାର ଆତ୍ମାଭିମାନ ଦାମ୍ଭିକତା ଓ ଜିଦ୍‌ଖୋର୍ ପ୍ରକୃତି ଯୋଗୁ ମଧ୍ୟ ସେ ଜୀବନରେ ଦୁର୍ଯୋଗର ସମ୍ମୁଖୀନ ହୋଇଛନ୍ତି ।

ତଥାପି ଗାଲିବ ଥିଲେ ଚତୁର ଓ ସ୍ଥିତଧୀ । ଇଂରେଜମାନଙ୍କ ବିଶ୍ୱାସ— ଭାଜନ ହେବାଲାଗି ସେ ଉଦ୍ୟମ କରିବାକୁ ଲାଗିଲେ । ବନ୍ଧୁମାନଙ୍କ ପ୍ରଚେଷ୍ଟା ଫଳରେ ଖ୍ରୀ ୧୮୬୦ରେ ଇଂରେଜ ସରକାର ତାଙ୍କୁ ପୂର୍ବ ପ୍ରଦତ୍ତ ପେନ୍‌ସେନ ଦେବାକୁ ସ୍ୱୀକୃତି ଦେଲେ । ବିଶିଷ୍ଟ ବ୍ୟକ୍ତି ଓ କବି ଭାବରେ ଇଂରେଜ ଦରବାରରେ ଯୋଗଦେବାର . ଅଧିକାର ମଧ୍ୟ ଖ୍ରୀ: ୧୮୬୩ରେ ତାଙ୍କୁ ମିଳିଥିଲା । ଅବଶ୍ୟ ଏହା ପୂର୍ବରୁ ରାମପୁରର ନବାବ ଗାଲିବଙ୍କୁ ତାହାଙ୍କ ଦରବାରର କବିଭାବେ ଗ୍ରହଣ କରିଥିଲେ ଓ ତାଙ୍କ ଲାଗି ମାସିକ ଟ୧୦୦ ବୃତ୍ତିର ବ୍ୟବସ୍ଥା କରିଦେଇଥିଲେ । ଏହା ଦ୍ୱାରା ଗାଲିବଙ୍କ ଆର୍ଥିକ ଦୁର୍ଗତି ଯତ୍‌ସାମାନ୍ୟ ଦୂରହୋଇ ପାରିଥିଲା ।

ଗାଲିବ ଥିଲେ ସୁଶ୍ରୀ ଓ ସ୍ୱାସ୍ଥ୍ୟବାନ । ତରୁଣ ବୟସରେ ଏକ ପ୍ରଣୟିନୀର ଅକାଳ ବିୟୋଗ ତାଙ୍କ ଜୀବନରେ କାରୁଣ୍ୟର ଏକ ବିଷାଦ

ରାଗିଣୀ ସୃଷ୍ଟି କରିଥିଲା । ତାଙ୍କର ଦାମ୍ପତ୍ୟ ଜୀବନ କିପରି ଥିଲା ସେ ବିଷୟରେ ସଠିକ ଭାବେ କିଛି ଜାଣି ହୁଏନାହିଁ । ସମ୍ଭବତଃ ଏହା ସୁଖମୟ ନଥିଲା । ସେ ସାତଗୋଟି ସନ୍ତାନର ଜନକ ହୋଇଥିଲେହେଁ, ତାଙ୍କର କୌଣସି ଗୋଟିଏ ସନ୍ତାନ ଦେଢ଼ବର୍ଷରୁ ଅଧିକ ଜୀବିତ ରହି ନଥିଲେ । ଜନୈକ ଆତ୍ମୀୟର ସନ୍ତାନ ଜୈନୁଲ ଆବେଦିନାଙ୍କୁ ସେ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । ଆବେଦିନ ଥିଲେ ପ୍ରତିଭାବାନ ଓ ସୁକବି । ମାତ୍ର ଅତି ଅଳ୍ପ ବୟସରେ ଖ୍ରୀ: ୧୮୫୨ରେ ଯକ୍ଷ୍ମାରୋଗରେ ତାଙ୍କର ଅକାଳ ମୃତ୍ୟୁ ହୋଇଥିଲା । ଗାଲିବ ଦମ୍ପତି ଆବେଦିନଙ୍କ ଦୁଇଟି ଶିଶୁପୁତ୍ର ପାଳନର ଦାୟିତ୍ୱ ବହନ କରିଥିଲେ । ଏଇ ନାତି ଦୁଇଟି ହିଁ ଥିଲେ ବାର୍ଦ୍ଧକ୍ୟରେ ଗାଲିବଙ୍କ ସାଥୀ ।

ଖ୍ରୀ ୧୮୬୫ରେ ରାମପୁରରେ ନୂତନ ନବାବଙ୍କ ରାଜ୍ୟାଭିଷେକ ଉପଲକ୍ଷେ ଗାଲିବ ରାମପୁର ଯାଇଥିଲେ । ସେଠାରୁ ଦିଲ୍ଲୀ ଫେରିବାବେଳେ ସେ ଗଙ୍ଗାନଦୀର ବନ୍ୟାପ୍ଲାବନ ଯୋଗୁଁ ଅତୀବ ବିପନ୍ନ ଓ ଅସୁସ୍ଥ ହୋଇ ପଡ଼ିଲେ । ଏହାପରେ ଗାଲିବଙ୍କ ସ୍ୱାସ୍ଥ୍ୟଭଙ୍ଗ ହେଲା । ପାରିବାରିକ ଦୁଶ୍ଚିନ୍ତା ଓ ଅଭାବ ମଧ୍ୟ ତାଙ୍କୁ ଜୀର୍ଣ୍ଣ ଅବସାଦଗ୍ରସ୍ତ କରିଦେଇଥିଲା । ବିଭିନ୍ନ ରୋଗରେ ଆକ୍ରାନ୍ତ ହୋଇ ସେ କ୍ରମେ ଅତୀବ ଦୁର୍ବଳ ହୋଇପଡ଼ିଲେ । ୧୮୬୯ ଫେବୃଆରୀ ତା ୧୪ରିଖ ଦିନ ସେ ସନ୍ନ୍ୟାସ ବା ମସ୍ତିଷ୍କ ରକ୍ତସ୍ରାବ ରୋଗରେ ଆକ୍ରାନ୍ତ ହୋଇ ସଂଜ୍ଞାହୀନ ହୋଇ ପଡ଼ିଲେ ଓ ତାହା ପରଦିନ ଶେଷ ନିଃଶ୍ୱାସ ତ୍ୟାଗକଲେ । ଦିଲ୍ଲୀର ନିଜାମୌଦ୍ଦିନ ଠାରେ ତାଙ୍କର ନଶ୍ୱର ଦେହକୁ ସମାଧିସ୍ଥ କରାଯାଇଥିଲା ।

**ସାହିତ୍ୟ ସାଧନା ଓ କୃତିତ୍ୱ :**

ଗାଲିବ ଥିଲେ ନୈସର୍ଗିକ କବି ପ୍ରତିଭାର ଅଧିକାରୀ । ଅତି ଶୈଶବରେ ଆଗ୍ରାର ମକ୍ତବ ବା ବିଦ୍ୟାଳୟରେ ପାର୍ଶୀ ଅଧ୍ୟୟନ କାଳରୁ ସେ କବିତା ବା ଶାୟରୀ ରଚନାରେ ବ୍ରତୀ ହୋଇଥିଲେ । ସର୍ବାଦୌ ସେ ପାର୍ଶୀ କବିମାନଙ୍କ ଆଦର୍ଶରେ ପାର୍ଶୀ ଭାଷାରେ କବିତା ରଚନାରେ ମନୋନିବେଶ କରିଥିଲେ । ପାର୍ଶୀ ଭାଷାରେ ପ୍ରବୀଣ ବୋଲି ତାଙ୍କର ବିଶେଷ

ଅଭିମାନ ଥିଲା, ମାତ୍ର ତାହାଙ୍କ ପାର୍ଶୀ କବିତା ସମୂହ ଆଶାନୁରୂପ ସମାଦର ଲାଭକରି ପାରି ନଥିଲା । ପରବର୍ତ୍ତୀ କାଳରେ ସେ ମୁଖ୍ୟତଃ ଉର୍ଦ୍ଦୁ ଭାଷାରେ ହିଁ କବିତା ରଚନାରେ ମନୋନିବେଶ କରିଥିଲେ ।

ଉର୍ଦ୍ଦୁ ଭାଷାକୁ ପାର୍ଶୀ ପ୍ରଭାବରୁ ମୁକ୍ତ କରିବାରେ ଗାଲିବଙ୍କ ଅବଦାନ ସର୍ବାଠାରୁ ଉଲ୍ଲେଖ ଯୋଗ୍ୟ । ଫୋର୍ଟ ଉଇଲିଅମ୍ କଲେଜ ପକ୍ଷରୁ ପ୍ରକାଶିତ ଉର୍ଦ୍ଦୁ ଗ୍ରନ୍ଥମାନଙ୍କରେ ନିୟୋଜିତ ସରଳ ଗଦ୍ୟଶୈଳୀ ତାହାଙ୍କ ଦୃଷ୍ଟିଭଙ୍ଗୀକୁ କେତେକ ପରିମାଣରେ ପ୍ରଭାବିତ କରିଥିଲା । ସେ କୃତ୍ରିମ ବାଗାଡ଼ମ୍ବରପୂର୍ଣ୍ଣ ଓ କଠିନ ଶବ୍ଦାବଳୀ ସମନ୍ୱିତ ରଚନା ରୀତି ପରିହାର ପୂର୍ବକ ସରଳ, ସହଜ ଭାଷାରେ ଭାବ ପ୍ରକାଶକୁ ଶ୍ରେୟସ୍କର ଓ ଆପଣାର ଆଦର୍ଶରୂପେ ଗ୍ରହଣ କରିନେଇଥିଲେ । ଗଜଲ୍ ଓ ଦିଓ୍ୱାନ ବ୍ୟତୀତ ଦୁଇ ଖଣ୍ଡରେ ବିଭକ୍ତ ତାହାଙ୍କ ପତ୍ରାବଳୀ-'ଉର୍ଦ୍ଦୁ-ଏ-ମୁଅଲା' ଓ 'ଉଦେହିନ୍ଦୀ' ଆଦର୍ଶ ସ୍ଥାନୀୟ ଉର୍ଦ୍ଦୁ ଗଦ୍ୟରୂପେ ପରିଗୃହୀତ ହୋଇଥାଏ ।

ଗାଲିବ ବହୁ ମର୍ସିଆ (ଶୋକ ଗୀତ), କସିଦା (ରେଜ ପ୍ରଶସ୍ତି), ଦିୱାନ (ପଦ୍ୟାବଳୀ) ପ୍ରଭୃତିର ରଚୟିତା ଭାବେ ସ୍ୱନାମଧନ୍ୟ । ଖ୍ରୀ: ୧୮୪୧ରେ ସର୍ବପ୍ରଥମେ ଉର୍ଦ୍ଦୁ ଭାଷାରେ ରଚିତ ଦୁଇପାଦ ବିଶିଷ୍ଟ ଏଗାର ଶହଟି ସାୟେରୀ ବା କବିତା ସଙ୍କଳିତ ତାହାଙ୍କ ଦିଓ୍ୱାନ ପ୍ରକାଶିତ ହୋଇଥିଲା । ଏହି ପୁସ୍ତକଟି ଉର୍ଦ୍ଦୁ କାବ୍ୟ କ୍ଷେତ୍ରରେ ଯେ ଯୁଗାନ୍ତର ଆନୟନ କରିଥିଲା ଏହା କହିବା ଅନାବଶ୍ୟକ । ପରବର୍ତ୍ତୀ କାଳରେ କବି ଆଉ ସାତ ଶହ ଦିଓ୍ୱାନ ରଚନା କରିଥିଲେ । ଦିଲ୍ଲୀ ବାଦସାହଙ୍କ ଦରବାରରେ କବି ତୈମୁର ରାଜବଂଶର ଇତିହାସ ପାର୍ଶୀ ଭାଷାରେ ରଚନା କରିବାକୁ ନିଯୁକ୍ତ ହୋଇଥିଲେ । ଏଥିପାଇଁ ତାଙ୍କୁ ଆବଶ୍ୟକ ଉପାଦାନ ଯୋଗାଇ ଦେବାର ବ୍ୟବସ୍ଥା ହୋଇଥିଲା । କବି ଏହାକୁ ଦୁଇଟି ଖଣ୍ଡରେ ସମାପ୍ତ କରିବାକୁ ମନସ୍ଥ କରିଥିଲେ । ଏହାର ପ୍ରଥମ ଖଣ୍ଡ 'ମିହରେନିମ୍ ରୁଜ୍' ନାମରେ କଲିକତାର ସାହି ମୁଦ୍ରଣାଳୟରୁ ମୁଦ୍ରିତହୋଇ ୧୯୫୪ ମସିହାରେ ପ୍ରକାଶ ପାଇଥିଲା । ଏଥିରେ ତୈମୁରଙ୍କ ଠାରୁ ହୁମାୟୁନଙ୍କ ପର୍ଯ୍ୟନ୍ତ ବାଦସାହାମାନଙ୍କ ରାଜତ୍ୱ କାଳୀନ ଘଟଣାବଳୀ ବର୍ଣ୍ଣିତ । ଦ୍ୱିତୀୟରେ ହୁମାୟୁନଙ୍କଠାରୁ ଦ୍ୱିତୀୟ ବାହାଦୁର ସାହଙ୍କ ପର୍ଯ୍ୟନ୍ତ

ବାଦସାହମାନଙ୍କ ଜୀବନ ବୃତ୍ତାନ୍ତ ବର୍ଣ୍ଣନା କରିବାକୁ ଗାଲିବ ପରିକଳ୍ପନା କରିଥିଲେ, ମାତ୍ର ଏହାର ପାଣ୍ଡୁଲିପି ଏପର୍ଯ୍ୟନ୍ତ ମିଳିନାହିଁ । ସମ୍ଭବତଃ ନାନା କାରଣରୁ କବି ଏହି ଗ୍ରନ୍ଥଟି ପ୍ରଣୟନ କରିବାକୁ ସମର୍ଥ ହୋଇନଥିଲେ ।

ରାମପୁର ନବାବଙ୍କ ଉଦ୍ଦେଶ୍ୟରେ କବି ଯେଉଁ ପ୍ରଶସ୍ତି ସୂଚକ କବିତାଟି ରଚନା କରିଥିଲେ ତଦ୍ଦ୍ୱାରା ତାଙ୍କର ବହୁ ଉପକାର ସାଧିତ ହୋଇଥିଲା । ଏହାଦ୍ୱାରା ସେ ରାମପୁର ଦରବାରରେ ସଭା କବିର ଆସନ ଲାଭ କରିବା ସଙ୍ଗେ ସଙ୍ଗେ ମାସିକ ଭତ୍ତା ପାଇବାକୁ ସମର୍ଥ ହୋଇଥିଲେ । ନାବାବ ମଧ୍ୟ କାବ୍ୟ ରଚନା ବିଷୟରେ କବିଙ୍କର ଶିଷ୍ୟ ବା ସାଗିର୍ଦ୍ଧ ହେବାକୁ ଇଚ୍ଛା ପ୍ରକାଶ କରିଥିଲେ ।

ସିପାହୀ ବିଦ୍ରୋହ ସମୟରେ କବି କର୍ମହୀନ ଭାବରେ ଦିଲ୍ଲୀରେ ହିଁ ଅବସ୍ଥାନ କରୁଥିଲେ । ସେତେବେଳେ ଦିଲ୍ଲୀରେ ଯେଉଁ ଅରାଜକତା, ବିଦ୍ରୋହ, ହତ୍ୟା, ଉତ୍ପୀଡ଼ନ ଓ ଅତ୍ୟାଚାର ସଂଘଟିତ ହୋଇଥିଲା ତାହାକୁ ନୋଟ୍ ବା ଟିପ୍‌ପଣୀ ଆକାରରେ ଲେଖି ରଖୁଥିଲେ । ବ୍ରିଟିଶ ରାଜଶକ୍ତିର ଦିଲ୍ଲୀ ବିଜୟର ବିବରଣୀକୁ ସେ ସୁସଜ୍ଜିତକରି ପାର୍ଶୀ ଭାଷାରେ 'ଦସ୍ତମ୍ବୁ' ନାମରେ ଏକ ପୁସ୍ତକ ପ୍ରଣୟନ କରିଥିଲେ । କବି ଇଚ୍ଛା ପୂର୍ବକ ଏଥିରେ ଆରବୀ ଶବ୍ଦକୁ ପରିହାର କରି ବହୁ ଅପ୍ରଚଳିତ ପାର୍ଶୀ ଶବ୍ଦ ବ୍ୟବହାର କରିଥିଲେ । ସମ୍ଭବତଃ ଏଥିପାଇଁ ଏହା ପାଠକ ସମାଜରେ ଆଦୃତ ହୋଇ ପାରିନଥିଲା । ବ୍ରିଟିଶ ରାଜକର୍ମଚାରୀଙ୍କ ପ୍ରୀତି ଭାଜନ ହେବା ଉଦ୍ଦେଶ୍ୟରେ କବି ଏହିଟି ରଚନା କରିଥିବା ସୁନିଶ୍ଚିତ । ସେଥିପାଇଁ ସେ ଦିଲ୍ଲୀରେ ବ୍ରିଟିଶ ଅତ୍ୟାଚାରର ଓ ନିପୀଡ଼ନର ବିବରଣୀକୁ ଏକ ପ୍ରକାର ପ୍ରାଧାନ୍ୟ ଦେଇ ନାହାନ୍ତି । ପରନ୍ତୁ ଭାରତୀୟ ସିପାହୀମାନଙ୍କ ଦୋଷ ତ୍ରୁଟିକୁ ହିଁ ଅଧିକ ଗୁରୁତ୍ୱ ଦେଇଅଛନ୍ତି; ମାତ୍ର ଯେଉଁ ଉଦ୍ଦେଶ୍ୟରେ କବି ଏହା ପ୍ରଣୟନ କରିଥିଲେ, ତାହା ସଫଳ ହୋଇପାରି ନଥିଲା । ଇଂରେଜ କର୍ତ୍ତୃପକ୍ଷ ଓ ରାଜକର୍ମଚାରୀବର୍ଗଙ୍କ ମନରେ ଏହା ବିଶେଷ ପ୍ରଭାବ ବିସ୍ତାର କରିବାକୁ ସମର୍ଥ ହୋଇନଥିଲା ।

ଆର୍ଥିକ ଦୁରବସ୍ଥା ଓ ସାଂସାରିକ ଅଶାନ୍ତି ସତ୍ତ୍ୱେ ଗାଲିବଙ୍କ ଲେଖନୀ ନୀରବ ରହିନଥିଲା । ଏପରିକି ସିପାହୀ ବିଦ୍ରୋହର ବିକ୍ଷୁବ୍ଧ

ପରିବେଶରେ ମଧ୍ୟ ସେ ଗ୍ରନ୍ଥ ଅଧ୍ୟୟନ ଓ ନିବନ୍ଧ ରଚନାରେ ଆତ୍ମନିଯୋଗ କରିଥିଲେ । ଏହି ସମୟରେହିଁ ସେ 'କାଣ୍ଡ ବୁରହନ' (ସତ୍ୟ ଲେଖକର ଦଲିଲ୍) ନାମକ ଏକ ଶବ୍ଦ କୋଷ ପ୍ରଣୟନ କରିଥିଲେ । ଖ୍ରୀ: ୧୮୬୨ରେ ଏହା ପ୍ରକାଶିତ ହୋଇଥିଲା । ବହୁ ପ୍ରଚଳିତ ପାର୍ଶୀ ଅଭିଧାନ 'ବୁରହାନ-ଏ-କାତ୍ତ' ପୁସ୍ତକର ବହୁ ତ୍ରୁଟି ଏଥିରେ ପ୍ରଦର୍ଶିତ ହୋଇଥିଲା । ଫଳରେ ଭାରତୀୟ ରକ୍ଷଣଶୀଳ ପାର୍ଶୀ ପଣ୍ଡିତଗଣ ଏହି ଅଭିଧାନର କଟୁ ସମାଲୋଚନା ଆରମ୍ଭ କରିଦେଲେ ଓ ଏହା ବହୁ କାଳବ୍ୟାପୀ ଏକ ବିବାଦୀୟ ବିଷୟ ହୋଇଥିଲା ।

ତତ୍କାଳୀନ ଇଂରେଜ କର୍ତ୍ତୃପକ୍ଷଙ୍କ ସୁଦୃଷ୍ଟି ଆକର୍ଷଣ କରିବାକୁ କବି ଯାହା କହିଥିଲେ ତାହାକୁ ସମର୍ଥନ କରାଯାଇ ପାରିବ ନାହିଁ । ସେହିପରି ବ୍ରିଟିଶ ରାଜତ୍ୱରେ ସେମାନଙ୍କ ସଭାକବି ହେବାକୁ କବିଙ୍କର ଅଭିଳାଷକୁ ମଧ୍ୟ ପ୍ରଶଂସନୀୟ ଗୁଣ କୁହାଯାଇ ନ ପାରେ; ମାତ୍ର ସେ ଯୁଗରେ ରାଜଦରବାରର ସ୍ୱୀକୃତି ଲାଭପାଇଁ କବିମାନେ ଉଦ୍ୟମ କରୁଥିଲେ । ଆପଣାର ଆର୍ଥିକ ଉନ୍ନତି ଓ ପ୍ରତିଷ୍ଠାଲାଭ ଉଦ୍ଦେଶ୍ୟରେ କବିଙ୍କୁ ଯେ ସେହି ପନ୍ଥା ବାଧ୍ୟ ହୋଇ ଗ୍ରହଣ କରିବାକୁ ପଡ଼ିଥିଲା ଏ ବିଷୟରେ ସନ୍ଦେହର ଅବକାଶ ନାହିଁ । ପ୍ରତିକୂଳ ପରିବେଶ ଯୋଗୁ କବିଙ୍କ ପକ୍ଷରେ ଏହି ପନ୍ଥା ମଧ୍ୟ ଆଶୁ ଫଳପ୍ରଦ ହୋଇ ପାରି ନଥିଲା ।

ସାହିତ୍ୟ ଜଗତରେ ଗାଲିବଙ୍କ ପ୍ରତିଷ୍ଠା ଓ ଜନପ୍ରିୟତା ଉତ୍ତରୋତ୍ତର ବୃଦ୍ଧି ଲାଭକରୁଥିଲା । ସମ୍ଭବତଃ କବି ଏ ବିଷୟରେ ଅବହିତ ହୋଇ ପାରିନଥିଲେ । ତାହାଙ୍କ ରଚିତ ଉର୍ଦ୍ଦୁ ଦିଓ୍ୱାନର ଦୁଇଟି ସଂସ୍କରଣ ୧୮୪୧ ଓ ୧୮୪୭ରେ ପ୍ରକାଶିତ ହେବାର ଅବ୍ୟବହିତ ପରେ ନିଃଶେଷିତ ହୋଇଯାଇଥିଲା । ସେହିପରି ୧୮୪୫ରେ ପ୍ରକାଶିତ ପାର୍ଶୀ ଦିଓ୍ୱାନ ମଧ୍ୟ ଅନୁରୂପ ସମାଦର ଲାଭ କରିଥିଲା । ଖ୍ରୀ: ୧୮୬୧ ଓ ୬୨ରେ ଉର୍ଦ୍ଦୁ ଦିଓ୍ୱାନର ପୁନଶ୍ଚ ଦୁଇଟି ସଂସ୍କରଣ ପ୍ରକାଶ ପାଇଥିଲା । ଖ୍ରୀ: ୧୮୬୩ ପାର୍ଶୀ ଦିଓ୍ୱାନ ମଧ୍ୟ ପୁନର୍ମୁଦ୍ରିତ ହୋଇଥିଲା । କବିଙ୍କ ଉର୍ଦ୍ଦୁ ଓ ପାର୍ଶୀ କବିତା ବା ଶାୟରୀ ପ୍ରତି ପାଠକ ସମାଜ ଯେ ଅକୁଣ୍ଠ ଶ୍ରଦ୍ଧା ବା ଅନୁରାଗ ପ୍ରଦର୍ଶନ କରୁଥିଲେ ଓ ତାହାଙ୍କ କବି ଖ୍ୟାତି ଯେ କ୍ରମଶଃ ବର୍ଦ୍ଧିତ ହେଉଥିଲା ତାହାଙ୍କ ପ୍ରଣୀତ ପୁସ୍ତକମାନଙ୍କର ଏକାଧିକ ସଂସ୍କରଣରୁ

ଜଣାଯାଏ; ମାତ୍ର ତିନବର୍ଷ ବ୍ୟବଧାନରେ ଏଗୁଡ଼ିକର ଚାରିଗୋଟି ସଂସ୍କରଣ ହୋଇଥିଲା ।

ଧର୍ମ ସଂସ୍କାରମୁକ୍ତ ଦୃଷ୍ଟିକୋଣ; ସମୁଚ୍ଚ ଭାବନା ଓ ଉନ୍ନତ କବିତ୍ୱଭାବର ସ୍ୱାକ୍ଷର ତାହାଙ୍କ କବିତାବଳୀରେ ପ୍ରତିଫଳିତ । ସେ ଥିଲେ ମୁଖ୍ୟତଃ ସୌନ୍ଦର୍ଯ୍ୟବାଦୀ । ଫାର୍ସୀ ଓ ଉର୍ଦ୍ଦୁ କାବ୍ୟ ପରମ୍ପରାର ଗୁରୁବାଦରେ ସମ୍ଭବତଃ ସେ ଆସ୍ଥାବାନ ନଥିଲେ । କୌଣସି କବିଗୁରୁ ବା ଓସ୍ତାଦଙ୍କ ନିକଟରେ ସେ ସାଗୀର୍ଦ ହୋଇନାହାନ୍ତି । ଆପଣାର ଜୀବନାନୁଭୂତି ନୈସର୍ଗିକଭାବେ ତାହାଙ୍କ ଲେଖନୀରେ କାବ୍ୟରୂପ ଲାଭ କରିଅଛି । ତାହାଙ୍କ ଗୀତି ରଚନା କପରି ବ୍ୟଞ୍ଜନାତ୍ମକ ତାହା ପଦଟିରୁ ଅନୁମେୟ ।

'ନଗୁଲେ ନଗ୍‌ମାହୁଁ ନ ପରଦ୍ ଏ ସାଜ
ମୈହୁଁ ଅପନୀ ଶିକସତ୍ କୀ ଆୱାଜ ।

(ମୁଁ ସଙ୍ଗୀତର ଫୁଲ ନୁହେଁ କିମ୍ବା ବାଦ୍ୟ ଯନ୍ତ୍ରର ପର୍ଦ୍ଦା ନୁହେଁ । ମୁଁ ହେଉଛି ମୋ ନିଜର ଭାଙ୍ଗିଯିବାର ଶବ୍ଦ )

ସେ ଯୁଗରେ ବ୍ରିଟିଶ ରାଜ ଦରବାରକୁ ଆମନ୍ତ୍ରିତ ହେବାକୁ ଭାରତୀୟମାନେ ଏକ ଗୌରବ ମନେ କରୁଥିଲେ । ସମ୍ଭ୍ରାନ୍ତ ବଂଶୀୟ ଭାବେ ଖ୍ରୀ: ୧୮୨୭ରେ ଗଭର୍ଣ୍ଣର ଜେନେରାଲ ଲର୍ଡ ବେଣ୍ଟିକଙ୍କ ଅମଳରେ ଗାଲିବଙ୍କୁ ପ୍ରଥମେ ଦରବାର ଆମନ୍ତ୍ରଣ ଲାଭର ସୁଯୋଗ ମିଳିଥିଲା । ପରବର୍ତ୍ତୀ କାଳରେ ସେ ଦରବାରୀ ଖେଲତ ମଧ୍ୟ ପାଇଥିଲେ । ଏହି ଖେଲାତ ଥିଲା ଚୂଡ଼ା ମାପର ସାତଗୋଟି ବିଭିନ୍ନ ଧରଣର ବସ୍ତ୍ର, ଗୋଟିଏ ମୂଲ୍ୟବାନ ମଣି ଖଚିତ ଶିରପୋତ ଓ ଗୋଟିଏ ମୋତିର ମାଳା । ଦରବାରରେ ଉପସ୍ଥିତ ହେବା ସମୟରେ ତାଙ୍କ ପକ୍ଷରୁ ରାଜ ପ୍ରତିନିଧିଙ୍କୁ କୌଣସି ନଜର ବା ଉପଢୌକନ ଦେବାକୁ ପଡ଼ୁ ନଥିଲା । ପରନ୍ତୁ ରାଜ ପ୍ରତିନିଧିଙ୍କ ପ୍ରଶସ୍ତି-ମୂଳକ ଏକ ଗଜଲ ତାଙ୍କୁ ପଢ଼ିବାକୁ ହେଉଥିଲା ।

ଗଜଲ, କସୀଦା, ମସନବୀ ପ୍ରଭୃତି ତିନିଗୋଟି କାବ୍ୟରୂପ ମାଧ୍ୟମରେ ଫାର୍ସୀ କବିତା ଅଭିବ୍ୟକ୍ତ । ଏହାକୁ ଅନୁକରଣକରି ଉର୍ଦ୍ଦୁରେ ଗଜଲ

ପ୍ରଭୃତି ପ୍ରଣୀତ ହୋଇଥିଲା । ଗଜଲ୍‌ର ବିଷୟ ଥିଲା ପ୍ରେମ, ସୁରା ଓ ରହସ୍ୟବାଦ । ଭାରତର ଉର୍ଦ୍ଦୁ କବିଗଣ ପ୍ରାଥମିକ ଯୁଗରେ ପାର୍ଶୀ ଅନୁରୂପ ଅବାସ୍ତବ ଓ କୃତ୍ରିମ ଭାବ ସଂକଳିତ କବିତା ରଚନା କରୁଥିଲେ । ଜୀବନର ବିବିଧ ବାସ୍ତବ ଅନୁଭୂତିର ଚିତ୍ର ସେଥିରେ ପ୍ରତିଫଳିତ ହୋଇ ନଥିଲା । ଉର୍ଦ୍ଦୁ କବିତାର ଏହି ପରିବେଶରେ କବି ଗାଲିବ ହିଁ ସର୍ବାଦୌ ବାସ୍ତବ ଚେତନା ଓ ଜୀବନର ସତ୍ୟାନୁଭୂତିକୁ ଉପଜୀବ୍ୟ କରି ଗଜଲ୍ ରଚନାରେ ବ୍ରତୀ ହୋଇଥିଲେ । ଉର୍ଦ୍ଦୁ କାବ୍ୟ କ୍ଷେତ୍ରରେ ଏହାକୁ ଏକ ବିଦ୍ରୋହର ସଙ୍କେତ ବା ଯୁଗାନ୍ତର କୁହାଯାଇପାରେ ।

ମନୁଷ୍ୟର ବାସ୍ତବ ଜୀବନ ଓ ତାହାର ବିବିଧ ସମସ୍ୟା ହିଁ ମୁଖ୍ୟତଃ ତାହାଙ୍କ କାବ୍ୟର ବିଷୟବସ୍ତୁ । ପ୍ରାତ୍ୟହିକ ଜୀବନାନୁଭୂତିରୁ ହିଁ ପ୍ରେରଣା ଲାଭକରି ସେ କବିତା ରଚନା କରିଯାଇଅଛନ୍ତି । ଏଣୁ ଅତୀତର ରହସ୍ୟ-ବାଦୀ କବିତା ଅପେକ୍ଷା ତାହାଙ୍କ କବିତା ପାଠକମାନଙ୍କ ପକ୍ଷେ ଅଧିକ ଆନନ୍ଦଦାୟକ ହୋଇଥିଲା । ଗାଲିବଙ୍କ କାବ୍ୟିକ କୃତିତ୍ୱ ସମ୍ପର୍କରେ ଅଭିମତ ଦେବାକୁ ଯାଇ ମାଲିକରାମ ଯଥାର୍ଥତଃ ଲେଖିଛନ୍ତି-"କାଳ୍ପନିକ ଓ ଭ୍ରମାତ୍ମକ ଲିଖନ ରୀତିରେ ନିରର୍ଥକତା ହୃଦୟଙ୍ଗମ କରି ଓ ଏହା ବିରୁଦ୍ଧରେ ଠିଆହୋଇ ଗାଲିବ ଉର୍ଦ୍ଦୁ କବିତା କ୍ଷେତ୍ରରେ ଏକ ନୂତନ କାବ୍ୟରୀତି ପ୍ରବର୍ତ୍ତନ କରିଯାଇଅଛନ୍ତି ।" ଏହି ଦୃଷ୍ଟିରୁ ବିଗତ ଶତାବ୍ଦୀର ଏହି ମହାନ କବି ଆମର ଚିରସ୍ମରଣୀୟ ତଥା ବରଣୀୟ ।

ଗାଲିବଙ୍କ ରଚନାବଳୀରୁ ଜୀବନ ଉପଲବ୍ଧିର ବହୁ ସତ୍ୟ ରସାତ୍ମକ ଅଭିବ୍ୟକ୍ତି ଲାଭ କରିଅଛି । କହିବା ଅନାବଶ୍ୟକ ତାହା ଏ ଯୁଗର ପାଠକକୁ ଭାବାବିଷ୍ଟ କରିବା ସଙ୍ଗେ ସଙ୍ଗେ ତାହାର ରସ ପିପାସାକୁ ମଧ୍ୟ ପରିତୃପ୍ତ କରିଥାଏ ।

(କ) 'ଜାଣିରଖ, ଯେଉଁ କାମ କରିବା ସହଜ ମନେହୁଏ, ସେ
କାମ କରିଦେବା ଖୁବ କଠିଣ ।
ଏପରି ଦୁଃସାଧ୍ୟ ଯେ କୌଣସି ବ୍ୟକ୍ତି ଇଚ୍ଛା କଲେହେଁ
'ମଣିଷ ହୋଇଯାଏ ନାହିଁ ।

(ଖ) କୌଣସି ଏକ ଉଦ୍ଦେଶ୍ୟ ସିଦ୍ଧିର ଲାଗି ଅକ୍ଲାନ୍ତ କାମରେ
ପ୍ରେରଣା ଦେଇଥାଏ ମଣିଷର ଉଚ୍ଚାଶା ।

(ଗ) ମୃତ୍ୟୁ ଯଦି ନଥାନ୍ତା
ତେବେ ମଣିଷ ଜୀବନର ସବୁ ଆକର୍ଷଣ ଲୋପପାଇ
ଯାଆନ୍ତା ।

(ଘ) ଛୋଟ ଜଳକଣାଟିଏ ଦାବି କରିପାରେ—"ମୁଁ ସମୁଦ୍ର ।"
ଜଣେ ଯେତେବେଳେ ଅନ୍ୟ ନିକଟରେ ସମ୍ପୂର୍ଣ୍ଣ ଆତ୍ମ-
ସମର୍ପଣ କରେ ବାସ୍ତବିକ ତାର ଆଉ ପୃଥକ ସତ୍ତା
ରହେନା ।

(ଙ) ଯେତିକି ସାହସରେ ଡେଇଁ ପଡ଼ିବ
ସେଇ ପରିମାଣରେ ମିଳିଥାଏ ସାଫଲ୍ୟ ।

(ଚ) ମଣିଷର ମନ ଲକ୍ଷ ଲକ୍ଷ ଚିନ୍ତାର ଖେଳ ପଡ଼ିଆ
ନିର୍ଜନତା ତେଣୁ ମୋତେ ମନେହୁଏ
କଳରବ ମୁଖର ବନ୍ଧୁଗୋଷ୍ଠୀର ମେଳା ।

(ଛ) ଜୀବନର ଘୋଡ଼ା ଡେଉଁ ଡେଉଁ ଧାଇଁ ଚାଲେ
କେଉଁଠି ଯେ ତାହା ରହିବ, କେହି କହି ପାରିବେନି ।
ମୁଠାକୁ ଶକ୍ତ କରି ଆମେ ଲଗାମକୁ ଠିକ ଧରିପାରୁନା
ଆମ ପାଦ ମଧ୍ୟ ଯାଦାନ ଉପରେ ରଖି ହୁଏନି ।

(ଜ) ଯନ୍ତ୍ରଣାରେ ଅଭ୍ୟସ୍ତ ହୋଇପଡ଼ିଲେ, ଯନ୍ତ୍ରଣାବୋଧ
ଚାଲିଯାଏ;
ମୁଁ ଜୀବନରେ ଏତେ କଷ୍ଟ ପାଇଛି ଯେ
ଏମାନଙ୍କୁ ସମ୍ଭାଳିବା ମୋ ପକ୍ଷେ ସହଜ ହୋଇ ଉଠିଛି ।
"ମୁସକଲେଁ ଇତନି ପଡ଼ି ଗାଲିବକେ ମୁସକିଲ୍ ଆଶାନ୍
ହୋ ଗଇ"

(ଝ) ଗୋଟିଏ ଜଳବିନ୍ଦୁ ନଦୀ ଜଳରେ ମିଶି ନଦୀ ହୋଇଯାଏ
"ଯାହାର ଶେଷ ଭଲ ତାର ସବୁ ଭଲ ।

ଗଜଲ୍ ରଚୟିତାଭାବେ ଗାଲିବଙ୍କ କୃତିତ୍ୱର ନମୁନା ସ୍ୱରୂପ ଏଠାରେ ଦୁଇଟି ଗଜଲ ଓ ତାହାର ଓଡ଼ିଆ ଅନୁବାଦ ଉଲ୍ଲେଖଯୋଗ୍ୟ ।

(୧) ପକଡ଼େ ଜାତେହେ ଫରସ୍ତୋକେ ଲିଖେ ପରନାହକ
ଆଦମି କୋଇ ହମାରା ଦମେ ତହରିର ଭି ଥା ?" '

**ଓଡ଼ିଆ ଅନୁବାଦ—**

ମଣିଷର ପାପପୁଣ୍ୟ ବିବରଣୀ ଉପସ୍ଥାପନରେ
ଦେବଦୂତ ଫରସ୍ତାଙ୍କୁ ଭଗବାନ କଲେ ନିୟୋଜିତ
ସେ ଦୁହେଁ କପରି ଅବା ଯଥା ଯଥ କରିବେ କଳନା
ଯେ ସୁଦୂର ସ୍ୱର୍ଗବାସୀ ନିରନ୍ତର ଅଳସ ଓ ବିଳାସେ
ଆସକ୍ତ ?
ସେ କିସ ଜାଣନ୍ତି ଅବା ମଣିଷର କଥା
କାମାସକ୍ତ ମଣିଷର ଦୁର୍ବଳତା ଗୁରୁ ପ୍ରଲୋଭନ
ଏ ମଣିଷ କେଡ଼େ ଅସହାୟ ! ସତ୍ୟ ଆଉ ଅସତ୍ୟ ଦ୍ୱନ୍ଦ୍ୱରେ
ତାର ଯେତେ କାମନା ବାସନା ଲୋଭ ଆଉ କ୍ଷୁଧାର
ଦହନ ?
ସିଏ କଣ ଜାଣିଛନ୍ତି ମଣିଷର ନିଷ୍ଫଳ ଶ୍ରମକୁ
ତାହାର ଶତ ଯନ୍ତ୍ରଣା ଦୁଃଖ ଅନ୍ତହୀନ
ସିଏ କେବେ ଅନୁଭବିଛନ୍ତି ମରମରେ
ବନ୍ୟା ଦୁର୍ଭିକ୍ଷ ଓ ଯୁଦ୍ଧ, ମଡ଼କର ଘୋର ନିପୀଡ଼ନ ?
ଏ ମଣିଷ କ୍ରୀଡ଼ନକ ଭାଗ୍ୟର ହାତରେ
ଅନିଶ୍ଚିତତାହିଁ ତାର କପାଳେ ନିହିତ
ଜନ୍ମ ଯାର ଅନାୟତ୍ତ ସିଏ ମାତ୍ର ସେବକ ତାହାର
ସୁନିଶ୍ଚିତ ମୃତ୍ୟୁ ଯାକୁ ନିରନ୍ତର କରେ କବଳିତ ।
ଏଣୁ ଫରସ୍ତାର ସାକ୍ଷ୍ୟ କିରୂପେ ବା ହେବ ଗ୍ରହଣୀୟ
ମଣିଷ କାହିଁକି ହେବ ଦଣ୍ଡିତ ସେ ଲାଗି

ପରସ୍ପରକ କେବେ କଳାଛନ୍ତି ମଣିଷକୁ ମଣିଷର ସତେ
ସ୍ୱରୂପରେ
ଏଣୁ ଏଇ ପ୍ରଶ୍ନ ଆମ ମନେ ଉଠେ ଜାଗି ।

(୨) "ରହିଏ ଏ ଅବ୍ ଐସି ଜାଗା ଯାହାଁ କୋଇ ନହୋ
ହମ ସଖୁନ୍ କୋଇ ନହୋ ଅର୍ ହମ୍ ଯବାଁ କୋଇ ନହୋ ।
ବେଦର ଓ ଦିଓ୍ୱାର ସା ଏକ ଘର ବନାୟା ଚାହିଏ
କୋଇ ହମସାୟା ନହୋ ଅର ପାସବାଁ କୋଇ ନହୋ ।
ପଡ଼ିଏ ଗର ବିମାର ତୋ କୋଇ ନହୋ ତିମାରଦାର
ଅର ଅଗର ମର୍‌ଯାଇଏ ତୋ ନୌହା ଖାଁ କୋଇନହୋ "

**ଅନୁବାଦ—**

ଏଇ ମୋର ଅଭିଳାଷ ଯିବ ଏଥୁଁ ଦୂରେ ବହୁ ଦୂରେ
ନିର୍ଜନ ଭୂମିରେ ଏକ ରଚିବ ଆଶ୍ରୟ
ନଥିବ ଯେଉଁଠି କାହିଁ ପ୍ରକୋଷ୍ଠ ଯା ପ୍ରାଚୀର ମଣ୍ଡିତ
ବିମୁକ୍ତ ଗୌରବ ସ୍ଥଳୀ ସେହି ମୋର ପ୍ରିୟ ।
ତେଜିବି ମୁଁ ମଣିଷର ଏ ସମ୍ପର୍କ ନିରର୍ଥକ ଯାହା
ତୁଚ୍ଛତାର ପାଇଁ ଯେତେ ଦ୍ୱନ୍ଦ୍ୱ ଅହେତୁକ
ନ ଲୋଡ଼ିବେ ଆଉ ମୋତେ ପ୍ରତିବେଶୀ କୁଟିଳ ନୟନ
ମୁଁ ରଚିତ ଚାହେଁ ମୋର ସଙ୍ଗହୀନ ଜୀବନ ନାଟକ ।
ସହଚରଗଣେ ମୋର ସେ ଭୂମିକୁ ନ ଆସନ୍ତୁ କେବେ
ସେବା ମୋର ନକରନ୍ତୁ ଯଦି ମୁହିଁ ହୁଏ ବା ପୀଡ଼ିତ
ସେ ଭୂମିରେ ମୃତ୍ୟୁ ଯେବେ ଆଲିଙ୍ଗଇ ମୋତେ ଅକସ୍ମାତ
ନ ଝୁରନ୍ତୁ କେହି ମୋତେ ନ ଝରାନ୍ତୁ ନୟନୁ ଲୋତକ ।



# ଫକୀର ମୋହନ

ଓଡ଼ିଆ ସାହିତ୍ୟରେ ନବଯୁଗର ଅନ୍ୟତମ ପ୍ରବର୍ତ୍ତକ ଭାବେ ଫକୀର ମୋହନ ସୁବିଦିତ । ବିଗତ ଶତାବ୍ଦୀର ଶେଷ ପାଦରୁ ସେ ସୁଦୀର୍ଘ ଅର୍ଦ୍ଧଶତାବ୍ଦୀବ୍ୟାପୀ ସାହିତ୍ୟ ସାଧନା ଫଳରେ ଓଡ଼ିଆ ସାହିତ୍ୟର ଗଳ୍ପ, ଉପନ୍ୟାସ ଓ କବିତା କ୍ଷେତ୍ରକୁ ସମୃଦ୍ଧ କରିଯାଇଅଛନ୍ତି । ସାହିତ୍ୟ ଓ ସଂସ୍କୃତିର ବିକାଶ ଦୃଷ୍ଟିରୁ ତାହାଙ୍କ ଶୈଶବ ଓ ଆଦ୍ୟ ଯୌବନ କାଳ ଥିଲି ଓଡ଼ିଶାର ଦୁର୍ଦ୍ଦିନ । ଏହି ସମୟରେ ଓଡ଼ିଶାର ସାମାଜିକ ଜୀବନ, ସାହିତ୍ୟ ଓ ସଂସ୍କୃତି ଏକ ପ୍ରକାର ଶୋଚନୀୟ ଓ ବିପର୍ଯ୍ୟସ୍ତ ହୋଇପଡ଼ିଥିଲା । ଇଂରେଜମାନଙ୍କଦ୍ୱାରା ଅଧିକୃତ ହେବାର ଅର୍ଦ୍ଧଶତାବ୍ଦୀ ମଧ୍ୟରେ ଓଡ଼ିଶାର ସାମରିକତା ନିଃଶେଷିତ ହୋଇଯାଇଥିଲା, ଶିଳ୍ପ, ବାଣିଜ୍ୟ ମଧ୍ୟ ବିଲୟମୁଖୀ ହୋଇପଡ଼ିଥିଲା । ଏହା ପରେ ଓଡ଼ିଶାର ଜମିଦାରୀ ସବୁ ହସ୍ତାନ୍ତରିତ ହୋଇଯିବାରୁ ସମ୍ଭ୍ରାନ୍ତ ଜମିଦାରଗୋଷ୍ଠୀ ସର୍ବସ୍ୱ ହରାଇ ବସିଥିଲେ । ଇଂରେଜ ଶାସନର ଅପାରଗତା ଓ ଅନ୍ୟାନ୍ୟ କାରଣରୁ ପ୍ରତିକାରହୀନ ପ୍ରଳୟଙ୍କରୀ ଦୁର୍ଭିକ୍ଷ ଯୋଗୁ ଓଡ଼ିଶାର ଅପୂରଣୀୟ କ୍ଷତି ଘଟିଥିଲା । ଏହିପରି ଓଡ଼ିଶାର ଆର୍ଥିକ ସ୍ଥିତି ଶୋଚନୀୟ ହୋଇପଡ଼ିବା ସଙ୍ଗେ ସଙ୍ଗେ ସାମାଜିକ ଜୀବନ ମଧ୍ୟ ଅଶାନ୍ତିପୂର୍ଣ୍ଣ ଓ ଅବସାଦଗ୍ରସ୍ତ ହୋଇ ପଡ଼ିବା ସ୍ୱାଭାବିକ । ଏହି ଅବକାଶରେ ଖ୍ରୀଷ୍ଟୀୟ ମିସନାରୀମାନେ ଖ୍ରୀଷ୍ଟଧର୍ମ ପ୍ରଚାରରେ ନିୟୋଜିତ ଥାନ୍ତି; ମାତ୍ର ନବାଗତ ଇଂରାଜୀ ସଭ୍ୟତାକୁ ପ୍ରାଚୀନପନ୍ଥୀ, ରକ୍ଷଣଶୀଳ ସମାଜ ସ୍ୱାଗତ କରୁନଥାଏ । ଏଣୁ ଓଡ଼ିଶାରେ ସେ ସମୟରେ ଆଶାନୁରୂପ ଇଂରେଜୀ ଶିକ୍ଷା ବିସ୍ତାର ହୋଇପାରି ନଥିଲା । ଓଡ଼ିଶାର ପ୍ରାୟ ସମସ୍ତ ରାଜକର୍ମଚାରୀ ସେତେବେଳେ ଅଣଓଡ଼ିଆ, ବିଦେଶୀ । କୁଶାସନର ସୁଯୋଗ-

ନେଇ ଓଡ଼ିଆ ଭାଷା ଓ ସାହିତ୍ୟର ଚରମ ଅବସ୍ଥା ସାଧନଲାଗି ମଧ୍ୟ ଅନେକ ନିୟୋଜିତ ଥିଲେ । ଏହିପରି ଜାତିର ସଙ୍କଟଜନକ ଓ ବିପନ୍ନ ଅବସ୍ଥାରେ ଫକୀରମୋହନ ଲେଖନୀ ଧାରଣକରି ଓଡ଼ିଆ ସାହିତ୍ୟକୁ ରକ୍ଷା କରିବା ସଙ୍ଗେ ସଙ୍ଗେ ଆଧୁନିକ ଓଡ଼ିଆ ସାହିତ୍ୟର ପ୍ରାଣ ପ୍ରତିଷ୍ଠା କରି ଯାଇଅଛନ୍ତି ।

## ଜୀବନ ଧାରା—

ଫକୀରମୋହନଙ୍କ ଜୀବନ ଅତୀବ ଘାତ ପ୍ରତିଘାତ ସଂକୁଳ, ଆକସ୍ମିକତା ପୂର୍ଣ୍ଣ ଓ ବହୁ ଦୁଃଖ ଦୁର୍ଦଶାରେ ପରିପୂର୍ଣ୍ଣ । ଖ୍ରୀ: ୧୮୪୩ ମସି-ହାରେ ବାଲେଶ୍ୱରରେ ଏକ ସମ୍ଭ୍ରାନ୍ତ ପରିବାରରେ ତାଙ୍କର ଜନ୍ମ; ମାତ୍ର ଜନ୍ମ ହେବାର ଏକ ବର୍ଷ ମଧ୍ୟରେ ସେ ପିତା ମାତା ଉଭୟଙ୍କୁ ହରାଇ ସଂପୂର୍ଣ୍ଣ ଅନାଥ ହୋଇଗଲେ । ତାହାଙ୍କ ପିତା ମାତା ପୁରୀ ଜଗନ୍ନାଥ ଦର୍ଶନକରି ଫେରିବା ସମୟରେ ହଇଜାରେ ଆକ୍ରାନ୍ତ ହୋଇ ଅକାଳ ମୃତ୍ୟୁ ବରଣ କରିଥିଲେ । ଶୈଶବରେ ଫକୀର ମୋହନଙ୍କୁ ଲାଳନ ପାଳନରେ ଦାୟିତ୍ୱ ଗ୍ରହଣ କରିଥିଲେ ତାହାଙ୍କ ପିତାମହୀ କୁଚିଲା ଦେବୀ । ଫକୀରମୋହନଙ୍କ ପିତୃଦତ୍ତ ନାମ ଥିଲା ବ୍ରଜ ମୋହନ । ମାତ୍ର ଶୈଶବରେ ସେ ଦାରୁଣ ପୀଡ଼ାଗ୍ରସ୍ତ ହେବା ଯୋଗୁ କୁଚିଲା ଦେବୀ ତାହାଙ୍କ ଆରୋଗ୍ୟ କାମନାରେ ଲୋକ ବିଶ୍ୱାସ ଅନୁଯାୟୀ ତାଙ୍କୁ ଫକୀର କରିଦେଇଥିଲେ । ଏହା ଫଳରେ ଫକୀର ମୋହନ ଏହି ନାମରେ ପରିଚିତ ହେଲେ ।

ପିତାମହୀଙ୍କ ବ୍ୟତୀତ ପରିବାର ଅନ୍ୟ କାହାରି ଅନାଥ ଫକୀରମୋହନଙ୍କ ପ୍ରତି ବିଶେଷ ଦୃଷ୍ଟି ନଥିଲା । ପରନ୍ତୁ ସେମାନଙ୍କ ଅନାଦର, ଉପେକ୍ଷା ତାଙ୍କୁ ମର୍ମେ ମର୍ମେ ଅନୁଭବ କରିବାକୁ ପଡ଼ିଥିଲା । ସେଥିପାଇଁ ପ୍ରାଇମେରୀ ଶିକ୍ଷାଠାରୁ ଅଧିକ ଶିକ୍ଷା ଲାଭ କରିବାର ସୌଭାଗ୍ୟ ତାହାଙ୍କୁ କୈଶୋରରେ ମିଳି ପାରିନଥିଲା । ସ୍କୁଲର ମାସିକ ବେତନ ମାତ୍ର ଗୁରିଅଣା ଦେଇ ନ ପାରିବାରୁ ତାହାଙ୍କ 'ପଢ଼ା ଶେଷ ହୋଇଗଲା ।' ଅଭାବର ତାଡ଼ନା ଯୋଗୁ ହିଁ ଅତି ଅଳ୍ପ ବୟସରୁ ତାହାଙ୍କୁ ବାଲେଶ୍ୱରରେ ନିମକ ମାହାଲ (ଲୁଣ ବିଭାଗ)ରେ ଶ୍ରମିକଗିରି କରିବାଠାରୁ ଆରମ୍ଭ କରି ଅଖାଲ ଫିଲେଇ (ଡଙ୍ଗାର ପାଲ) ତଦାରଖି, ବାଲେଶ୍ୱର କଚେରୀରେ ମୋହରିରଙ୍କ

ସାହକାରୀ ଓ ମାଇନର ସ୍କୁଲରେ ଶିକ୍ଷକତା ପ୍ରଭୃତି ବିଭିନ୍ନ କାର୍ଯ୍ୟରେ ଯୋଗ ଦେବାକୁ ପଡ଼ିଥିଲା ।

ଏହିପରି ଅନିଶ୍ଚିତ ଓ ଅସ୍ୱଚ୍ଛଳ ଅବସ୍ଥାରେ ଫକୀର ମୋହନଙ୍କୁ ଅତି ଅଳ୍ପ ବୟସରେ ବିବାହ କରିବାକୁ ପଡ଼ିଥିଲା । ସମ୍ଭବତଃ କୁଚିଳା ଦେବୀଙ୍କ ଅନୁରୋଧରେ ଓ ତାହାଙ୍କ ପାରିବାରିକ ଶ୍ରମକୁ ଲଘବ କରିବା ଉଦ୍ଦେଶ୍ୟରେ ହିଁ ସେ ବିବାହ କରିଥିଲେ; ମାତ୍ର ଫକୀର ମୋହନଙ୍କ ପ୍ରଥମା ପତ୍ନୀ ସହାନୁଭୂତି ସଂପନ୍ନା ଅଥବା ସୁଗୃହିଣୀ ନଥିଲେ । ପରନ୍ତୁ ସେ ଥିଲେ ଫକୀର ମୋହନଙ୍କ ଭାଷାରେ କଳହପରାୟଣା ଓ କଣ୍ଟୁଭାଷିଣୀ । ୧୮୬୭ ମସିହାରେ କୁଚିଳା ଦେବୀଙ୍କର ମୃତ୍ୟୁ ହୋଇଗଲା ।

ସେତେବେଳେ ଫକୀର ମୋହନ ବାଲେଶ୍ୱର ମିଶନ ସ୍କୁଲରେ ଶିକ୍ଷକତା କରୁଥାଆନ୍ତି । ଏହି ଅବକାଶରେ ଓଡ଼ିଶାର ତତ୍କାଳୀନ ସାହିତ୍ୟିକ ଓ ସାଂସ୍କୃତିକ ଦୁରବସ୍ଥା ବିଷୟରେ ଫକୀରମୋହନ ଉତ୍ତମରୂପେ ଅବହିତ ହୋଇପାରିଥିଲେ । ପ୍ରାଚୀନ ଓଡ଼ିଆ ସାହିତ୍ୟର ମହତ୍ତ୍ୱ ପ୍ରଦର୍ଶନ, ଓ ସାହିତ୍ୟ ସୃଷ୍ଟି ଓ ଜନ ଜାଗରଣ ଉଦ୍ଦେଶ୍ୟରେ ସେ ବାଲେଶ୍ୱରରେ ଏକ ପତ୍ରିକା ପରିଚାଳନା କରିବାକୁ ମନସ୍ଥ କଲେ । ବହୁ ଅଭାବ, ଅସୁବିଧା ସତ୍ତ୍ୱେ ସେ ଏହା କରିବାକୁ ସମର୍ଥ ହୋଇ ମଧ୍ୟ ପାରିଥିଲେ । ସେ ଥିଲେ ଖୁବ୍ ଚତୁର, ବାକପଟୁ, ସଙ୍ଗଠନ କୁଶଳ ଓ କଷ୍ଟସହିଷ୍ଣୁ । ୧୮୬୮ ମସିହାରେ ତାହାଙ୍କ ଉଦ୍ୟମରେ ଓ ସମ୍ପାଦକତ୍ୱରେ ବାଲେଶ୍ୱର ସମ୍ବାଦ ବାହିକା' ନାମକ ଏକ ସାପ୍ତାହିକ ପତ୍ର ପ୍ରକାଶିତ ହୋଇଥିଲା । ଏହାପରେ କାର୍ଯ୍ୟୋପଲକ୍ଷରେ ଫକୀର ମୋହନଙ୍କୁ ଅନ୍ୟତ୍ର ଯିବାକୁ ପଡ଼ିବାରୁ ସେ ଏହି ପତ୍ରିକାର ସମ୍ପାଦନା ଦାୟିତ୍ୱ ଅନ୍ୟକୁ ଅର୍ପଣ କରିବାକୁ ବାଧ୍ୟ ହୋଇଥିଲେ ।

୧୮୭୧ ମସିହାରୁ ତାହାଙ୍କ ଜୀବନର ଗତିପଥ ପୁନଶ୍ଚ ପରିବର୍ତ୍ତିତ ହୋଇଗଲା । ଶିକ୍ଷକତାବୃତ୍ତି ପରିତ୍ୟାଗ କରି ସେ ନୀଳଗିରି ଷ୍ଟେଟରେ ଦେଓ୍ୱାନ ପଦ ଗ୍ରହଣ କରିଥିଲେ । (୧୮୭୧) ଏଠାରେ ସେ ପ୍ରାୟ ତିନି ବର୍ଷ ରହିଥିଲେ । ଏହାପରେ ତାହାଙ୍କୁ ଡମପଡ଼ା (୧୮୭୬-୭୭), ଢେଙ୍କାନାଳ (୧୮୭୭-୮୩), ଦଶପଲ୍ଲା (୧୮୮୪-୮୬), ପାଲଲହଡ଼ା

(୧୮୮୬-୮୭), କେନ୍ଦୁଝର (୧୮୮୭-୯୨) ପ୍ରଭୃତି ପୂର୍ବତନ ଗଡ଼ଜାତ-ମାନଙ୍କରେ ଦେଓ୍ୱାନ, ମ୍ୟାନେଜର ଅଥବା ଆସିଷ୍ଟାଣ୍ଟ ମ୍ୟାନେଜର ଭାବେ କାର୍ଯ୍ୟ କରିବାକୁ ପଡ଼ିଥିଲା । ଏହି ସୁଯୋଗରେ ଫକୀରମୋହନ ଏ ଦେଶର ଜନଜୀବନକୁ, ବ୍ୟକ୍ତି ଚରିତ୍ରକୁ ଜାଣିବାର ଅପୂର୍ବ ସୁଯୋଗ ଲାଭ କରିଥିଲେ ।

ସେତେବେଳେ ଓଡ଼ିଶାର ଗଡ଼ଜାତଗୁଡ଼ିକ ଯଥାର୍ଥତଃ ଥିଲା ଅନ୍ଧାରି ମୂଲକ । ସଭ୍ୟତାର ଆଲୋକରୁ ଅଧିକାଂଶ ରାଜ୍ୟ ଥିଲା ସମ୍ପୂର୍ଣ୍ଣ ବଞ୍ଚିତ ଓ କୁସଂସ୍କାର ଜର୍ଜରିତ । ଜନସାଧାରଣ ଶିକ୍ଷାରୁ ଥିଲେ ବଞ୍ଚିତ । ବହୁ ଗଡ଼ଜାତର ରାଜା ଥିଲେ ଶିକ୍ଷା ସଂସ୍କୃତିବିହୀନ, ଅଳସ ମନୋଭାବା-ପନ୍ନ ଓ ଖିଆଲୀ । ଗଡ଼ଜାତ ମାହାଲ ମଧ୍ୟରେ ପାରସ୍ପରିକ ବିବାଦ ସଂଘର୍ଷ ମେଳି ପ୍ରଭୃତି ହେଉଥିଲା । ଜନସାଧାରଣ ଥିଲେ ବେଠି ଓ କରଭାରରେ ନିପୀଡ଼ିତ । କେନ୍ଦୁଝରର ପ୍ରଜା ବିଦ୍ରୋହବେଳେ ଫକୀରମୋହନ ବିଦ୍ରୋହ ଦମନ କରିବାକୁ ଯାଇ ନିଜେ ବିଦ୍ରୋହୀମାନଙ୍କଦ୍ୱାରା ବନ୍ଦୀ ହୋଇଥିଲେ । ଆପଣାର ଚତୁରତା, ପ୍ରତ୍ୟୁତ୍ପନ୍ନ-ମତିତା ଯୋଗୁଁ ହିଁ ସେ ନିଶ୍ଚିତ ମୃତ୍ୟୁ ମୁଖରୁ ରକ୍ଷା ପାଇ ପାରିଥିଲେ (୧୮୯୧-୯୨) । ଓଡ଼ିଶାର ଏହି ଅନ୍ଧାରି ମୂଲକରେ ଚାକିରି କରି ଫକୀର ମୋହନଙ୍କ ଅବସ୍ଥା ନିଶ୍ଚିତ ଭାବେ ଅପେକ୍ଷାକୃତ ସ୍ୱଚ୍ଛଳ ହୋଇପାରିଥିଲା; ମାତ୍ର ସବୁଠାରୁ ବଡ଼ ଲାଭ ହେଉଛି, ଓଡ଼ିଶାର ବନାଞ୍ଚଳରୁ ପ୍ରକୃତି ଓ ଜୀବନ ଧାରାକୁ ପ୍ରତ୍ୟକ୍ଷ ଭାବରେ ଜାଣିବାରେ ସେ ସମର୍ଥ ହୋଇ ପାରିଥିଲେ । ସେ ଯୁଗର ଅନ୍ୟ କୌଣସି ଲେଖକଙ୍କ ପକ୍ଷେ ଏପରି ଅଭିଜ୍ଞତା ଲାଭ କରିବା ସମ୍ଭବ ହୋଇ ପାରି ନ ଥିଲା ।

ଖ୍ରୀ: ୧୮୮୧ରେ ପ୍ରଥମା ପତ୍ନୀଙ୍କ ବିୟୋଗ ପରେ ସେ କୃଷ୍ଣା-କୁମାରୀଙ୍କୁ ବିବାହ କରିଥିଲେ । କୃଷ୍ଣାକୁମାରୀ ଫକୀରମୋହନଙ୍କ ଯୋଗ୍ୟା ସହଧର୍ମିଣୀ ହୋଇ ପାରିଥିଲେ । ପୂର୍ବରୁ ତାହାଙ୍କ ପ୍ରଥମା ପତ୍ନୀଙ୍କ ଗର୍ଭଜାତ ସନ୍ତାନର ମୃତ୍ୟୁ ହୋଇ ଯାଇଥିଲା । କୃଷ୍ଣାକୁମାରୀଙ୍କ ସନ୍ତାନ ହେଉଛନ୍ତି ବିଶିଷ୍ଟ ଦାର୍ଶନିକ ଅଧ୍ୟାପକ ୰ ମୋହିନୀମୋହନ । ମାତ୍ର କୃଷ୍ଣାଙ୍କ ସହ ଦୀର୍ଘ ଦାମ୍ପତ୍ୟ ଜୀବନର ସୁଖଭୋଗ କବିଙ୍କ ଭାଗ୍ୟରେ ନଥିଲା । ୧୮୯୬ରେ

କବିଙ୍କ ହୃଦୟରେ ଦାରୁଣ ଦୁଃଖ ଭାର ଲଦି ଦେଇ କୃଷ୍ଣକୁମାରୀ ଚିରଦିନ ପାଇଁ ବିଦାୟ ନେଇଗଲେ । ଏହାପରେ ଦୀର୍ଘ ୨୨ ବର୍ଷ ଫକୀରମୋହନ ତାହାଙ୍କ ବାର୍ଦ୍ଧକ୍ୟରେ ନିଃସଙ୍ଗ ଜୀବନଯାପନ କରିଛନ୍ତି । ଏହି ସମୟରେ ସାହିତ୍ୟ ରଚନା ହିଁ ତାହାଙ୍କ ଜୀବନର ଏକମାତ୍ର ଅବଲମ୍ବନ । ଏହାହିଁ ଥିଲା ଫକୀରମୋହନଙ୍କ ସାହିତ୍ୟ ସୃଷ୍ଟିର ସର୍ବୋତ୍କୃଷ୍ଟ ସମୟ ।

୧୮୯୮ରେ ସେ ଓଡ଼ିଶାର ପ୍ରତିନିଧି ଭାବରେ ଭାରତୀୟ ଜାତୀୟ କଂଗ୍ରେସର ମାନ୍ଦ୍ରାଜ ଅଧିବେସନରେ ଯୋଗଦାନ କରିଥିଲେ । ଖ୍ରୀ ୧୮୯୭ରୁ ପ୍ରାୟ ୮।୯ ବର୍ଷ କବି କଟକରେ ବାସଗୃହ ନିର୍ମାଣ କରି ସ୍ଲେଟ କାଠର ବ୍ୟବସାୟ କରି ଅବସ୍ଥାନ କରୁଥିଲେ; ମାତ୍ର ପୁତ୍ରଙ୍କ ସହ ମତାନ୍ତର ଓ ମନାନ୍ତର ଯୋଗୁ ସେ କଟକ ପରିତ୍ୟାଗ କରି ବାଲେଶ୍ୱରକୁ ଚାଲି ଆସିଲେ । ଖ୍ରୀ: ୧୯୦୫ରୁ ମୃତ୍ୟୁ ପର୍ଯ୍ୟନ୍ତ ସେ ବାଲେଶ୍ୱରରେ ହିଁ ନିଃସଙ୍ଗ ଜୀବନ-ଯାପନ କରୁଥିଲେ । ଏହି ସମୟରେ ଆଧ୍ୟାତ୍ମିକ ଚିନ୍ତା ଓ ପୂଜା ଉପାସନା ପ୍ରତି ସେ ହୋଇଥିଲେ ଆକୃଷ୍ଟ । ୧୯୧୮ ମସିହାରେ ସେହି ବାଲେଶ୍ୱରରେ ହିଁ ତାହାଙ୍କର ଦେହାନ୍ତ ହୋଇଥିଲା ।

## ସାହିତ୍ୟସାଧକ ଫକୀରମୋହନ

ସେ ଯୁଗରେ ଓଡ଼ିଶାର ସ୍କୁଲମାନଙ୍କରୁ ଓଡ଼ିଆଭାଷାକୁ ପାଠ୍ୟକ୍ରମରୁ ଉଠାଇଦେବାଲାଗି ଓଡ଼ିଶାର କେତେକ ବିଦେଶୀ କର୍ମଚାରୀ ଅପପ୍ରୟାସ କରୁଥାଆନ୍ତି । ସେତେବେଳକୁ ଅଳ୍ପ କେତେଖଣ୍ଡ ମାତ୍ର ଓଡ଼ିଆ ପୁସ୍ତକ ମୁଦ୍ରିତ ହୋଇଥାଏ । ଓଡ଼ିଆରେ ପାଠ୍ୟପୁସ୍ତକ ଏକ ପ୍ରକାର ଲିଖିତ ହୋଇନଥିଲା କହିଲେ ଚଳେ । ତରୁଣ ଫକୀରମୋହନ ଭାବିଲେ, ଓଡ଼ିଶାର ମୂଲ୍ୟବାନ୍ ପ୍ରାଚୀନ ସାହିତ୍ୟକୁ ମୁଦ୍ରିତ କରାଇ ପ୍ରକାଶ କଲେ ଓଡ଼ିଆ ସାହିତ୍ୟର ମହତ୍ତ୍ୱ ପ୍ରତିଷ୍ଠିତ ହୋଇପାରିବ । ତା ଛଡ଼ା ଓଡ଼ିଆରେ ସ୍କୁଲ ପାଠ୍ୟପୁସ୍ତକ ଓ ଅନ୍ୟାନ୍ୟ ପୁସ୍ତକାବଳୀ ମଧ୍ୟ ମୁଦ୍ରିତ ହେବା ଏକାନ୍ତ ଆବଶ୍ୟକ । ଏହି ଉଦ୍ଦେଶ୍ୟରେ ସେ ବହୁ କଷ୍ଟ ସ୍ୱୀକାର-ପୂର୍ବକ ୧୮୬୮ରେ ବାଲେଶ୍ୱରରେ ଏକ ଛାପାଖାନା ବସାଇଥିଲେ । 'ବାଲେଶ୍ୱର ସମ୍ବାଦ ବାହିକା ଓ ବୋଧଦାୟିନୀ ପତ୍ରିକା ମଧ୍ୟ ଏଠାରୁ

ପ୍ରକାଶ କରାଇଥିଲେ । ଏହି ସମୟରୁ ହିଁ ତାହାଙ୍କ ସାହିତ୍ୟିକ ଜୀବନର ସୂତ୍ରପାତ । ଏହି ପତ୍ରିକାରେ ତାଙ୍କ ରଚିତ ପ୍ରଥମ କ୍ଷୁଦ୍ରଗଳ୍ପ 'ଲଛମନିଆଁ' ପ୍ରକାଶ ପାଇଥିଲା । ସେହି ଗଳ୍ପଟି ଏ ପର୍ଯ୍ୟନ୍ତ ଲୋକଲୋଚନକୁ ଆସି ପାରିନାହିଁ; ମାତ୍ର ପ୍ରକାଶ କାଳ ଦୃଷ୍ଟିରୁ ସେହି ଗଳ୍ପଟି 'କେବଳ ଆଧୁନିକ ଓଡ଼ିଆ ସାହିତ୍ୟର ନୁହେଁ, ସମଗ୍ର ଆଧୁନିକ ଭାରତୀୟ ସାହିତ୍ୟର ପ୍ରଥମ ମୁଦ୍ରିତ ଗଳ୍ପଭାବରେ ଗୃହୀତ ହୋଇପାରେ ।

ଓଡ଼ିଆରେ ସେତେବେଳେ ପାଠ୍ୟପୁସ୍ତକର ଅଭାବ ଓ ଦୂରବସ୍ଥା ଅନୁଭବକରି ଫକୀରମୋହନ 'ଭାରତ ଇତିହାସ', 'ବ୍ୟାକରଣ' ପ୍ରଭୃତି ମଧ୍ୟ ଲେଖିଥିଲେ ଓ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ରଚିତ 'ଜୀବନ ଚରିତ' ନାମକ ପୁସ୍ତକଟିକୁ ବଙ୍ଗଳାରୁ ଅନୁବାଦ କରିଥିଲେ । ଫକୀରମୋହନଙ୍କ ସାହିତ୍ୟ ସାଧନାର ପ୍ରଥମ ପର୍ଯ୍ୟାୟ ଏହିପରି ଅନୁବାଦ ଓ ଆହରଣ କାର୍ଯ୍ୟରେହିଁ ବିନିଯୁକ୍ତ ହୋଇଥିଲା କହିଲେ ଚଳେ । ଖ୍ରୀ: ୧୮୮୧ରୁ ଖ୍ରୀ: ୧୮୯୭ ମଧ୍ୟରେ ସେ ସପ୍ତକାଣ୍ଡ ରାମାୟଣ, ମହାଭାରତର ଅଠରଗୋଟି ପର୍ବ ଓ ଶ୍ରୀମଦ୍ ଭାଗବତ୍ ଗୀତା ତାହାଙ୍କ ସ୍ୱଭାବସୁଲଭ ସରଳ ଓଡ଼ିଆ ଭାଷାରେ ଅନୁବାଦ କରିଥିଲେ । ପରବର୍ତ୍ତି କାଳରେ ସେ ଖିଳ ହରିବଂଶ, ଛାନ୍ଦୋଗ୍ୟ ଉପନିଷଦକୁ ମଧ୍ୟ ସରଳ ଭାଷାରେ ଅନୁବାଦ କରି ଅନୁପମ ଅନୁବାଦକୁଶଳତାର ନିଦର୍ଶନ ରଖିଯାଇଅଛନ୍ତି ।

ସାହିତ୍ୟସାଧକ ଫକୀରମୋହନଙ୍କ ମୌଳିକତାର ଅନବଦ୍ୟ ସ୍ୱର ସର୍ବ ପ୍ରଥମେ ଧ୍ୱନିତ ହୋଇଥିଲା ତାହାଙ୍କ 'ଉତ୍କଳ ଭ୍ରମଣ' ଖଣ୍ଡ କାବ୍ୟରେ । ଉତ୍କଳର ମର୍ମକଥା ଓ ଆଶା ଆକାଙ୍କ୍ଷାକୁ ଯଥାର୍ଥତଃ ଉପଲବ୍ଧି କରି ସେ ତାହାକୁ ଅତ୍ୟନ୍ତ ହାସ୍ୟରସାତ୍ମକ ଭାବରେ ଏହି କ୍ଷୁଦ୍ର ରଚନାଟିରେ ବ୍ୟକ୍ତ କରିଯାଇଅଛନ୍ତି । ଖ୍ରୀ: ୧୮୯୨ରେ ଏହା ରଚିତ ଓ ପ୍ରକାଶିତ ହୋଇଥିଲା । ସେହି ସମୟରୁ ଫକୀରମୋହନଙ୍କ ଜୀବନର ଅବଶିଷ୍ଟ ତିରିଶ ବର୍ଷ ଅତ୍ୟନ୍ତ ସୃଜନଶୀଳ ଓ ମୂଲ୍ୟବାନ୍ । ତାହାଙ୍କ ଶ୍ରେଷ୍ଠ ରଚନାଗୁଡ଼ିକ ଏହି ଶେଷ ବୟସରେ ହିଁ ରଚିତ ହୋଇଥିଲା ।

ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ବ୍ୟଙ୍ଗ-ପ୍ରଧାନ ଓ ହାସ୍ୟରସାତ୍ମକ ରଚନାର ସ୍ୱଳ୍ପତା ପରିଲକ୍ଷିତ ହୁଏ । 'ଚତୁର ବିନୋଦ' ଓ ଅନ୍ୟ କେତେଗୋଟି କ୍ଷୁଦ୍ର ରଚନା ବ୍ୟତୀତ ଅନନ୍ୟ କୌଣସି ବ୍ୟଙ୍ଗବିଦ୍ରୂପାତ୍ମକ ରଚନା ଫକୀରମୋହନଙ୍କ ପୂର୍ବରୁ ଏକ ପ୍ରକାର ରଚିତ ହୋଇନଥିଲା କହିଲେ ଚଳେ । 'ଉତ୍କଳ ଭ୍ରମଣ' ଆଧୁନିକ ଓଡ଼ିଆ ସାହିତ୍ୟର ସର୍ବପ୍ରଥମ ବ୍ୟଙ୍ଗାତ୍ମକ ଖଣ୍ଡକାବ୍ୟ । 'ଉତ୍କଳ ଭ୍ରମଣ' ଆରମ୍ଭରେ କବିଙ୍କର ଉତ୍କଳ-ସରସ୍ୱତୀ ସାରଳାଙ୍କ ଆଶୀର୍ବାଦ ଭିକ୍ଷା କପରି ହାସ୍ୟୋଦ୍ଦୀପକ ତାହାର କିଞ୍ଚିତ ନମୁନା ଏଠାରେ ଦିଆଯାଇପାରେ ।

"ବନ୍ଦଇ ସାରଳା ମାଗୋ ଝଂକଡ଼ବାସିନୀ
ବୀଣାବଜାଇନୀ ଦେବୀ ଅକଲଦାୟିନୀ ।
ଭୁମ୍ଭର ଅଭ୍ୟାସ କବି କଣ୍ଠେ ବସିବାର
ମୋ ପର ସେପରି କରନାହିଁ ଅବିଚାର ।
କଣ୍ଠରେ ବସିଲେ ହୋଇଯିବି ସେ ହାଉଡ଼ା
କପରି ଲେଖିବି ଆଉ ଗ୍ରନ୍ଥ ଦୁଇ ପୁଡ଼ା ?"

ତତ୍‌କାଳୀନ ଇଂରାଜୀ ଶିକ୍ଷାଭିମାନୀ ଲୋକମାନେ ଆଧୁନିକତା ନାମରେ କପରି ପ୍ରାଚୀନ ସଂସ୍କୃତି ଓ ସ୍ୱଦେଶର ରୀତି ନୀତିକୁ ହତାଦର କରୁଥିଲେ, ତାହା ବର୍ଣ୍ଣନା କରି ତଥା ଏତାଦୃଶ ବ୍ୟକ୍ତିମାନଙ୍କୁ ବ୍ୟଙ୍ଗ କରି କବି ଏହି ପୁସ୍ତକରେ ଲେଖିଥିଲେ—

"ଇଂରେଜଙ୍କୁ ହେଉଥାଅ ଦିନ ରାତି ଘୋଷି
ନଛୁଅଁ ପଛକେ ପାଣି ପଦାଆଡ଼େ ଆସି ।
ନର୍ଦ୍ଦମ ଶରୀରେ ପିନ୍ଧି ବନାତର କୋଟ୍
ଫିଙ୍ଗିଦେଇ ଛେନା ବଡ଼ା ଖାଅ ବିସକୋଟ୍ ।

× × × ×

ଠିଆହୋଇ ମୁତ ଅବା ଘଷ ନାହିଁ ଦାନ୍ତ
ଇଂରେଜ ନହେବ ଥିବ ଓଡ଼ିଆ ଏକାନ୍ତ ।

ମୟୂର ଲାଞ୍ଜକୁ ଗୁଞ୍ଜି ବୁଲି ନାହିଁ ଆଉ
ନହେବ ମୟୂର ଥିବ ସେ କାଉ ସେ କାଉ ।''

ଉତ୍କଳ-ଭ୍ରମଣ ବ୍ୟତୀତ କବି 'ପୁଷ୍ପମାଳା', 'ଉପହାର', 'ଅବସର ବାସରେ', 'ବୌଦ୍ଧାବତାର କାବ୍ୟ', 'ଧୂଳି', 'ପୂଜାଫୁଲ' ପ୍ରଭୃତି କାବ୍ୟ ଓ ଗୀତ କବିତା ସଂଗ୍ରହ ପ୍ରଭୃତି ରଚନା କରିଯାଇଅଛନ୍ତି । ବହୁତନ୍ତ୍ରୀ ବୀଣାପରି କାବ୍ୟ କବିତାରେ ବହୁ ଭାବ ରସର ସମ୍ମିଳିତ ସ୍ୱର ଝଙ୍କାର ଧ୍ୱନିତ ହୋଇଉଠିଛି । କବିଙ୍କର ସଂବେଦନଶୀଳ କୋମଳ ହୃଦୟ ଧରଣୀର ଧୂଳିଠାରୁ ଆରମ୍ଭକରି ଭୂମାଙ୍କ ପର୍ଯ୍ୟନ୍ତ ସମସ୍ତଙ୍କୁ ଆତ୍ମୀୟଭାବ ପୂଜାଫୁଲରେ ବରଣ କରିନେଇଛି । ପାରିବାରିକ ଜୀବନର ମାଧୁର୍ଯ୍ୟ, ବନ୍ଧୁବତ୍ସଳତା, ସ୍ୱଦେଶ ପ୍ରୀତି, ବିଶ୍ୱପ୍ରୀତି ଓ ପ୍ରକୃତିପ୍ରୀତି ସମସ୍ତଙ୍କୁ ସେ ଆଗ୍ରହରେ ଆକଣ୍ଠ ପାନକରିଅଛନ୍ତି । କବିଙ୍କର ଈଶ୍ୱରବିଶ୍ୱାସ ଥିଲା ସୁଗଭୀର । ସ୍ୱଦେଶର କଲ୍ୟାଣ ଲାଗି ଈଶ୍ୱରବିଶ୍ୱାସ ଯେ ଏକାନ୍ତ ପ୍ରୟୋଜନ, ତାହା ସେ ବହୁ କବିତାରେ ବ୍ୟକ୍ତ କରିଅଛନ୍ତି ।

'ଧୂଳି' ସଂକଳନସ୍ଥ ବହୁ କବିତା ଇଂରାଜୀ 'ସନେଟ୍' ବା ଚତୁର୍ଦ୍ଦଶପଦୀ କବିତା ପର୍ଯ୍ୟାୟଭୁକ୍ତ । ତାହାଛଡ଼ା ଉଚ୍ଚକୋଟିର ବହୁ କଥା-କବିତା ଓ ଶିଶୁ-କବିତା ମଧ୍ୟ ସେ ରଚନା କରିଯାଇଛନ୍ତି ।

ପୁରାଣ-ଅନୁବାଦକ ଅଥବା ବହୁ କାବ୍ୟ କବିତାର ରଚୟିତା ଭାବେ ଫକୀରମୋହନ ସ୍ମରଣୀୟ ହେଲେହେଁ ଆଧୁନିକ ଓଡ଼ିଆ କ୍ଷୁଦ୍ରଗଳ୍ପ ଓ ଉପନ୍ୟାସର ସ୍ରଷ୍ଟା ଭାବରେ ସେ ଅକ୍ଷୟ ଯଶର ଅଧିକାରୀ । ଫକୀର-ମୋହନଙ୍କ ପ୍ରତିଭାର ବିଶେଷ ଧର୍ମ ତାହାଙ୍କର ଗଳ୍ପ ଓ ଉପନ୍ୟାସରେହିଁ ନିହିତ । ଗଳ୍ପ, ଉପନ୍ୟାସ ହିଁ ଥିଲା ତାଙ୍କର ସ୍ୱକ୍ଷେତ୍ର । ଛ'ମାଣ ଆଠଗୁଣ୍ଠ; 'ମାମୁଁ', 'ପ୍ରାୟଶ୍ଚିତ୍ତ' ଓ 'ଲଛମା' ଏହି ଚାରିଗୋଟି ଉପନ୍ୟାସ ସେ ରଚନା କରିଯାଇଅଛନ୍ତି । ତାହାଙ୍କର ପ୍ରଥମ ଓ ସର୍ବଶ୍ରେଷ୍ଠ ଉପନ୍ୟାସ 'ଛମାଣ ଆଠଗୁଣ୍ଠ' ଖ୍ରୀ: ୧୮୯୮ରେ ରଚିତ ଓ ଅନ୍ୟତମ ପ୍ରସିଦ୍ଧ ଉପନ୍ୟାସ 'ପ୍ରାୟଶ୍ଚିତ୍ତ' ଖ୍ରୀ: ୧୯୧୫ରେ ପ୍ରକାଶିତ । 'ଲଛମା' ବ୍ୟତୀତ ଅନ୍ୟ ତିନିଗୋଟିଯାକ ସାମାଜିକ ଉପନ୍ୟାସ । ସମୁନ୍ନତ ଆଦର୍ଶ, ବାସ୍ତବ କଥାବସ୍ତୁ, ଜୀବନ୍ତ ଚରିତ୍ରଚିତ୍ରଣ, ସରଳ ଲୋକପ୍ରଚଳିତ ଭାଷା,

ସୁଗଭୀର ମନସ୍ତାତ୍ତ୍ୱିକ ବିଶ୍ଳେଷଣ, ପ୍ରାଞ୍ଜଳ ବର୍ଣ୍ଣନା, ପରିପାଟୀ ହାସ୍ୟ ଓ ବ୍ୟଙ୍ଗ ବିଦ୍ରୂପର ନିପୁଣ ଅଭିବ୍ୟକ୍ତି ପ୍ରଭୃତିର ସମନ୍ୱୟ ଯଦି ଏକାଧାରରେ ଓଡ଼ିଆ ସାହିତ୍ୟର କେଉଁ ରଚନାରେ ହୋଇଥାଏ, ତେବେ ତାହା କେବଳ ଫକୀରମୋହନଙ୍କ ଉପନ୍ୟାସଗୁଡ଼ିକରେ ହିଁ ସାଧିତ ହୋଇଅଛି ବୋଲି ନିଃସନ୍ଦେହରେ କୁହାଯାଇପାରେ ।

ଫକୀରମୋହନ ଥିଲେ ବିଶିଷ୍ଟ ବଙ୍ଗୀୟ ଔପନ୍ୟାସିକ ବଙ୍କିମ-ଚନ୍ଦ୍ରଙ୍କର ସମସାମୟିକ; ମାତ୍ର ବଙ୍କିମଚନ୍ଦ୍ରଙ୍କ ଅପେକ୍ଷା ଫକୀରମୋହନ ଥିଲେ ଅଧିକ ପରିମାଣରେ ବାସ୍ତବବାଦୀ ଓ ରସାନୁଭୂତିସମ୍ପନ୍ନ । ଉଭୟଙ୍କ ଉପନ୍ୟାସରୁ ତାହା ହିଁ ପ୍ରତିପନ୍ନ ହୋଇଥାଏ । ଫକୀରମୋହନଙ୍କ ସମୟକୁ ବିଭିନ୍ନ ରାଜନୈତିକ ମତବାଦ ଭାରତରେ ପ୍ରଚରିତ ହୋଇ ନ ଥିଲା; ମାତ୍ର କୌଣସି ରାଜନୈତିକ ମତବାଦର ଅନୁଗାମୀ ନ ହେଲେହେଁ ସେ ଗଳ୍ପ ଉପନ୍ୟାସରେ ଯେଉଁ ମୌଳିକତା, ଦୂରଦୃଷ୍ଟି ଓ ପୂର୍ବଦୃଷ୍ଟିର ପରିଚୟ ଦେଇଛନ୍ତି, ତାହା ଯେ କୌଣସି ସାହିତ୍ୟ ପକ୍ଷରେ ଗୌରବର ବିଷୟ । ସମାଜର ସାଧାରଣ ନରନାରୀଙ୍କୁ ସେ ସାହିତ୍ୟ ଦରବାରରେ ସଗୌରବରେ ସମାସୀନ କରିଯାଇଅଛନ୍ତି । ତେଣୁ ଫକୀରମୋହନଙ୍କ ଦୃଷ୍ଟି ଓ ସୃଷ୍ଟି ଯେପରି ବୈପ୍ଳବିକ, ସେହିପରି ଅଭିନବ । ଦେଶର ଜନ-ସାଧାରଣଙ୍କର ଜୀବନଯାତ୍ରା ସହିତ କବିଙ୍କର ସତ୍ୟନିଷ୍ଠ ଓ ଘନିଷ୍ଠ ଆତ୍ମିକ ଯୋଗସୂତ୍ର ଥିବାରୁ ହିଁ ଏପରି ଚରିତ୍ରିକ ବୈଚିତ୍ର୍ୟ, ଚରିତ୍ର ଉପଯୋଗୀ ଭାଷା, ପରିଚ୍ଛନ୍ନ ବର୍ଣ୍ଣନା ପରିପାଟୀ ତାହାଙ୍କ ଉପନ୍ୟାସରେ ସମ୍ଭବ ହୋଇପାରିଅଛି । ତେଣୁ ଫକୀରମୋହନ ହିଁ ଯଥାର୍ଥତଃ ଓଡ଼ିଆ ଗଣସାହିତ୍ୟର ପ୍ରବର୍ତ୍ତକ ଏବଂ ଭଗିଆ, ସାରିଆ ଭଳି ଅନାଖ୍ୟାତ, ଅବଜ୍ଞାତ ବ୍ୟକ୍ତିମାନଙ୍କର ଜୀବନ ମହାଭାରତ ଲେଖିଥିବା ଯୋଗୁ ହିଁ ଯଥାର୍ଥତଃ ବ୍ୟାସକବି ପଦବୀର ଯୋଗ୍ୟ ଅଧିକାରୀ । ତାହାଙ୍କର ଗଳ୍ପସମୂହ ମଧ୍ୟ ଅପୂର୍ବ । ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସରେ ଫକୀରମୋହନ ଅନାଦିପୁରୁଷ । ତାହାଙ୍କ ପୂର୍ବରୁ ତ କେହି ଆଧୁନିକ ରୀତିର ଗଳ୍ପ ଲେଖିନଥିଲେ । ତାହାଙ୍କ ପରେ ମଧ୍ୟ ଆଉ କେହି ଓଡ଼ିଆ କଥାଶିଳ୍ପୀ ସେହିପରି ଲେଖିବାକୁ ସମର୍ଥ ହୋଇପାରିନାହାନ୍ତି ବୋଲି କୁହାଯାଇପାରେ ।

ଫକୀରମୋହନ ସର୍ବମୋଟ କୋଡ଼ିଏ ଗୋଟି କ୍ଷୁଦ୍ର ଗଳ୍ପ ରଚନା କରି ଓଡ଼ିଆ ସାହିତ୍ୟରେ ଆଧୁନିକ କ୍ଷୁଦ୍ରଗଳ୍ପର ମାର୍ଗ ନିର୍ଦ୍ଦେଶ କରିଯାଇ-ଅଛନ୍ତି ।

ଘଟଣାବହୁଳ ଜୀବନର ପରିପକ୍ୱ ଅଭିଜ୍ଞତା ନେଇ ୫୫ ବର୍ଷ ବୟସ ପରେ କବି ଗଳ୍ପରଚନାରେ ବ୍ରତୀ ହୋଇଥିଲେ । ତେଣୁ ଏ ଗୁଡ଼ିକରେ ତାଙ୍କର ମାନବଚରିତ୍ର ସମ୍ପର୍କୀୟ ସୁଗଭୀର ଅଭିଜ୍ଞତା ଓ ତାହାର ଅନୁପମ ଅଭିବ୍ୟକ୍ତିର ପରାକାଷ୍ଠା ପରିଲକ୍ଷିତ ହୁଏ । ଏଗୁଡ଼ିକ ହିଁ ଓଡ଼ିଆ ସାରସ୍ୱତ ପୀଠରେ କବିଙ୍କର ସର୍ବୋତ୍କୃଷ୍ଟ ଅଞ୍ଜଳି । କଥାବସ୍ତୁ, ଚରିତ୍ରସୃଷ୍ଟି ଓ ରଚନାଶୈଳୀ ଦୃଷ୍ଟିରୁ ତାହାଙ୍କର ପ୍ରତ୍ୟେକଟି ଗଳ୍ପ ଅନ୍ୟଠାରୁ ସ୍ୱତନ୍ତ୍ର ଓ ଗୋଟିଏ ଗୋଟିଏ ସାର୍ଥକ ସୃଷ୍ଟି । ଚିତ୍ତବିନୋଦନ ବ୍ୟତୀତ ପ୍ରତ୍ୟେକଟି ଗଳ୍ପ ବିଶେଷ ଶିକ୍ଷା ଓ ସଂସ୍କାର ସାଧନଲାଗି ଅଭିପ୍ରେତ । ତାହାଛଡ଼ା ସେ କାଳର ଅର୍ଥାତ୍ ପ୍ରାୟ ଏକଶତ ବର୍ଷ ପୂର୍ବର ଓଡ଼ିଶାର ସାମାଜିକ, ରାଜନୈତିକ ଓ ସାଂସ୍କୃତିକ ଚିତ୍ର ମଧ୍ୟ ତାହାଙ୍କ ଗଳ୍ପଗୁଡ଼ିକରେ ପରମ ଉପଭୋଗ୍ୟ ।

ଚରିତ୍ର ସୃଷ୍ଟି ଦୃଷ୍ଟିରୁ ମଧ୍ୟ ଫକୀରମୋହନଙ୍କର ପଟାନ୍ତର ନାହିଁ । ତାଙ୍କର ଗଳ୍ପଗୁଡ଼ିକ ତାହାଙ୍କ ଉପନ୍ୟାସ ଭଳି ଚରିତ୍ର-ପ୍ରଧାନ । ପଲ୍ଲୀର ସାଧାରଣ ନରନାରୀଙ୍କ ପ୍ରେମ ମିଳନ, ଶ୍ରମ-ଅର୍ଥାଭାବ, ସୌହାର୍ଦ୍ଦ୍ୟ-ପ୍ରତାରଣା, ଲୋଭ-ଆତ୍ମତ୍ୟାଗ, ସାରଲ୍ୟ-ମିଥ୍ୟାଚାର, ଆଶାଭଙ୍ଗ ଓ ବ୍ୟର୍ଥତା, ବିଶ୍ୱାସ ଓ ଅବିଶ୍ୱାସ ପ୍ରଭୃତି ଭୁଚ୍ଛାଦପିତୁଚ୍ଛ ବିଷୟଗୁଡ଼ିକୁ ତାହାଙ୍କ ଲେଖନୀ ଦକ୍ଷତାର ସହିତ ଚିତ୍ରଣ କରିଅଛି । ତାହାଙ୍କ ରେବତୀ, ପେଟେଣ୍ଟ ମେଡ଼ିସିନ, ରାଣ୍ଡିପୁଅ ଅନନ୍ତା, ସୁନାବୋହୂ, ଧୂଳିଆ ବାବା, ଡାକ ମୁନ୍‌ସି, ବିରେଇ ବିଶାଳ, ବଗଲ ବଗୁଲି, ପ୍ରଭୃତି ଗଳ୍ପଗୁଡ଼ିକ ଚରିତ୍ରସୃଷ୍ଟି ଓ ଚିତ୍ତାକର୍ଷକ ଘଟଣାର ସରସ ଉପସ୍ଥାପନା ଦୃଷ୍ଟିରୁ ଉଚ୍ଚାଙ୍ଗ କଥା ଶିଳ୍ପସୃଷ୍ଟିର ଗୌରବ ଅର୍ଜନ କରିଅଛି ।

କବିଙ୍କ ଅନ୍ୟତମ ଶ୍ରେଷ୍ଠକୃତି ହେଉଛି ତାହାଙ୍କ ଆତ୍ମଜୀବନ ଚରିତ । ଏହା କେବଳ ଓଡ଼ିଆ ସାହିତ୍ୟର ପ୍ରଥମ ଓ ସର୍ବୋତ୍କୃଷ୍ଟ ଆତ୍ମ

ଚରିତ ନୁହେଁ, ଏହା ହେଉଛି ଓଡ଼ିଆ ସାହିତ୍ୟର ଅର୍ଦ୍ଧଶତାବ୍ଦୀବ୍ୟାପୀ ଆତ୍ମରକ୍ଷା ଓ ଆତ୍ମପ୍ରତିଷ୍ଠାର ଇତିହାସ । ସାହିତ୍ୟ ସେବା ବ୍ୟତୀତ କବିଙ୍କ ସୁଦୀର୍ଘ କର୍ମବହୁଳ ଜୀବନ ଉପରେ ଜାତିର ବିବିଧ ସମସ୍ୟା ଓ ଘଟଣା ପ୍ରବାହ ସହ ଘନିଷ୍ଠଭାବେ ସଂପୃକ୍ତ ଥିଲା, ଓଡ଼ିଶାର ବିଭିନ୍ନ ସ୍ଥାନରେ ଶାସନ ବିଭାଗୀୟ କର୍ମଚାରୀଭାବେ ଜନସେବା, ସମାଜ ସଂସ୍କାର ପ୍ରଭୃତିରେ ସେ କିପରି ଅପୂର୍ବ ଦକ୍ଷତାର ପରିଚୟ ଦେଇଯାଇଛନ୍ତି, ତାହା ଏଥିରୁ ଜଣାଯାଏ ।

ଖ୍ରୀ ୧୮୬୭ର ଲୋମହର୍ଷଣକାରୀ ନଅଙ୍କ ଦୁର୍ଭିକ୍ଷ ପରେ ଓଡ଼ିଶାରେ ଏକ ନବ ଜାଗରଣର ଓ ଜାତୀୟ ଜୀବନ ଗଠନ ଯଜ୍ଞର ସୂତ୍ରପାତ ହୋଇଥିଲା । ଏ ଯୁଗରେ ଫକୀରମୋହନ ମଧ୍ୟ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ତାହାଙ୍କ ବ୍ୟକ୍ତିଗତ ଜୀବନ କିପରି ବହୁ ବାଧା ବିପତ୍ତି-ସଂକୁଳ, ରୋମାଞ୍ଚକର ଓ ଘଟଣାବହୁଳ ଥିଲା, ସେହି ସବୁ ବିଚିତ୍ର ଘଟଣାକୁ ସେ ଅତି ପ୍ରାଞ୍ଜଳ ଓ ସରସ ଭାବରେ ଏଥିରେ ବର୍ଣ୍ଣନା କରିଯାଇଅଛନ୍ତି । ଏହି ଜୀବନ ଚରିତ ମାଧ୍ୟମରେ ଊନବିଂଶ ଶତାବ୍ଦୀର ସମାଜ ଓ ସଂସ୍କୃତି ଯେପରି ଚିତ୍ରିତ ହୋଇପାରିଛି ତାହାର ଦୃଷ୍ଟାନ୍ତର ଭାରତୀୟ ପ୍ରାନ୍ତୀୟ ସାହିତ୍ୟରେ ବିରଳ ।

ପ୍ରସଙ୍ଗକ୍ରମେ ଏଠାରେ ତାହାଙ୍କ ସୁପ୍ରସିଦ୍ଧ ଉପନ୍ୟାସ 'ଛମାଣ ଆଠଗୁଣ୍ଠର' କଥାବସ୍ତୁ ସଂକ୍ଷେପରେ ବର୍ଣ୍ଣିତ ହେଲା ।

ଗୋବିନ୍ଦପୁର ଗ୍ରାମର ଜନୈକ ନିର୍ଦ୍ଧନ ପିତୃମାତୃହୀନ ବ୍ୟକ୍ତି ରାମଚନ୍ଦ୍ର ମଙ୍ଗରାଜ ଆପଣାର ଧୂର୍ତ୍ତତା ଓ ଚତୁରତା ବଳରେ ବହୁ ସମ୍ପତ୍ତିର ଅଧିକାରୀ ହୋଇପାରିଥିଲେ । ମେଦିନୀପୁର ନିବାସୀ ଜମିଦାର ସେଖ୍ ଦିଲଦାର ମିଆଁଙ୍କର କଟକ ଜିଲ୍ଲାରେ ଥିବା ଫତେପୁର ସରଷଣ୍ଡି ନାମକ ଜମିଦାରୀର ସେ ସର୍ବରାକାର ଥିଲେ । ପ୍ରଜାଙ୍କଠାରୁ ଖଜଣା ଆଦାୟ କଲେ ହେଁ ସେ ଜମିଦାରଙ୍କୁ ତାହା ଦେଉ ନ ଥିଲେ । ପରନ୍ତୁ ସେଖ୍ ଦିଲଦାରଙ୍କୁ ସରକାରୀ ରାଜସ୍ୱ ଦେବାଲାଗି ଟଙ୍କା କରଜ ଦେଉଥିଲେ । ଏକଦା ଦିଲଦାର ମିଆଁ ନିଶାରେ ଆତ୍ମବିସ୍ମୃତ ଥିବା ସମୟରେ ସେ ତାଙ୍କଠାରୁ ତିରିଶ ହଜାର ଟଙ୍କାର ଖଣ୍ଡିଏ ତମସୁକ ଲେଖାଇ ନେଲେ ଓ

କଟକରେ ମକଦ୍ଦମା ଦାୟର କରି ଫତେପୁର ସରଷଣ୍ଡ ଜମିଦାର ଅଧିକାରୀ ହୋଇଥିଲେ । ଗ୍ରାମର ଅଭାବଗ୍ରସ୍ତ ଲୋକମାନଙ୍କୁ ଧାନ, ଟଙ୍କା ପ୍ରଭୃତି କରଜ ଦେଇ ସେମାନଙ୍କ ଧନସମ୍ପତ୍ତିକୁ ନାନା ଛନ୍ଦକପଟରେ କବଳିତ କରିବା ଥିଲା ତାଙ୍କର ପ୍ରଧାନ ଲକ୍ଷ୍ୟ । ତାହାଙ୍କ ଗୃହରେ ରହୁଥିବା ଚମ୍ପା ନାମକ ଏକ ରକ୍ଷିତା ତାଙ୍କୁ ଏହି କାର୍ଯ୍ୟରେ ସହାୟତା କରୁଥିଲା । ଚମ୍ପାର ସହାୟତାରେ ମଙ୍ଗରାଜ ଅନେକଙ୍କର ସର୍ବନାଶ ସାଧନ କରିଥିଲେ ।

ସେହି ଗ୍ରାମରେ ରହୁଥିବା ତନ୍ତୀ ଦମ୍ପତି ଭଗିଆ ଓ ସାରିଆଙ୍କର ଅତି ଉର୍ବର ଛ'ମାଣ ଆଠଗୁଣ୍ଠ ଜମିକି ନେବାଲାଗି ମଙ୍ଗରାଜ ପ୍ରଲୁବ୍ଧ ହେଲେ । ଅତ୍ୟନ୍ତ ଆନନ୍ଦରେ କାଳ ଅତିବାହିତ କରୁଥିଲେ ହେଁ ଭଗିଆ ଓ ସାରିଆ ସନ୍ତାନହୀନ ଥିବାରୁ ଚିନ୍ତିତ ଥିଲେ ଓ ଗ୍ରାମ ଦେବତୀ ମଙ୍ଗଳାଙ୍କୁ ପ୍ରାର୍ଥନା କରୁଥିଲେ । ମଙ୍ଗରାଜ ଓ ଚମ୍ପା ତାହା ଜାଣି ଏକ ଚକ୍ରାନ୍ତ କଲେ । ତାହାଙ୍କ ପରାମର୍ଶରେ ମଙ୍ଗଳାଙ୍କ ପୂଜକ ସନାତନ ମଙ୍ଗଳାଙ୍କୁ ପୂଜା ଦେବାକୁ ଠାକୁରାଣୀଙ୍କ ଆଦେଶ ହୋଇଛି ବୋଲି ଭଗିଆ ଓ ସାରିଆଙ୍କୁ କହିଲା । ସନ୍ତାନ ହେବା ଉଦ୍ଦେଶ୍ୟରେ ସେମାନେ ପୂଜା ଦେବାକୁ ସମ୍ମତ ହେଲେ । ମଙ୍ଗରାଜଙ୍କ ପରାମର୍ଶକ୍ରମେ ଠାକୁରାଣୀଙ୍କ ଅସ୍ଥାନ ତଳେ ଖୋଳା ହୋଇଥିବା ଗାତ ଭିତରେ ଜଣେ ଲୋକ ପୂଜା ପୂର୍ବରୁ ଲୁଚି ରହିଲା । ସାରିଆ ଭଗିଆ ଠାକୁରାଣୀଙ୍କୁ ପୂଜା ଦେଇ ପ୍ରଣାମ କଲାବେଳେ ତାଙ୍କ ଆସ୍ଥାନ ତଳେ ରହିଥିବା ଲୋକଟି କହିଲା—"ଆଲୋ ସାରିଆ, ତୁ ମୋର ଦେଉଳ ତୋଳି ଦେ, ତୋର ଢେର ଟଙ୍କା ସୁନା ହେବ, ତୋର ତିନିଗୋଟି ପୁଅ ହେବେ । ମୋ ଆଜ୍ଞା ନ ମାନିଲେ ଭଗିଆ ବେକ ମୋଡ଼ିଦେବି ।"

ସରଳ ବିଶ୍ବାସୀ ଭଗିଆ ସାରିଆ ଏହାକୁ ସ୍ୱୟଂ ଠାକୁରାଣୀଙ୍କ ଆଜ୍ଞା ମନେକରି ତାହାଙ୍କ ଦେଉଳ ତୋଳାଇ ଦେବାକୁ ରାଜି ହେଲେ । ମନ୍ଦିର ତୋଳାଇବା ଲାଗି ଭଗିଆ ଚମ୍ପା ଓ ସନା ଭଣ୍ଡାରୀ କପଟତାପୂର୍ଣ୍ଣ କଥାରେ ଭୁଲି ମଙ୍ଗରାଜଙ୍କଠାରୁ ଟଙ୍କା କରଜ ଆଣିଲା । ଏଥିପାଇଁ ସେ ତାହାର ସର୍ବସ୍ୱ ଛ'ମାଣ ଆଠଗୁଣ୍ଠ ଜମିକୁ ମଙ୍ଗରାଜଙ୍କୁ କଣ୍ଟ କବଲା କରିଦେଲା ।

ମଙ୍ଗରାଜ ଭଗିଆକୁ ଆବଶ୍ୟକ ଟଙ୍କା ଦେବା ଦୂରେଥାଉ, ଉକ୍ତ କବଲଟି ହସ୍ତଗତ ହେବାର କଛୁଦିନ ପରେ ଭଗିଆ ନାମରେ ନାଲସ କରି ତାହାର ଜମିତକ ନେଇଗଲେ, ତାହାର ଘରଡ଼ିହକୁ ନିଲାମରେ କିଣି ତାହାକୁ ଘଞ୍ଜି ଦେଲେ ଓ ସେମାନଙ୍କର ଅତି ପ୍ରିୟ 'ନେତ' ନାମକ ଗାଈଟିକୁ ମଧ୍ୟ ନେଇଗଲେ । ଏହିପରି ଭାବରେ ଅତ୍ୟନ୍ତ ଜଘନ୍ୟ ଶଠତାପୂର୍ବକ ମଙ୍ଗରାଜ ଗୋଟିଏ ପରିବାରର ସର୍ବସ୍ୱ ଅପହରଣ କରିନେଲେ । ଏହାର ପରିଣତି ସ୍ୱରୂପ ଦୁଃସହ ଦୁଃଖ ଓ ନୈରାଶ୍ୟରେ କିଂକର୍ତ୍ତବ୍ୟବିମୂଢ଼ ଭଗିଆ ଉନ୍ମାଦଗ୍ରସ୍ତ ହୋଇପଡ଼ିଲା ଓ ସର୍ବହରା ସାରିଆ ନିଜର ପ୍ରିୟତମ ସ୍ୱାମୀ, ଜମି ଓ ନେତ କଥା ଭାଳି ଭାଳି ବହୁଦିନ ଉପବାସ ରହିବା ପରେ ମଙ୍ଗରାଜଙ୍କ ଓଳିତଳେ ପଡ଼ି ମରିଗଲା ।

ମଙ୍ଗରାଜ ସାରିଆକୁ ଠେଙ୍ଗାରେ ପିଟି ମାରି ଦେଇଅଛନ୍ତି ବୋଲି ପୁଲିସ୍‌ରେ ଅଭିଯୋଗ ହେଲା । ପୁଲିସ୍ ଦାରୋଗା ମଙ୍ଗରାଜଙ୍କୁ ହାତକଡ଼ି ଦେଇ ଧରିନେଇ ମକଦ୍ଦମା ବିଚାର ଲାଗି ପଠାଇଦେଲେ । ବିଚାରରେ ଭଗିଆର ଗାଈଟିକୁ ଅପହରଣ କରିଥିବା ଯୋଗୁଁ ମଙ୍ଗରାଜଙ୍କୁ ପାଞ୍ଚଶହ ଟଙ୍କା ଜୋରିମାନା ଓ ଛଅମାସ ସଶ୍ରମ କାରାଦଣ୍ଡ ଆଦେଶ ହେଲା । ମଙ୍ଗରାଜଙ୍କ ମକଦ୍ଦମା ପରିଚାଳନା ଉଦ୍ଦେଶ୍ୟରେ ଓକିଲ ରାମରାମ ଲାଲ୍ ତାହାଙ୍କ ଅନ୍ୟାୟରେ ଅର୍ଜିତ ଭୂସମ୍ପତ୍ତିକୁ କଷ୍ଟ କବଲା କରିନେଲେ । ଜୋରିମାନା ଟଙ୍କା ଆଦାୟ ଲାଗି ତାଙ୍କର ସମସ୍ତ ଅସ୍ଥାବର ସମ୍ପତ୍ତି ନିଲାମ ହୋଇଗଲା । ଇତ୍ୟବସରରେ ମଙ୍ଗରାଜଙ୍କ ରକ୍ଷିତା ଚମ୍ପା ମଙ୍ଗରାଜଙ୍କ ସିନ୍ଦୁକରୁ ମୂଲ୍ୟବାନ ଗହଣା ପ୍ରଭୃତି ନେଇ ଗୋପନରେ ଗୋବିନ୍ଦ ନାମକ ଏକ ଭଣ୍ଡାରୀ ସହିତ ପଳାଇଗଲା । ତା'ପରେ ଅନ୍ୟତମ ଦାସୀ ମଙ୍ଗୁଆ ମଙ୍ଗରାଜଙ୍କ ବୋହୂର ଗହଣା ଓ ଟଙ୍କା ସୁନା ପ୍ରଭୃତି ଚୋରିକରି ବାବାଜୀ ଲଳିତା ଦାସଙ୍କ ସଙ୍ଗେ କେଉଁଆଡ଼େ ଚାଲିଗଲା ।

ଚମ୍ପା ଓ ଗୋବିନ୍ଦା ପଳାଇଯିବା ବେଳେ ଏକ ଚଟିଘରେ ଆଶ୍ରୟ ନେଇଥିବା ସମୟରେ ଉଭୟଙ୍କ ମଧ୍ୟରେ ମନୋମାଳିନ୍ୟ ସୃଷ୍ଟି ହେଲା ଓ ଚମ୍ପା ଗୋବିନ୍ଦାଦ୍ୱାରା ନିହତ ହେଲା । ଚମ୍ପାର ଅପହୃତ ଟଙ୍କା ସୁନା ଗଣ୍ଠିଲିଟି ନେଇ ଗୋବିନ୍ଦା ପଳାଇଯିବା ବେଳେ ନଈରେ ପଡ଼ି କୁମ୍ଭୀର କବଳିତ ହୋଇ ମୃତ୍ୟୁବରଣ କଲା ।

ମଙ୍ଗରାଜଙ୍କ ଦୁଷ୍କର୍ମରେ ବ୍ୟଥିତ ହୋଇ ମଙ୍ଗରାଜଙ୍କ ପତିପରାୟଣା, ଦୟାର୍ଦ୍ର ହୃଦୟା ପତ୍ନୀ ଇତିପୂର୍ବରୁ ମୃତ୍ୟୁବରଣ କରିଥିଲେ । ତାହାଙ୍କ ଅଯୋଗ୍ୟ ପୁତ୍ରମାନେ ଉନ୍ମାଦଗ୍ରସ୍ତ, ବ୍ୟସନୀ ଓ ନିଶାସେବୀ ହୋଇପଡ଼ିଥିଲେ । ବନ୍ଦୀ ଅବସ୍ଥାରେ ଥିବାବେଳେ ମଙ୍ଗରାଜ ଅନ୍ୟ ବନ୍ଦୀମାନଙ୍କଦ୍ୱାରା ଲାଞ୍ଛିତ ଓ ପ୍ରହୃତ ହୋଇଥିଲେ ଏବଂ ଭଗିଆ ତାଙ୍କ ନାକ କାମୁଡ଼ି ପକାଇଥିଲା । ଏହି ସବୁର ପରିଣତି ସ୍ୱରୂପ ବନ୍ଦଶାଳାରେ ମଙ୍ଗରାଜଙ୍କ ଅବସ୍ଥା ସଙ୍କଟାପନ୍ନ ହୋଇପଡ଼ିଲା । ସେଥିପାଇଁ ନିର୍ଦ୍ଧାରିତ ସମୟ ପୂର୍ବରୁ ତାଙ୍କୁ ବନ୍ଦଶାଳାରୁ ମୁକ୍ତକରି ଦିଆଗଲା । ସେ ସ୍ୱଗୃହକୁ ଆସି ସେଠାରେ ଏକାନ୍ତ ନିଃସ୍ୱ ଓ ଶୋଚନୀୟ ଭାବରେ ଅନୁତାପ କରୁଁ କରୁଁ ଇହଲୀଳା ସାଙ୍ଗ କଲେ ।



# ବୀରେଶଲିଙ୍ଗମ୍

ଆଧୁନିକ ତେଲୁଗୁ ସାହିତ୍ୟର ନିର୍ମାତା ଭାବରେ ବୀରେଶଲିଙ୍ଗମ୍ ସ୍ୱନାମଧନ୍ୟ । ସେ ଥିଲେ ଅଦ୍ଭୁତ ପ୍ରତିଭାଶାଳୀ । ଏକାଧାରରେ ବହୁ ବିଷୟରେ ସେ ଯେପରି କୃତିତ୍ୱ ଦର୍ଶାଇଥିଲେ, ତାହା ଅନନ୍ୟ ସାଧାରଣ ମନେହୁଏ । ଆଧୁନିକ ତେଲୁଗୁ ସାହିତ୍ୟର ନବଯୁଗର ସ୍ରଷ୍ଟା ନୂତନ ଗଦ୍ୟ ରୀତିର ପ୍ରବର୍ତ୍ତକ, ସାମ୍ବାଦିକତାର ଆଦି ପୁରୁଷ, ଉପନ୍ୟାସର ଜନକ ଓ ପ୍ରଥମ ନାଟ୍ୟକାର ଭାବେ ତାଙ୍କର ପ୍ରତିଷ୍ଠା ଅବିସମ୍ବାଦିତ । ତଦ୍‌ବ୍ୟତୀତ ସମାଜ ସଂସ୍କାର ଓ ନୂତନ ଶିକ୍ଷାବିସ୍ତାର କ୍ଷେତ୍ରରେ ମଧ୍ୟ ସେ ଥିଲେ ଅଗ୍ରଣୀ । ତାହାଙ୍କ ଆଜୀବନ ନିରବଚ୍ଛିନ୍ନ ସାଧନାବଳରେ ହିଁ ତେଲୁଗୁ ସମାଜ ଓ ସାହିତ୍ୟ ସଂସ୍କୃତି ବିକଶିତ ହୋଇପାରିଥିଲା । ଜୀବନରେ ଜ୍ଞାନ ଓ କର୍ମର ସୁସମନ୍ୱୟ ସେ ସଂପାଦନ କରିପାରିଥିଲେ ।

ଏକାଧାରରେ ସାହିତ୍ୟ ସୃଷ୍ଟି ଓ ସମାଜ ସଂଗଠନ କ୍ଷେତ୍ରରେ ସେ ଯେପରି ସଫଳତା ଅର୍ଜନ କରିଥିଲେ, ତାହାର ଦୃଷ୍ଟାନ୍ତ ବିରଳ । ମନେହୁଏ, ଆନ୍ଧ୍ରରେ ନବଯୁଗର ସାହିତ୍ୟ ସ୍ରଷ୍ଟା, ସମାଜ ସଂସ୍କାରକ ଓ ପ୍ରଗତିର ପଥିକୃତ ଭାବେ ସେ ଯେପରି ଥିଲେ ଏକ ଦୈବପ୍ରେରିତ ବ୍ୟକ୍ତି । ଦୁର୍ବଳ ସ୍ୱାସ୍ଥ୍ୟସତ୍ତ୍ୱେ ସେ ହୋଇପାରିଥିଲେ ଶ୍ରମକର୍ମା । ଅଭାବ ଗ୍ରସ୍ତ ମଧ୍ୟବିତ୍ତ ପରିବାରରେ ଜନ୍ମ ଗ୍ରହଣ କରିଥିଲେହେଁ କଠିନ ସାଧନାବଳରେ ସେ ହୋଇପାରିଥିଲେ ଦାନବୀର; କୁସଂସ୍କାରଗ୍ରସ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେହେଁ ଆପଣାର ସତ୍ୟସଂଧାନୀ ବିଚାରଧାରା, ଦୃଢ଼ ବିଶ୍ୱାସକୁ ସେ ଜନସାଧାରଣଙ୍କ ମନୋଭୂମିରେ ପ୍ରବେଶ କରାଇ ସମାଜ ବିପ୍ଳବର ସୂତ୍ରପାତ କରିପାରିଥିଲେ ।

## ଜୀବନ ଧାରା—

ରାଜମହେନ୍ଦ୍ରୀର ଏକ ଦରିଦ୍ର ଶିକ୍ଷିତ ବ୍ରାହ୍ମଣ ପରିବାରରେ ୧୮୪୮ ମସିହାରେ ସେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କ ପିତାଙ୍କ ନାମ ସୁବ୍ବା ରାୟୁଡୁ ଓ ମାତାଙ୍କ ନାମ ପୁନ୍ନାମା । ପୁନ୍ନାମା ଥିଲେ ନିରକ୍ଷର ଓ ଚିରରୁଗ୍ଣା । ପୁଅ ବୀରେଶ ମାତାଙ୍କଠାରୁ ଭଗ୍ନସ୍ୱାସ୍ଥ୍ୟଟିକୁ ଉତ୍ତରାଧିକାରୀ ସୂତ୍ରରେ ଲାଭ କରିଥିଲେ । ଉଦର ରୋଗ, ଶ୍ୱାସ ଓ ସର୍ଦ୍ଦି ଥିଲା ତାଙ୍କର ଆଜୀବନ ସହଚର । ଶୈଶବ ଓ କୈଶୋରରେ ବହୁ ମାରାତ୍ମକ ରୋଗ ବ୍ୟାଧି ଓ ବହୁବାର ଆକସ୍ମିକ ଦୁର୍ଘଟନା କବଳିତ ହୋଇ ସେ କୌଣସି ମତେ ମୃତ୍ୟୁ ମୁଖରୁ ବର୍ତ୍ତିଯାଇ ପାରିଥିଲେ । ତାଙ୍କୁ ମାତ୍ର ଚାରିବର୍ଷ ବୟସ ହୋଇଥାଏ । ଏହି ସମୟରେ ଆକସ୍ମିକ ଭାବେ ତାହାଙ୍କ ପିତାଙ୍କ ମୃତ୍ୟୁ ହୋଇଗଲା । ବିଧବା ମାତାଙ୍କର ପୁଅକୁ ଆଧୁନିକ ବିଦ୍ୟାଳୟରେ ପଢାଇବାକୁ ସଂଗତି ନଥିଲା । ଏଣୁ ସେ ପୁଅ ଲାଗି ଗ୍ରାମ୍ୟ ପାଠଶାଳାରେ ପଢ଼ିବାର ବ୍ୟବସ୍ଥା କରିଦେଲେ । ଏହିଠାରେ ହିଁ ତାଙ୍କର ତେଲୁଗୁ ଭାଷା ଓ ଧର୍ମଶାସ୍ତ୍ର ଅଧ୍ୟୟନର ମୂଳଦୁଆ ପଡ଼ିଥିଲା ।

ଏହାପରେ ଚାକିରି ଆଶାରେ ବୀରେଶଙ୍କୁ ଜନୈକ ଆତ୍ମୀୟଙ୍କ ଅଧୀନରେ ଶିକ୍ଷାନବିସ ହେବାକୁ ପଡ଼ିଥିଲା । ମାତ୍ର ଉଚ୍ଚଶିକ୍ଷା ପ୍ରତି ତାଙ୍କ ହୃଦୟ ଥିଲା ଅତୀବ ଆକାଙ୍କ୍ଷିତ । ଅବସର ସମୟରେ ସେ ନିଜର ଜଣେ ଆତ୍ମୀୟଙ୍କଠାରୁ ସଂସ୍କୃତ ଓ ଆପଣାର ପିତୃବ୍ୟଙ୍କଠାରୁ ଇଂରାଜୀ ଓ ଅଙ୍କ ଅଧ୍ୟୟନ କରିବାରେ ମନୋନିବେଶ କରୁଥିଲେ । ପୁଅର ଅଧ୍ୟୟନ ପ୍ରତି ଅନୁରାଗ ଦେଖି ପୁନ୍ନାମା ଖ୍ରୀ: ୧୮୬୦ରେ ସ୍ଥାନୀୟ ସରକାରୀ ଜିଲ୍ଲା ସ୍କୁଲରେ ତାଙ୍କର ନାଁ ଲେଖାଇଦେଲେ ।

ବୀରେଶଙ୍କର ଥିଲା ଅସାଧାରଣ ସ୍ମରଣ ଶକ୍ତି । ଥରେ ପଢ଼ିଲେ ପାଠ୍ୟ ବିଷୟ ତାଙ୍କର ମନେରହିଯାଉଥିଲା । ତା’ ଛଡ଼ା ସେ ଥିଲେ ନିଷ୍ଠାପର ଓ ଅଧ୍ୟବସାୟୀ । ତାଙ୍କର ବ୍ୟବହାର ଥିଲା ଆଦର୍ଶସ୍ଥାନୀୟ । ଫଳରେ ସ୍କୁଲର ସର୍ବଶ୍ରେଷ୍ଠ ଛାତ୍ରଭାବରେ ସେ ହେଲେ ପରିଗଣିତ ଓ ପ୍ରଶଂସିତ । ପାଠ୍ୟ ବହିର୍ଭୂତ ପୁସ୍ତକ ପଢ଼ିବାରେ ମଧ୍ୟ ତାଙ୍କର ଅତୀବ ଆଗ୍ରହ ପରିଲକ୍ଷିତ ହେଉଥିଲା । ତା’ଛଡ଼ା ନିର୍ଭୀକତା ଓ ଅନ୍ୟାୟ

ବିରୁଦ୍ଧରେ ପ୍ରତିବାଦ କରିବାର ସାହସିକତା ମଧ୍ୟ ସେହି ଛାତ୍ରାବସ୍ଥାରୁ ତାହାଙ୍କ ଆଚରଣରେ ପରିସ୍ଫୁଟ ହୋଇଉଠିଥିଲା ।

ସମାଜରେ ସେ ସମୟରେ ବାଲ୍ୟବିବାହ ପ୍ରଚଳିତ ଥିଲା । ସେଥିପାଇଁ ତେରବର୍ଷ ବୟସରେ ମାଆ ଓ ବଡ଼ ବାପାଙ୍କ ମନୋମତ ନିକଟବର୍ତ୍ତୀ ଗ୍ରାମର ନବମବର୍ଷୀୟା କନ୍ୟା ରାଜଲକ୍ଷ୍ମୀଙ୍କ ସହ ବୀରେଶଙ୍କର ବିବାହ ଉତ୍ସବ ସଂପାଦିତ ହୋଇଥିଲା । ଯାହାହେଉ, ପାରିବାରିକ ଅଶାନ୍ତି, ଅଭାବ ଓ ଶାରୀରିକ ପୀଡ଼ାସତ୍ତ୍ୱେ ସେ ୧୮୬୦ରେ ପ୍ରବେଶିକା ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଅଭାବବଶତଃ ଏହି ଛାତ୍ରାବସ୍ଥାରେ ସେ ଜଣେ ସ୍ଥାନୀୟ ଓକିଲଙ୍କ ଇଂରାଜୀ ଚିଠିପତ୍ର ତଦାରଖ କାମରେ ନିଯୁକ୍ତ ହୋଇଥିଲେ; ମାତ୍ର ଓକିଲଙ୍କ ମିଥ୍ୟାଚାର କାର୍ଯ୍ୟକଳାପ ଯୋଗୁ ସେ ଏହି କାମ ପରିତ୍ୟାଗ କରିଥିଲେ । ଏହି ସମୟରେ ଜନୈକ ଇଂରେଜ ଭଦ୍ରବ୍ୟକ୍ତି ତାଙ୍କୁ ତେଲୁଗୁ ଶିକ୍ଷା ଦେବାକୁ ନିୟୋଜିତ କରିଥିଲେ । ସେ ଥିଲେ ସରକାରୀ ଜିଲ୍ଲା ସ୍କୁଲରେ ପ୍ରଧାନ ଶିକ୍ଷକ । ବୀରେଶଙ୍କ ଶିକ୍ଷାଦାନ ପ୍ରଣାଳୀରେ ସନ୍ତୁଷ୍ଟ ହୋଇ ସେ ତାଙ୍କୁ ସ୍କୁଲର ସହକାରୀ ଶିକ୍ଷକଭାବେ ନିୟୋଜିତ କରିଦେଲେ । ଏହି ସ୍କୁଲରେ ଏକବର୍ଷ କାମ କଲା ପରେ ଆଇନ ପରୀକ୍ଷା ଦେବାଲାଗି ତାଙ୍କର ଅଭିଳାଷ ଜନ୍ମିଲା ଓ ସେ ନିଜେ ଘରୋଇଭାବେ ପଢ଼ି କେତେ ବର୍ଷ ମଧ୍ୟରେ ଆଇନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇଥିଲେ ।

ଇଚ୍ଛାକରିଥିଲେ ସେ ଓକିଲ ହୋଇପାରିଥାନ୍ତେ; ମାତ୍ର ସେତେବେଳର ଆଇନଜୀବୀମାନଙ୍କ ମିଥ୍ୟାଚାର ଜୀବନ ଦେଖି ଏହି ବୃତ୍ତି ପ୍ରତି ତାଙ୍କର ବିରାଗ ଜାତ ହେଲା । ସ୍ୱଳ୍ପ ଆୟସମ୍ପନ୍ନ ଶିକ୍ଷକତାକୁ ହିଁ ସେ ଆପଣାର ବୃତ୍ତିଭାବରେ ଗ୍ରହଣ କରିନେଇଥିଲେ । ଆନ୍ଧ୍ରର ତତ୍‌କାଳୀନ (ମାନ୍ଦ୍ରାଜ ରାଜ୍ୟର ଅନ୍ତର୍ଗତ) ଧଉଳି ସ୍ଥାନରେ ତାଙ୍କୁ ଶିକ୍ଷକତା କରିବାକୁ ପଡ଼ିଥିଲା । ୧୮୭୨ରେ ସେ ପ୍ରଧାନ ଶିକ୍ଷକ ପଦକୁ ଉନ୍ନୀତ ହୋଇଥିଲେ ଓ ଆଦର୍ଶ ଶିକ୍ଷକଭାବେ ଶ୍ରଦ୍ଧା ଓ ପ୍ରଶଂସାର ପାତ୍ର ହୋଇପାରିଥିଲେ ।

ସ୍କୁଲରେ ଶିକ୍ଷକତା କରିବା ସଙ୍ଗେ ସଙ୍ଗେ ସମାଜ ସେବାରେ ସେ ଆପଣାକୁ ନିୟୋଜିତ କରି ରଖିଥିଲେ । କ୍ରମେ ସମାଜ ସେବାର ଆହ୍ୱାନ ତାଙ୍କ ପକ୍ଷେ ଗୁରୁତର ମନେହେଲା ଓ ସେ ଧବଳେଶ୍ୱରମ୍‌ରେ ପ୍ରଧାନ

ଶିକ୍ଷକ ଥିବାବେଳେ ଏହି ପଦରୁ ଇସ୍ତଫା ଦେଇ ସ୍ୱଜନ୍ମସ୍ଥାନ ରାଜମହେନ୍ଦ୍ରୀକୁ ଖ୍ରୀ୧୮୭୬ରେ ଫେର ଆସିଲେ । ଏଠାରେ ତାଙ୍କୁ ଆଉ ଗୋଟିଏ ଚାକିରିର ଆହ୍ୱାନ ଆସିଲା । ତାହା ହେଉଛି, ସ୍ଥାନୀୟ ସରକାରୀ ଆର୍ଟସ କଲେଜରେ ତେଲଗୁ ଶିକ୍ଷକ ଚାକିରି ଓ ଏହାଥିଲା ପୂର୍ବାପେକ୍ଷା କମ ବେତନର । ବୀରେଶ ବନ୍ଧୁମାନଙ୍କ ପରାମର୍ଶକ୍ରମେ ଏହି ଚାକିରିକୁ ଗ୍ରହଣ କରିନେଲେ । ଏହାପରେ ଦୀର୍ଘ କୋଡ଼ିଏ ବର୍ଷ ଏହି ଚାକିରିରେ ରହି ସେ ବହୁ ଗ୍ରନ୍ଥ ରଚନା ଓ ସମାଜସେବା ଓ ବିବିଧ ଉନ୍ନୟନମୂଳକ କାର୍ଯ୍ୟରେ ଆପଣାକୁ ନିୟୋଜିତ ରଖିଥିଲେ ।

ଖ୍ରୀ ୧୮୯୩ରେ ସରକାର ତାଙ୍କୁ 'ରାୟ ବାହାଦୂର' ପଦବୀ ପ୍ରଦାନ କରି ସମ୍ମାନିତ କରିଥିଲେ । ସେତେବେଳେ ରାଜମହେନ୍ଦ୍ରୀରେ ଭଲ ମୁଦ୍ରଣାଳୟ ନ ଥିଲା । ମୁଦ୍ରଣର ସୁବ୍ୟବସ୍ଥା ଲାଗି ୧୮୯୭ରେ ସେ ମାନ୍ଦ୍ରାଜକୁ ଯାଇ ସେଠାରେ ବସବାସ କଲେ । ଚିନ୍ତାମଣି ପ୍ରେସ ସ୍ଥାପନ କରି ଆପଣାର ସମଗ୍ର ରଚନାବଳୀ ମୁଦ୍ରିତ କରାଇବାରେ ମନୋନିବେଶ କଲେ । ତାଙ୍କର ବ୍ୟକ୍ତିଗତ ପ୍ରଚେଷ୍ଟା ଓ ଦୁଇବର୍ଷର କଠିନ ପରିଶ୍ରମ ଫଳରେ ଏହା ଦଶଟି ଭାଗରେ ବିଭକ୍ତ ହୋଇ ପ୍ରକାଶ ପାଇଥିଲା । ପରବର୍ତ୍ତୀ କାଳରେ ତାହାଙ୍କ ଆତ୍ମଜୀବନୀ ଓ ତେଲଗୁ କବିମାନଙ୍କ ଜୀବନୀ ଦୁଇଟି ଭାଗରେ ପ୍ରକାଶିତ ହୋଇଥିଲା । ଏହିପରି ଭାବେ ତାଙ୍କର ସମଗ୍ର ରଚନାବଳୀ ବାର ଖଣ୍ଡରେ ବିଭକ୍ତ ଓ ଏହାର ମୋଟ ପୃଷ୍ଠା ସଂଖ୍ୟା ପ୍ରାୟ ଦଶହଜାର ।

ଦୁଇବର୍ଷ ପାଇଁ ଚାକିରିରୁ ଛୁଟିନେଇ ସେ ମାନ୍ଦ୍ରାଜ ଆସିଥିଲେ; ମାତ୍ର ସରକାର ମାନ୍ଦ୍ରାଜରେ ହିଁ ତାଙ୍କୁ ପ୍ରେସିଡେନ୍ସି କଲେଜର ପ୍ରଧାନ ତେଲଗୁ ପଣ୍ଡିତ କାର୍ଯ୍ୟରେ ଯୋଗ ଦେବାକୁ ନିର୍ଦ୍ଦେଶ ଦେଲେ । ତାହାହିଁ ହେଲା । ମାନ୍ଦ୍ରାଜରେ ଅବସ୍ଥାନ କାଳରେ ମଧ୍ୟ ସେ ସମାଜ ସଂସ୍କାର ଓ ଉନ୍ନୟନମୂଳକ କାର୍ଯ୍ୟରେ ଆତ୍ମନିୟୋଗ କରିଥିଲେ । ଖ୍ରୀ ୧୯୦୫ରେ ସେ ସରକାରୀ କାର୍ଯ୍ୟରୁ ଅବ୍ୟାହତି ପାଇ ମାନ୍ଦ୍ରାଜରୁ ବିଦାୟ ନେଇ ପୁନଶ୍ଚ ରାଜମହେନ୍ଦ୍ରୀକୁ ଫେରି ଆସିଲେ । ବସ୍ତୁତଃ ତାଙ୍କର ଅବସରକାଳୀନ ଜୀବନ ଥିଲା ପୂର୍ବପରି କର୍ମମୁଖର । ଖ୍ରୀ ୧୯୦୭ରେ ସେ ରାଜମହେନ୍ଦ୍ରୀରେ

'ହିତକାରଣୀ ସମାଜ' ନାମକ ଏକ ଅନୁଷ୍ଠାନ ପ୍ରତିଷ୍ଠା କରିଥିଲେ ଓ ଏହି ଅନୁଷ୍ଠାନକୁ ଆପଣାର ସମସ୍ତ ଅସ୍ଥାବର ସମ୍ପତ୍ତି, ସଞ୍ଚିତ ଅର୍ଥ ଓ ପୁସ୍ତକର ସ୍ୱତ୍ୱ, ନିଜସ୍ୱ ଗ୍ରନ୍ଥାଗାର ଓ ଜୀବନବୀମାର ଉତ୍ତରାଧିକାର ପ୍ରଭୃତି ଦାନ କରିଥିଲେ ।

ସେତେବେଳକୁ ତାଙ୍କୁ ପ୍ରାୟ ଷାଠିଏ ବର୍ଷ—ବହୁବର୍ଷବ୍ୟାପୀ ଅବିଶ୍ରାମ ପରିଶ୍ରମର ଫଳରେ ଖ୍ରୀ ୧୯୦୭ ମସିହାରେ ଦିନେ ସେ ହଠାତ୍ ମୂର୍ଚ୍ଛିତ ହୋଇପଡ଼ିଲେ । ବନ୍ଧୁମାନଙ୍କ ପରାମର୍ଶକ୍ରମେ କାମରୁ ଅବ୍ୟାହତି ନେବାପାଇଁ ସେ କେତେମାସ ପାଇଁ ଭାରତର ବିଭିନ୍ନ ଅଞ୍ଚଳ ପରିଦର୍ଶନ କରିବାକୁ ସର୍ପୀକ ବହିର୍ଗତ ହେଲେ । ଏହିବର୍ଷ ଏପ୍ରିଲ୍ ମାସରେ ସେ ଶିବନାଥ ଶାସ୍ତ୍ରୀଙ୍କ ସହ କଲିକତା ଯାଉଥିବା ସମୟରେ ଭୁବନେଶ୍ୱର ଆସି ସେଠାରେ କେତେଦିନ ଅବସ୍ଥାନ କରିଥିଲେ । କଲିକତାରୁ ଫେରିବା ବେଳେ ମଧ୍ୟ ସେ କଟକ ଆସିଥିଲେ ଓ ଏଠାରେ ତାଙ୍କୁ ନାଗରିକ ସମ୍ମାନ ପ୍ରଦତ୍ତ ହୋଇଥିଲା ।

ପତ୍ନୀ ରାଜଲକ୍ଷ୍ମୀ ଥିଲେ ତାଙ୍କର ଉପଯୁକ୍ତ ସହଧର୍ମିଣୀ । ୧୯୧୦ ମସିହାରେ ଦିନେ ଅକସ୍ମାତ୍ ନିଦ୍ରିତ ଅବସ୍ଥାରେ ହୃଦରୋଗରେ ଆକ୍ରାନ୍ତ ହୋଇ ସେ ମୃତ୍ୟୁବରଣ କଲେ । ଜୀବନର ବହୁ ଦୁଃଖମୟ ଅଧ୍ୟାୟର ସାଥୀ, ସଂସ୍କାର କାର୍ଯ୍ୟର ସହକାରଣୀ ପତ୍ନୀଙ୍କ ବିୟୋଗ ବୀରେଶଙ୍କୁ ଅସହାୟ କରିଦେଲା । ଏହାପରେ ସେ ଆପଣାର ସମସ୍ତ ଉତ୍ସାହ, କର୍ମପ୍ରବଣତା, ସଂଗ୍ରାମ ମନୋବୃତ୍ତି ଓ ପ୍ରଫୁଲ୍ଲତା ହରାଇ ବସିଲେ । ସାରା ଜୀବନ ସମାଜ ସଂସ୍କାରରେ ବ୍ରତୀ ହେବା ଯୋଗୁ ତାଙ୍କର ଶତ୍ରୁଙ୍କ ସଂଖ୍ୟା କମ୍ ନଥିଲା । ଏହି ସମୟରେ ସେମାନଙ୍କ ଅପବାଦ, କୁତ୍ସାରଟନାରୁ ମଧ୍ୟ ବୀରେଶ ଅବ୍ୟାହତି ପାଇ ନ ଥିଲେ ।

୧୯୦୯ ମସିହା ଗ୍ରୀଷ୍ମକାଳରେ ବୀରେଶ ମାନ୍ଦ୍ରାଜ ଆସି ତାହାଙ୍କ ବନ୍ଧୁ କେ. ଭି. ଲକ୍ଷ୍ମଣ ରାଓଙ୍କ ଗୃହରେ ଅତିଥି ଭାବରେ ବାସ କରୁଥିଲେ । ବନ୍ଧୁଙ୍କ ଅନୁରୋଧକ୍ରମେ ସେ ଆତ୍ମଜୀବନୀର ଶେଷାଂଶ ଲେଖିବାରେ ଆତ୍ମନିୟୋଗ କଲେ । ସେତେବେଳକୁ ତାଙ୍କର ଦୃଷ୍ଟିଶକ୍ତି କ୍ଷୀଣ, ଅସ୍ୱଚ୍ଛ ଓ ହାତ ଦୁର୍ବଳ । ଯାହାହେଉ, ଅଳ୍ପ କେତେଦିନ ମଧ୍ୟରେ ପ୍ରାୟ ୪୫ ପୃଷ୍ଠା

ଲେଖା ହୋଇଗଲା । ମେ ମାସ ତା ୨୨ ରିଖ ଦିନ ସେ ଲେଖୁଥିବାବେଳେ ହଠାତ୍ କଲମଟି ତାଙ୍କ ହାତରୁ ଖସିଗଲା । ଆପଣାର ଶେଷ ମୁହୂର୍ତ୍ତ ଯେ ଆସନ୍ନ ଏହା ସେ ବୁଝିପାରିଲେ । ବନ୍ଧୁ ଲକ୍ଷ୍ମଣ ରାଓଙ୍କ ସହଯୋଗୀ ଜନୈକ ଡାକ୍ତରଙ୍କ ହାତକୁ ସେ ଅସମାପ୍ତ ପାଣ୍ଡୁଲିପିଟିକ ବଢ଼ାଇ ଦେଲେ ଓ ଆପଣାର ଶେଷ ଉକ୍ତି ଲେଖି ନେବାକୁ କହିଲେ । ଅତ୍ୟନ୍ତ ଧୀର କଣ୍ଠରେ ସେ ଯାହା କହିଥିଲେ, ତାହାର ସାରାଂଶ ହେଉଛି—ମୁଁ ଜୀବନରେ ଅନେକ କାମ ଆରମ୍ଭ କରିଥିଲି, ମାତ୍ର ତାହା ଶେଷକରି ପାରିଲି ନାହିଁ । ମୋର ଆଶା ଓ ବିଶ୍ୱାସ, ମୋର ବନ୍ଧୁ ଓ ସଂସ୍କାରକାମୀ ଜନସାଧାରଣ ଏହାକୁ ଶେଷ କରିବେ । ଆମ ଦେଶର ବହୁଲୋକ ଅଜ୍ଞତା ଓ କୁସଂସ୍କାରରେ ଜଡ଼ିତ । ସେମାନଙ୍କୁ ଶିକ୍ଷିତ କରିବା ଓ ଆଲୋକକୁ ଆଣିବା ଆପଣମାନଙ୍କ କର୍ତ୍ତବ୍ୟ । ମୋର ଅନୁରୋଧ, ସେଇ ମୂକ ଜନସାଧାରଣଙ୍କ କଲ୍ୟାଣ ଲାଗି ଆପଣ ଯଥାସାଧ୍ୟ ଶକ୍ତି ବିନିଯୋଗ କରିବେ ।

ଏହାପରେ ତାଙ୍କର କଣ୍ଠରୁଦ୍ଧ ହୋଇଗଲା ଓ ସେ ଶେଷ ନିଃଶ୍ୱାସ ତ୍ୟାଗକଲେ ।

**ସାହିତ୍ୟ ସାଧନା—**

ପ୍ରାଚୀନ ତେଲୁଗୁ କବିମାନଙ୍କ ରଚନାବଳୀ କିଶୋର ବୟସରୁ ପାଠକରି ବୀରେଶଙ୍କ ମନରେ କବି ହେବାର ଆକାଙ୍କ୍ଷା ଜାଗରିତ ହୋଇଥିଲା । ସେହି ପାରଂପାରିକ ପ୍ରାଚୀନ ଶୈଳୀରେ ସେ ସହରର ଦୁଇ ଅଧିଷ୍ଠାତ୍ରୀ ଦେବତାଙ୍କ ଉଦ୍ଦେଶ୍ୟରେ ଦୁଇଟି ଶତକ ରଚନା କରିଥିଲେ । ଏହାହିଁ ଥିଲା ତାଙ୍କର ଆଦ୍ୟ ରଚନା । ଏହାପରେ ସେ ଆଳଂକାରିକ ଶୈଳୀସମ୍ପନ୍ନ ବନ୍ଧ କବିତ୍ୱମ୍ (ଚିତ୍ରକାବ୍ୟ), ନିରୋଷ୍ଠ୍ୟକ, ଅକ୍ଷର ନିୟମ ସମ୍ବଳିତ କବିତା ରଚନାରେ ମଧ୍ୟ ମନୋନିବେଶ କରିଥିଲେ । ଏହିଭଳି ଆଳଂକାର ଓ ଛନ୍ଦ ବହୁଳ ଶୈଳୀରେ ରଚିତ ତାହାଙ୍କ 'ଉତ୍ତର ରାମାୟଣ' ପ୍ରକାଶିତ ହୋଇଥିଲା ଓ ସେ ସୁକବି ଭାବେ ପ୍ରଶଂସା ଅର୍ଜନ କରିପାରିଥିଲେ; ମାତ୍ର ଏହାପରେ ତାଙ୍କର ଦୃଷ୍ଟିକୋଣ ସଂପୂର୍ଣ୍ଣ ପରିବର୍ତ୍ତିତ ହୋଇ ଯାଇଥିଲା ଓ ତାହାଙ୍କ ସାହିତ୍ୟ ସାଧନା ଭିନ୍ନ ପଥରେ ହିଁ ଅଗ୍ରସର ହୋଇଥିଲା ।

ବ୍ରାହ୍ମଧର୍ମୀ ମତବାଦ ଓ ବିଶୃଙ୍ଖଳାବାଦ ହିଁ ତାହାଙ୍କ ସାହିତ୍ୟିକ ଚେତନାକୁ ଏକ ଅଭିନବ ରୂପ ଦେଇଥିଲା ଓ ଏକ ନୂତନ ସାହିତ୍ୟ ସୃଷ୍ଟିର ପ୍ରେରଣାରେ ସେ ହେଲେ ଉଦ୍‌ବୁଦ୍ଧ । ଏଥିପାଇଁ ପ୍ରାଚୀନ ଗଦ୍ୟ ରୀତି ଯେ ଥିଲା ସମ୍ପୂର୍ଣ୍ଣ ଅନୁପଯୁକ୍ତ ଏହା ଉପଲବ୍ଧି କରିବା ସଙ୍ଗେ ସଙ୍ଗେ ସେ ଭାବ ଅଭିବ୍ୟକ୍ତି ପାଇଁ ଉଦ୍ଭାବନ କରିଥିଲେ ଏକ ନୂତନ ଗଦ୍ୟ ରୀତି । ଏହି ଗଦ୍ୟ ରୀତି ମଧ୍ୟ ଥିଲା ତାହାଙ୍କ ସମକାଳୀନ ଗଦ୍ୟ ରୀତିଠାରୁ ଭିନ୍ନ । ବୀରେଶ ସର୍ବାଦୌ ସଂସ୍କୃତ 'ପଞ୍ଚତନ୍ତ୍ର' ଅର୍ଥ ଭାଗ ବିଗ୍ରହ ତନ୍ତ୍ରର ଅନୁବାଦ ଧାରାବାହିକ ଭାବେ ତାହାଙ୍କ ସମ୍ପାଦିତ 'ବିବେକ ବର୍ଦ୍ଧିନୀ' (୧୮୭୫) ପତ୍ରିକାରେ ପ୍ରକାଶ କରିଥିଲେ । ଏହା ପୁସ୍ତକାକାରରେ ପ୍ରକାଶିତ ହେବାପରେ ତେଲୁଗୁ ଗଦ୍ୟ ଶୈଳୀରେ ଯୁଗାନ୍ତର ସଂଘଟିତ ହେଲା । ଏହା ପାଠ୍ୟପୁସ୍ତକ ଭାବେ ମନୋନୀତ ଓ ପୁରସ୍କୃତ ମଧ୍ୟ ହୋଇଥିଲା । ବୀରେଶ ଏହାକୁ ସରଳ କଥ୍ୟ ଭାଷାରେ ହିଁ ରଚନା କରିଥିଲେ ଓ ଏହା ତାଙ୍କୁ ଆପଣାର ରଚନା ଶକ୍ତି ତଥା କଥ୍ୟ ଭାଷାର ଶକ୍ତି ବିଷୟରେ ଅବହିତ କରି ଦେଇଥିଲା । ନୂତନ ଯୁଗର ଦାବି ପୂରଣ ଲାଗି ସେ ଗଦ୍ୟକୁ ଉପଯୋଗୀ କରି ପାରିଥିଲେ ଓ ଏହା ଫଳରେ କୃତ୍ରିମ ଗଦ୍ୟ ରୀତିର ପରମ୍ପରା ଭାଙ୍ଗି ଯାଇଥିଲା ।

ଏହାପରେ ସାହିତ୍ୟ ପତ୍ରିକା ସମ୍ପାଦନାରେ ବୀରେଶ ମନୋନିବେଶ କରିଥିଲେ । ଧବଳେଶ୍ୱରମ୍‌ରେ ଶିକ୍ଷକ ଥିବା ସମୟରେ ୧୮୭୪ରେ ସେ 'ବିବେକ ବର୍ଦ୍ଧିନୀ' ଓ ପରେ 'ବିବେକ ବାଳିନୀ', 'ଗୋଦାବରୀ', 'ବିଦ୍ୟା ପ୍ରବୋଧିନୀ' ପ୍ରଭୃତି ବହୁ ପତ୍ରିକା ମାଧ୍ୟମରେ ଆପଣାର ସ୍ୱାଧୀନ ବିଚାର ଧାରା ନିର୍ଭୀକ ଓ ଯୁକ୍ତିଯୁକ୍ତ ଭାବେ ଅଭିବ୍ୟକ୍ତ କରିଥିଲେ । ସାମାଜିକ ନ୍ୟାୟ ଓ ସତ୍ୟର ପ୍ରତିଷ୍ଠା ହିଁ ଥିଲା ସାମ୍ବାଦିକ ବୀରେଶଙ୍କ ଉଦ୍ଦେଶ୍ୟ । ଏତାଦୃଶ ରଚନାବଳୀର ପ୍ରକାଶ ଯୋଗୁ ତାଙ୍କୁ ବହୁ ନିର୍ଯାତନା ଭୋଗି-ବାକୁ ପଡ଼ିଥିଲେ ହେଁ 'ବିବେକ ବର୍ଦ୍ଧିନୀ' ମାଧ୍ୟମରେ ତାଙ୍କର ବିଚାରଧାରା ପାଠକମାନଙ୍କୁ ବିପୁଳ ପରିମାଣରେ ପ୍ରଭାବିତ କରିଥିଲା । ଏହି ପତ୍ରିକାର କ୍ରମ ବର୍ଦ୍ଧମାନ ଲୋକପ୍ରିୟତା ଯୋଗୁ ଏଥିପାଇଁ ଏକ ସ୍ୱତନ୍ତ୍ର ମୁଦ୍ରଣାଳୟ ମଧ୍ୟ ବୀରେଶ ସ୍ଥାପନ କରିଥିଲେ । ୧୮୭୭ରେ ଏହା ପାକ୍ଷିକ ପତ୍ର ହୋଇ ପାରିଥିଲା ଓ ଏହା ସହ 'ହାସ୍ୟ ସଞ୍ଜୀବନୀ' ନାମକ ଏକ ମାସିକ ହୋଡ଼

ପନ୍ନ ସଂଯୁକ୍ତ ହେଲା । ପରେ ଏହା ସାପ୍ତାହିକ ହୋଇ ୧୮୯୦ ପର୍ଯ୍ୟନ୍ତ ପ୍ରଚଳିତ ଥିଲା । ଏହା ବ୍ୟତୀତ ସେ ନାରୀମାନଙ୍କ ଉଦ୍ଦେଶ୍ୟରେ 'ସତୀହିତ ବୋଧିନୀ' (୧୮୮୩-୮୯), ଧର୍ମମୂଳକ 'ସତ୍ୟ ସମ୍ବର୍ଦ୍ଧନୀ' (୧୮୯୧), 'ସତ୍ୟବାଦିନୀ' (୧୯୦୫) ପ୍ରଭୃତି ପତ୍ରିକା ମଧ୍ୟ ସମ୍ପାଦନ କରିଥିଲେ । ଏହି ପତ୍ରିକା ମାଧ୍ୟମରେ ଜନସାଧାରଣଙ୍କୁ ପ୍ରାଚୀନ ଜରାଜୀର୍ଣ୍ଣ ଜୀବନଯାତ୍ରା ଓ ଚିନ୍ତାଧାରା ପରିହାର କରି ନୂତନ ଜୀବନାଦର୍ଶ ଓ ନୂତନ ଚେତନାରେ ଉଦ୍‌ବୁଦ୍ଧ କରାଇବା ହିଁ ବୀରେଶଙ୍କର ଥିଲା ମୁଖ୍ୟ ଉଦ୍ଦେଶ୍ୟ ।

ବୀରେଶଙ୍କ ରଚିତ 'ରାଜ ଶେଖର ଚରିତମ୍' ହେଉଛି ତେଲୁଗୁ ସାହିତ୍ୟର ପ୍ରଥମ ଉପନ୍ୟାସ । ଏହା ୧୮୭୮ ମସିହାରେ 'ବିବେକ ବର୍ଦ୍ଧିନୀ' ପତ୍ରିକାରେ ଧାରାବାହିକ ଭାବେ ଆତ୍ମ ପ୍ରକାଶ କରିଥିଲା । ଇଂରାଜୀ ଉପନ୍ୟାସ, ବିଶେଷତଃ ଅଲିଭର ଗୋଲ୍ଡ଼ ସ୍ମିଥଙ୍କ 'ଭିକାର ଅଫ ଓଏକଫିଲ୍ଡ଼'ରୁ ପ୍ରେରଣା ପାଇ ସେ ଏହା ରଚନା କରିଥିଲେ । ଏହା ଏକ ବାସ୍ତବଧର୍ମୀ ସାମାଜିକ ଉପନ୍ୟାସ । ୧୯ଶ ଶତାବ୍ଦୀର ମଧ୍ୟଭାଗର ତେଲୁଗୁ ଜୀବନଯାତ୍ରାର ମାର୍ମିକ ଛବି ଲେଖକ ଏଥିରେ ଦକ୍ଷତାର ସହ ଫୁଟାଇ ପାରିଛନ୍ତି; ମାତ୍ର ସେ ଯୁଗରେ ଏହି ରଚନାଟି ପାଠକସମାଜରେ ଉପଯୁକ୍ତ ସମାଦର ଲାଭକରି ପାରି ନ ଥିଲା । ଫଳତଃ ଲେଖକ ଏହା ପରେ ଆଉ ଉପନ୍ୟାସ ଲେଖିବାକୁ ଆଗ୍ରହୀ ହୋଇ ନ ଥିଲେ; ମାତ୍ର ଏହି ଉପନ୍ୟାସର ଇଂରାଜୀ ଅନୁବାଦ (Fo tun s whe l]) (ଭାଗ୍ୟଚକ୍ର) ବିଦେଶରେ ପ୍ରଶଂସା ଅର୍ଜନ କରିପାରିଥିଲା । ପରବର୍ତ୍ତୀ କାଳରେ ୧୮୮୩ରେ ସେ 'ସତ୍ୟବତୀ ଚରିତ' ନାମକ ଏକ ନୀତିମୂଳକ ଆଖ୍ୟାନ ରଚନା କରିଥିଲେ । ଏହା ଯଥେଷ୍ଟ ଆଦୃତ ହୋଇଥିଲା । ଏତାଦୃଶ ନୀତି ପ୍ରଧାନ ଆଖ୍ୟାନ ହିଁ ଥିଲା ବୀରେଶଙ୍କ ସ୍ୱକ୍ଷେତ୍ର ଓ ଏହିପରି 'ଚନ୍ଦ୍ରମତୀ ଚରିତ' ଓ 'ସତ୍ୟ ସଞ୍ଜୀବନୀ' ନାମକ ଦୁଇଟି ଗ୍ରନ୍ଥ ମଧ୍ୟ ରଚନା କରିଥିଲେ ।

ଆଧୁନିକ ତେଲୁଗୁ ସାହିତ୍ୟର ପ୍ରଥମ ନାଟକ ଭାବେ ବୀରେଶଙ୍କ 'ବ୍ରହ୍ମ ବିବାହ' ପରିଗୃହୀତ । ୧୮୭୭ରେ ଏହା 'ହାସ୍ୟ ସଞ୍ଜୀବନୀ'ରେ ଧାରାବାହିକ ଭାବେ ପ୍ରକାଶିତ ହୋଇଥିଲା । ଏହା ଏକ ସାମାଜିକ ପ୍ରହସନ ।

ଆନ୍ଧ୍ରରେ ପ୍ରଚଳିତ ବାଲ୍ୟ ବିବାହ ବା ନାବାଳିକ ବିବାହକୁ ଏଥିରେ ବ୍ୟଙ୍ଗାତ୍ମକ ରୀତିରେ ପରିବେଷଣ କରାଯାଇଅଛି । ଏହି ନାଟକ ବିଶେଷ ଆଦୃତ ହେବା ସଙ୍ଗେ ସଙ୍ଗେ ଉକ୍ତ କୁସଂସ୍କାରଟିକୁ ସମାଜରୁ ଅପସାରଣ କରିବାରେ ପ୍ରଭୂତ ସହାୟତା କରିଥିଲା । ପରେ ଲେଖକ 'ଧର୍ମ ବୋଧିନୀ' (୧୮୯୭), 'ବିବେକ ଦୀପିକା' (ଅସମ୍ପୂର୍ଣ୍ଣ) ନାମକ ଦୁଇଟି ନାଟକ ରଚନା କରିଥିଲେ । ଏହା ଛଡ଼ା ସେ କେତେକ ପ୍ରହସନଧର୍ମୀ ନାଟିକା, ଚଉଦଟି ପ୍ରହସନ ଓ ଛତିଶ ଗୋଟି ହାସ୍ୟରସାତ୍ମକ ସଂଳାପ ମଧ୍ୟ ରଚନା କରିଥିଲେ । କହିବା ଅନାବଶ୍ୟକ ଉପନ୍ୟାସ ଓ ନାଟକରେ ମଧ୍ୟ ସେ ତେଲୁଗୁ କଥ୍ୟ ଭାଷାକୁ ନିୟୋଜିତ କରି ଏହାକୁ ଗୌରବାନ୍ୱିତ କରି ଯାଇଅଛନ୍ତି ।

ଏତଦ୍‌ବ୍ୟତୀତ ସେ ପ୍ରହ୍ଲାଦ (୧୮୮୫) ଓ କୌରବମାନଙ୍କ ଗୋଧନ ଅପହରଣ ବିଷୟକ 'ଗୋଗ୍ରହଣମ୍' ନାମକ ଦୁଇଟି ପୌରାଣିକ ନାଟକ ରଚନା କରି ଏହି କ୍ଷେତ୍ରରେ ନୂତନ ଆଦର୍ଶ ପ୍ରତିଷ୍ଠା କରିଥିଲେ । ସେକ୍‌ସପିଅରଙ୍କ 'କମେଡ଼ି ଅଫ ଏରରସ୍'କୁ ଅବଲମ୍ବନ କରି ସେ 'ଚମତ୍କାର ରତ୍ନାବଳୀ, ସେରିଡ଼ନଙ୍କ 'ଦି ଡୁଏନ୍ନା' ଓ 'ଦି ରାଇଭେଲ୍‌ସ' ଅବଲମ୍ବନରେ 'ରଙ୍ଗମଞ୍ଜରୀ' ଓ 'କଲ୍ୟାଣ କଳ୍ପବଲ୍ଲୀ' ନାଟକ ରଚନା କରିଥିଲେ । କାଳିଦାସଙ୍କ 'ଅଭିଜ୍ଞାନ ଶାକୁନ୍ତଳମ୍', 'ମାଳବିକାଗ୍ନିମିତ୍ର', କୃଷ୍ଣ ମିଶ୍ରଙ୍କ 'ପ୍ରବୋଧ ଚନ୍ଦ୍ରୋଦୟ', ଶ୍ରୀହର୍ଷଙ୍କ 'ରତ୍ନାବଳୀ' ପ୍ରଭୃତି ନାଟକକୁ ମଧ୍ୟ ସେ ଅନୁବାଦ କରିଥିଲେ ।

ବ୍ୟଙ୍ଗାତ୍ମକ ରଚନାର ପ୍ରଣେତା ଭାବେ ମଧ୍ୟ ବୀରେଶ ଲିଙ୍ଗମ୍ ପ୍ରଥମ । ତାହାଙ୍କ 'ସତ୍ୟରାଜ ପୂର୍ବଦେଶ ଯାତ୍ରାଲୁ' ସୁଇଫ୍‌ଟଙ୍କ 'ଗଲିଭରସ୍ ଟ୍ରାଭେଲ' ଆଦର୍ଶରେ ପରିକଳ୍ପିତ । ପଦ୍ୟରେ ଲିଖିତ ତାହାଙ୍କ ଅନ୍ୟତମ ବ୍ୟଙ୍ଗ ରଚନା ହେଉଛି ଅଭାଗ୍ୟୋପାଖ୍ୟାନମ୍ । ଏଥିରେ ପ୍ରାଚୀନ କାବ୍ୟ ରଚୟିତାମାନଙ୍କ ଯୌନ ଆବିଷ୍ଟତାକୁ ବ୍ୟଙ୍ଗ କରାଯାଇଅଛି ।

ଯିଶୁଖ୍ରୀଷ୍ଟ, ରାଜା ରାମମୋହନ, ମହାରାଣୀ ଭିକ୍ଟୋରିଆ ପ୍ରଭୃତି କେତେକ ପୁରୁଷଙ୍କ ଜୀବନୀ ସେ ରଚନା କରିଥିଲେ ହେଁ ତାହା ଉଚ୍ଚାଙ୍ଗ ରଚନା ଭାବେ ପରିଗଣିତ ହୁଏନାହିଁ; ମାତ୍ର ଆତ୍ମଜୀବନୀକାର ଭାବେ

ତାହାଙ୍କ ସାଫଲ୍ୟ ଉଲ୍ଲେଖଯୋଗ୍ୟ । ତାହାଙ୍କ ଆତ୍ମଜୀବନୀ 'ସ୍ୱୀୟ ଚରିତମ୍'ରେ ତାହାଙ୍କ ଅକୃତ୍ରିମ ସତ୍ୟନିଷ୍ଠା ସରସ ଭାବେ ଅଭିବ୍ୟକ୍ତି ଲାଭ କରିଅଛି । ଦରିଦ୍ର ପରିବାରରେ ଜନ୍ମଗ୍ରହଣ କରି ଶିକ୍ଷାଲାଭର ସମ୍ପୂର୍ଣ୍ଣ ସୁଯୋଗରୁ ବଞ୍ଚିତ ହୋଇ, ଶାରୀରିକ ଅକ୍ଷମତା ଓ ଉଚ୍ଚ ପଦରେ ଅଧିଷ୍ଠିତ ନ ଥିବା ସତ୍ତ୍ୱେ ସେ କିପରି ସମୃଦ୍ଧ ସାର୍ଥକ ଜୀବନ ଯାପନ କରିପାରିଥିଲେ, ତାହା ଏଥିରେ ଉତ୍ତମରୂପେ ପ୍ରକଟିତ । ଆପଣାର ଚଡ଼ଚଡ଼ା ସ୍ୱଭାବ, ଅସହିଷ୍ଣୁତା, ଏବଂ ବହୁ ବିଷୟରେ ଆତ୍ମନିୟୋଗ-ଜନିତ ତାଙ୍କର ବିଫଳତା ପ୍ରଭୃତି ତ୍ରୁଟି ବିଚ୍ୟୁତିକୁ ମଧ୍ୟ ସେ ଏଥିରେ ସ୍ୱୀକାର କରିଯାଇଅଛନ୍ତି । ସମସାମୟିକ ଇତିହାସ ରୂପେ ପରିକଳ୍ପିତ ଏହି ଗ୍ରନ୍ଥର ମହତ୍ତ୍ୱ ଅନସ୍ୱୀକାର୍ଯ୍ୟ ।

ତାହାଙ୍କ ଅନ୍ୟତମ କୃତି ହେଉଛି-'ଆନ୍ଧ୍ର କବୁଲ ଚରିତମୁ' । ୧୮୮୭ ମସିହାରେ 'ବିବେକ ବର୍ଦ୍ଧିନୀ'ରେ ଏହା ଧାରାବାହିକଭାବେ ପ୍ରକାଶିତ ହୋଇଥିଲା ଓ ୧୮୮୯ରେ ପରିବର୍ଦ୍ଧିତରୂପେ ମୁଦ୍ରିତ ହୋଇଥିଲା । ଏହା ପ୍ରାଚୀନ ତେଲୁଗୁ କବିମାନଙ୍କ ଜୀବନ ଓ କୃତି ସମ୍ପର୍କୀୟ ଏକ ଐତିହାସିକ ଗବେଷଣାପ୍ରସୂତ ଗ୍ରନ୍ଥ ଓ ଏହାକୁ ତେଲୁଗୁ ସାହିତ୍ୟର ପ୍ରଥମ ଇତିହାସ ଭାବେ ଗ୍ରହଣ କରାଯାଏ । ବୀରେଶ ବିଜ୍ଞାନର ଛାତ୍ର ନ ଥିଲେ ହେଁ ବହୁ ବର୍ଷ ଅଧ୍ୟୟନ କରି ନକ୍ଷତ୍ର ଜଗତ ଓ ଶରୀର ବିଦ୍ୟା ବିଷୟରେ ଦୁଇଟି ଉପାଦେୟ ଗ୍ରନ୍ଥ ରଚନା କରିଥିଲେ । ଏହା ତେଲୁଗୁ ଭାଷାର ବିଜ୍ଞାନ ବିଷୟକ ପ୍ରଥମ ଗ୍ରନ୍ଥ ଭାବେ ପରିଗୃହୀତ ।

ଶିଶୁ ସାହିତ୍ୟ ରଚନା କ୍ଷେତ୍ରରେ ମଧ୍ୟ ସେ ଥିଲେ ପଥପ୍ରଦର୍ଶକ । ଇଶପଙ୍କ ନୀତିକଥାକୁ ଅବଲମ୍ବନକରି ସେ ନୀତିକଥା ମଞ୍ଜରୀ ୧ମ ଓ ୨ୟ ଭାଗ ଓ ୧୦୧ଟି ନୀତିମୂଳକ କବିତା ସଂକଳନ 'ନୀତି ଦୀପିକା' ରଚନା କରିଥିଲେ । ଏତଦ୍‌ବ୍ୟତୀତ କେତେକ ଇଂରାଜୀ କବିତା ଓ କାହାଣୀର ଅନୁବାଦ, ବ୍ୟାକରଣ ପ୍ରଭୃତି ମଧ୍ୟ ସେ ଶିଶୁମାନଙ୍କ ଲାଗି ରଚନା କରିଥିଲେ ।

ଏହିପରି ଆଧୁନିକ ତେଲଗୁ ସାହିତ୍ୟର ପ୍ରାୟ ପ୍ରତ୍ୟେକଟି ବିଭାଗ ତାହାଙ୍କ ସୃଜନ ପ୍ରତିଭାର ସ୍ପର୍ଶରେ ଉଜ୍ଜ୍ୱଳ ଓ ସମୃଦ୍ଧ ହୋଇ ପାରିଥିଲା । ଏକାଧାରରେ ତେଲଗୁ ଭାଷା ଓ ସାହିତ୍ୟର ସେ ଥିଲେ ସାମ୍ବାଦିକତା ଓ ଉପନ୍ୟାସର ଜନକ, ପ୍ରଥମ ନାଟ୍ୟକାର, ପ୍ରଥମ ବିଦ୍ରୂପାତ୍ମକ ରଚନାର ସ୍ରଷ୍ଟା, ପ୍ରଥମ ଜୀବନୀ ଓ ଆତ୍ମ ଜୀବନୀକାର, ସାହିତ୍ୟର ପ୍ରଥମ ଐତିହାସିକ, ବିଜ୍ଞାନ ବିଷୟକ ରଚନାର ପଥିକୃତ ଏବଂ ଶିଶୁ ଓ ନାରୀମାନଙ୍କ ଲାଗି ପ୍ରଥମ ଲେଖକ ।

## ସମାଜ ସଂସ୍କାର ଓ ସଙ୍ଗଠନ

ବ୍ରାହ୍ମଣୋଚିତ କୌଳିକ ତଥା ପାରଂପରିକ ଗୃହରେ ବୀରେଶ ପରିବର୍ଦ୍ଧିତ ହୋଇଥିଲେ । ପ୍ରତ୍ୟହ ସେ ତିନିଥର ଗାୟତ୍ରୀ ଜପ, ଗୋଦାବରୀ ନଦୀରେ ସ୍ନାନ, ସୂର୍ଯ୍ୟ ବନ୍ଦନା, କପାଳରେ ଭସ୍ମ ଲେପନ, ମନ୍ତ୍ରପାଠ, ସାମୟିକ ଉପବାସ କରୁଥିଲେ, ମାତ୍ର ପରବର୍ତ୍ତୀକାଳରେ କେଶବ ଚନ୍ଦ୍ର ସେନ, ରାଜା ରାମମୋହନ, ଦେବେନ୍ଦ୍ରନାଥ ପ୍ରଭୃତି ବ୍ରାହ୍ମ ମତାବଲମ୍ବୀମାନଙ୍କ ରଚନାବଳୀ ଅଧ୍ୟୟନ କଲାପରେ ତାହାଙ୍କ ମନୋଭାବ ପରିବର୍ତ୍ତିତ ହୋଇ ଯାଇଥିଲା ଓ ୧୮୭୦-୭୧ ରେ ସେ ଅଦ୍ୱୈତବାଦୀ ଚିନ୍ତାଧାରାରେ ପୂର୍ଣ୍ଣ ଅନୁପ୍ରାଣିତ ହୋଇ ଯାଇଥିଲେ ।

ସେତେବେଳେ ସମାଜରେ କୁସଂସ୍କାର ପୂର୍ଣ୍ଣ ଆଧିପତ୍ୟ-ଭୂତ ପ୍ରେତ, ଗୁଣି ଗାରେଡ଼ିରେ ଲୋକେ ଖୁବ୍ ବିଶ୍ୱାସ କରୁଥିଲେ । ନାରୀମାନଙ୍କୁ ଶିକ୍ଷାଦେବା ବିପଦଜନକ, ଅଶୁଭଙ୍କର ବିବେଚିତ ହେଉଥିଲା । ବାଲ୍ୟ ବିବାହ ବହୁଳ ଭାବେ ପ୍ରଚଳିତ ଥିଲା । ପୁରୁଷମାନେ ବହୁ ବିବାହ କରିବାରେ, ଏପରିକି ବୃଦ୍ଧାବସ୍ଥାରେ ମଧ୍ୟ, ଅଭ୍ୟସ୍ତ ଥିଲେ । ବାଲ୍ୟ ବିଧବାମାନେ ଅକଥନୀୟ ଦୁର୍ଦ୍ଦଶାରେ କାଳ ଯାପନ କରୁଥିଲେ । ଉପପତ୍ନୀ ରଖିବା ଥିଲା ଏକ ଗୌରବାବହ ବ୍ୟାପାର । ସାମାଜିକ ଉତ୍ସବରେ ନର୍ତ୍ତକୀମାନଙ୍କ ନୃତ୍ୟ ଥିଲା ଅପରିହାର୍ଯ୍ୟ । ସମାଜରେ ସ୍ପୃଶ୍ୟାସ୍ପୃଶ୍ୟ ଧାରଣା ଥିଲା ଅତୀବ ଉତ୍କଟ । ସ୍ୱାଧୀନ ଚିନ୍ତାଧାରାରେ ଉଦ୍‌ବୁଦ୍ଧ ବୀରେଶ ଏହି ସମାଜ ବିରୁଦ୍ଧରେ ଲେଖନୀ ଓ ଭାଷଣ ମାଧ୍ୟମରେ ଯେପରି ସଂଗ୍ରାମ କରିଥିଲେ, ସେହିପରି କର୍ମରେ ମଧ୍ୟ ।

ସାମାଜିକ ନ୍ୟାୟ ବିଚାରର ଆଦର୍ଶ ଦୃଷ୍ଟିରୁ ଓ ଆପଣାର ସତ୍ୟାନୁଭୂତିରୁ ସେ ପ୍ରଚଳିତ ସାମାଜିକ ଦୋଷ ତ୍ରୁଟି ବିରୁଦ୍ଧରେ ଦଣ୍ଡାୟମାନ ହେଲେ । ମୂର୍ତ୍ତିପୂଜାର ଅସାରତା, ଭୂତ ପ୍ରେତ ବିଶ୍ୱାସର ଅଳୀକତା ପ୍ରତିପାଦନ କରିବା ସଙ୍ଗେ ସଙ୍ଗେ ନାରୀ ଶିକ୍ଷା ପ୍ରସାର ଓ ବିଧବା ବିବାହ ପ୍ରଚଳନରେ ବ୍ରତୀ ହେଲେ । ନର୍ତ୍ତକୀ ବ୍ୟବସ୍ଥାର ନିନ୍ଦା-କଲେ । ବହୁ ଅସ୍ପୃଶ୍ୟଙ୍କୁ ଦେଲେ ମର୍ଯ୍ୟାଦା, ଓ ବହୁ ଦୁର୍ନୀତିଗ୍ରସ୍ତ ଉତ୍କୋଚଗ୍ରାହୀ ସରକାରୀ କର୍ମଚାରୀଙ୍କ ଦୁଷ୍କର୍ମର ଆବରଣ ଖୋଲିଦେଲେ । ଏଥିପାଇଁ ସେ ତାଙ୍କୁ ବହୁ ବିପଦର ସମ୍ମୁଖୀନ ହେବାକୁ ପଡ଼ିଥିଲା ଏହା କହିବା ଅନାବଶ୍ୟକ ।

ନାରୀମାନଙ୍କୁ ଶିକ୍ଷା ଦେବା ଉଦ୍ଦେଶ୍ୟରେ ତାହାଙ୍କ ଉଦ୍ୟମରେ ବହୁ ଶିକ୍ଷାନୁଷ୍ଠାନ ପ୍ରତିଷ୍ଠା ଲାଭ କରିଥିଲା । ତାହାଙ୍କ ପ୍ରେରଣା ଫଳରେ କେତେକ ବନ୍ଧୁଙ୍କ ସହାୟତାରେ ୧୮୭୪ରେ ଧବଳେଶ୍ୱରମ୍‌ରେ ଏକ ବାଳିକା ବିଦ୍ୟାଳୟ ସ୍ଥାପିତ ହୋଇଥିଲା । ଏହା ଥିଲା ଆନ୍ଧ୍ର ଭୂମିର ପ୍ରଥମ ମହିଳା ବିଦ୍ୟାଳୟ । ଏହାପରେ ୧୮୮୧ରେ ରାଜମହେନ୍ଦ୍ରୀରେ ମଧ୍ୟ ସେ ଆଉ ଗୋଟିଏ ମହିଳା ବିଦ୍ୟାଳୟ ସ୍ଥାପନ କରିଥିଲେ ଓ ନାରୀ-ମାନଙ୍କ ଶିକ୍ଷା ଉଦ୍ଦେଶ୍ୟରେ 'ସତୀହିତ ବୋଧିନୀ' ନାମକ ଏକ ମାସିକ ପତ୍ର ପ୍ରକାଶ କରାଇଥିଲେ । ଏହାଛଡ଼ା ସେ ବୟସ୍କା ନାରୀ, ଶ୍ରମିକ ଓ ହରିଜନଙ୍କ ମଧ୍ୟରେ ଶିକ୍ଷାର ବିସ୍ତାରଲାଗି ବହୁ ନୈଶ ବିଦ୍ୟାଳୟ, ଦିନ ବେଳା ସ୍କୁଲ୍, ମଧ୍ୟ ସ୍ଥାପନ କରିଥିଲେ । ବିଧବାମାନଙ୍କ ଲାଗି ଆଶ୍ରମ କରିବା ସଙ୍ଗେ ସଙ୍ଗେ ଓ ସେଠାରେ ସେମାନଙ୍କ ଲାଗି ସାଧାରଣ ଶିକ୍ଷା ଓ ବୈଷୟିକ ଶିକ୍ଷାର ବ୍ୟବସ୍ଥା କରିଥିଲେ ।

ବିଧବା ବିବାହ ପ୍ରଚଳନ ଉଦ୍ଦେଶ୍ୟରେ ସେ ଛଅଜଣ ସହକର୍ମୀଙ୍କୁ ନେଇ ୧୮୭୮ରେ ସମାଜ ସଂସ୍କାର ସଙ୍ଘ ( 'ସଙ୍ଘ ସଂସ୍କରଣ ସମାଜ' ) ଗଠନ କରିଥିଲେ । ଏହି ସଙ୍ଘର ଉଦ୍ଦେଶ୍ୟ ପ୍ରକାଶ୍ୟ ଭାବରେ ଘୋଷିତ ହେବା ଫଳରେ ଦେଶରେ ଭୂମୂଳ ଆଲୋଡ଼ନ ସୃଷ୍ଟି ହୋଇଥିଲା । ବୀରେଶ ବକ୍ତୃତା ମଞ୍ଚରୁ ଓ ସମ୍ବାଦ ପତ୍ର ମାଧ୍ୟମରେ ଏହାର ଦୃଢ଼ ପ୍ରତିରୋଧ କରିଥିଲେ । ବନ୍ଧୁମାନଙ୍କ ଆର୍ଥିକ ଓ କାୟିକ ସହାୟତାରେ

ତାହାଙ୍କ କାକିନଡ଼ା ବାସଭବନରେ ୧୮୮୧ରେ ପ୍ରତିପକ୍ଷରୁ ସମସ୍ତ ବିରୁଦ୍ଧତାକୁ ପ୍ରତିହତ କରି ଏକ ବିଧବା ବିବାହ ସମ୍ପାଦନ କରିଥିଲେ । ଏହା ଫଳରେ ସହକର୍ମୀ ବନ୍ଧୁମାନଙ୍କ ସହିତ ତାଙ୍କୁ ଏକଘରିଆ ହେବାକୁ ପଡ଼ିଥିଲା ।

ସମସ୍ତ ପ୍ରତିକୂଳତାସତ୍ତ୍ୱେ ପରବର୍ତ୍ତୀ ଦଶବର୍ଷ ମଧ୍ୟରେ ସେ ପ୍ରାୟ ତିରିଶ ଗୋଟି ବିଧବା ବିବାହ ସମ୍ପାଦନକରି ଧର୍ମଜର ପୂର୍ବ-ପ୍ରଚଳିତ ପ୍ରଥାକୁ ଭାଙ୍ଗି ନୂତନ ପରମ୍ପରା ପ୍ରତିଷ୍ଠା କରିବାରେ ସମର୍ଥ ହୋଇ ପାରିଥିଲେ । ଏହି ବ୍ୟବସ୍ଥାକୁ କାର୍ଯ୍ୟକାରୀ କରିବା ଉଦ୍ଦେଶ୍ୟରେ ସେ ମାନ୍ଦ୍ରାଜ ଓ ରାଜମହେନ୍ଦ୍ରୀରେ ଦୁଇଟି ବିଧବାଶ୍ରମ ପ୍ରତିଷ୍ଠା କରିଥିଲେ । ଏହି କାର୍ଯ୍ୟରେ ପତ୍ନୀ ରାଜଲକ୍ଷ୍ମୀଙ୍କର ପ୍ରଭୂତ ସହାୟତା ମଧ୍ୟ ଉଲ୍ଲେଖ ଯୋଗ୍ୟ । ଅସୀମ ଧୈର୍ଯ୍ୟସମ୍ପନ୍ନା ଏହି ମନସ୍ୱିନୀ ମହିଳାଙ୍କ ବ୍ୟତୀତ ବୀରେଶଙ୍କ ପକ୍ଷେ ଏହି କାର୍ଯ୍ୟ ସମ୍ପାଦନ ଯେ ସୁକଠିନ ଥିଲା ଏହା ସହଜରେ ଅନୁମେୟ । କାରଣ ବିଭିନ୍ନ ମନୋଭାବବିଶିଷ୍ଟ ବିଧବାମାନଙ୍କୁ ପ୍ରଥମେ ନିଜ ଘରେ ଆଶ୍ରୟ ଦେବା ଓ ବିବାହ ପରେ ସେମାନଙ୍କ ବହୁ ବିଚିତ୍ର ଦାବୀ ପୂରଣର ଦାୟିତ୍ୱ ବହନ କମ୍ କଠିନ ବିଷୟ ନ ଥିଲା ।

ବ୍ୟକ୍ତିଗତ ଅର୍ଥରେ ସେ ମାନ୍ଦ୍ରାଜରେ ବ୍ରାହ୍ମ ସମାଜ ପାଇଁ ଏକ ଭବନ, ରାଜମହେନ୍ଦ୍ରୀରେ ଟାଉନହଲ, ଏବଂ ବାଙ୍ଗାଲୋରରେ ଏକ ପ୍ରାର୍ଥନା ଭବନ ନିର୍ମାଣ କରାଇଥିଲେ । ତାହାଙ୍କ ଉଦ୍ୟମ, ତତ୍ତ୍ୱାବଧାନ ଯୋଗୁଁ ହିଁ ରାଜମହେନ୍ଦ୍ରୀରେ ଏକ ଉଚ୍ଚ ଶିକ୍ଷାଳୟ ବିଧବାଶ୍ରମ, ଉଦ୍ଧାର ଆଶ୍ରମ, ଉପାସନା ଗୃହ ନିର୍ମିତ ହୋଇପାରିଥିଲା । ବାଙ୍ଗାଲୋର ଓ ରାଜମହେନ୍ଦ୍ରୀରେ ସେ ଦୁଇଟି ଉଦ୍ୟାନ ମଧ୍ୟ ରଚନା କରିଥିଲେ ।

**ସାଧନା ତରୁର ଫଳ—**

ଜୀବନବ୍ୟାପୀ ସାହିତ୍ୟ ସାଧନା, ସମାଜ ସଂସ୍କାରରେ ଲିପ୍ତ ରହିବା ଫଳରେ ବୀରେଶ ବହୁ ଘାତ ପ୍ରତିଘାତ ଓ ବ୍ୟଙ୍ଗ ବିଦ୍ରୂପର ଶରବ୍ୟ ଓ ସାମାଜିକ ନିଗ୍ରହର ପାତ୍ର ହୋଇଥିଲେହେଁ ଧୀରେ ଧୀରେ ତାହାଙ୍କ ପ୍ରତିଷ୍ଠା ବଢ଼ୁଥିଲା । ବିରୋଧସତ୍ତ୍ୱେ ତାହାଙ୍କ କର୍ମ ପ୍ରଚେଷ୍ଟା ଥିଲା

ଅନୁଷ୍ଠିତ । ଆନ୍ଧ୍ର ବାହାରେ ଭାରତର ଅନ୍ୟାନ୍ୟ ଅଞ୍ଚଳର ବିଜ୍ଞ ସଚେତନ ବୁଦ୍ଧିଜୀବୀ ଓ ସମାଜ ସଂସ୍କାରକଗଣ ତାହାଙ୍କ କାର୍ଯ୍ୟକଳାପକୁ ସପ୍ରଶଂସ ଦୃଷ୍ଟିରେ ଲକ୍ଷ୍ୟ କରୁଥିଲେ । ୧୮୯୩ରେ ତାଙ୍କୁ ରାୟବାହାଦୁର ଉପାଧିରେ ସମ୍ମାନିତ କରାଯାଇଥିଲା । ତାଙ୍କର ବହୁ ଲେଖା ପାଠ୍ୟ ପୁସ୍ତକ ବାହୀ ହେଉଥିଲା । ଏହା ତାଙ୍କର ଆୟୁର ପଥକୁ ପ୍ରଶସ୍ତ କରିଦେଇଥିଲା । ଗଦ୍ୟଶାସ୍ତ୍ରଜନକ ଓ ସର୍ବଶ୍ରେଷ୍ଠ ସାହିତ୍ୟିକଭାବେ ସେ ହୋଇଥିଲେ ସ୍ୱୀକୃତ ଓ ସମ୍ମାନିତ ।

ଶେଷ ଜୀବନରେ ଭାରତର ବିଭିନ୍ନାଞ୍ଚଳକୁ ଯାଇଥିଲାବେଳେ ସବୁଠାରେ ତାଙ୍କୁ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ପ୍ରଦତ୍ତ ହୋଇଥିଲା । ତାହାଙ୍କ ସଂପର୍କରେ ରାଜଗୋପାଳାଚାରୀ ଯଥାର୍ଥତଃ ଲେଖିଥିଲେ—'ବୀରେଶଲିଙ୍ଗମ୍ ଆବିର୍ଭୂତ ହୋଇ ନବଜୀବନ ଦାନ କରିନଥିଲେ ଆନ୍ଧ୍ରଦେଶ ଓ ଜାତି ଆଜିର ଅବସ୍ଥାକୁ ଉନ୍ନୀତହୋଇ ପାରି ନ ଥାନ୍ତା । ସେ ଭାରତବର୍ଷର ମହାମାନବମାନଙ୍କ ମଧ୍ୟରୁ ଅନ୍ୟତମ । ତାଙ୍କର ଥିଲା ସୂକ୍ଷ୍ମ ଅନ୍ତର୍ଦୃଷ୍ଟି, ଅଦମ୍ୟ ସାହାସ ଏବଂ ସକ୍ରିୟ କର୍ମୋଦ୍ୟମ । ଅସତ୍ୟ ବିରୁଦ୍ଧରେ ସେ ଯୁଦ୍ଧ କରିଥିଲେ ଓ ଖ୍ରୀମ ପରାକ୍ରମରେ ପ୍ରଗତି ସପକ୍ଷରେ ଜେହାଦ ଘୋଷଣା କରିଥିଲେ ।'



# ରବୀନ୍ଦ୍ରନାଥ ଠାକୁର

ବିଂଶ ଶତାବ୍ଦୀର ଭାରତର ଶ୍ରେଷ୍ଠ କବି ଓ ମନୀଷୀମାନଙ୍କ ମଧ୍ୟରୁ ରବୀନ୍ଦ୍ରନାଥ ଅନ୍ୟତମ । କବିଭାବେ ସେ ବିଶ୍ୱବିଖ୍ୟାତ ଓ ନୋବେଲ-ପୁରସ୍କାର ବିଜେତାଭାବେ ପ୍ରଥମ ଭାରତୀୟ ଓ ତଦ୍ୱାରା ସେ ଭାରତକୁ ଗୌରବାନ୍ୱିତ କରିଯାଇଅଛନ୍ତି ।

ସମସ୍ତ ସ୍ୱାଚ୍ଛନ୍ଦ୍ୟ ଓ ସୌଭାଗ୍ୟର ଅଧିକାରୀଭାବେ ସେ ଖ୍ରୀ ୧୮୬୧ରେ କଲିକତାର ଜୋଡ଼ାଶଙ୍ଖ ଠାକୁର ପରିବାରରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତା ହେଉଛନ୍ତି ବ୍ରାହ୍ମଧର୍ମର ପ୍ରବର୍ତ୍ତକ ଓ ସର୍ବଜନ ସମ୍ମାନିତ ମହର୍ଷି ଦେବେନ୍ଦ୍ରନାଥ ଠାକୁର । ଜୋଡ଼ାଶଙ୍ଖର ଏହି ଠାକୁର ପରିବାର ଧନ, ବିଦ୍ୟା, ସମ୍ମାନ ଓ ସାଂସ୍କୃତିକ ପରିବେଶ ଦୃଷ୍ଟିରୁ ବିଗତ ଶତାବ୍ଦୀର ଶେଷ ଭାଗରେ ଥିଲା ସୁବିଖ୍ୟାତ ।

କିଶୋର ବୟସରେ ରବୀନ୍ଦ୍ରନାଥଙ୍କୁ ଓରିଏଣ୍ଟାଲ ସେମିନାରୀ, ନର୍ମାଲ ସ୍କୁଲ, ବେଙ୍ଗଲ ଏକାଡ଼େମୀ, ସେଣ୍ଟଜେଭିୟର୍ସ ସ୍କୁଲ ପ୍ରଭୃତି ପ୍ରତିଷ୍ଠାନକୁ ବିଦ୍ୟାଶିକ୍ଷାଲାଗି ପଠାଯାଇଥିଲେହେଁ କେଉଁ ଅନୁଷ୍ଠାନରେ ସେ ନିର୍ଦ୍ଧାରିତ ପାଠ ଶେଷକରି ପାରିନଥିଲେ । ଆନୁଷ୍ଠାନିକ ପ୍ରଥାସମ୍ମତ ଶିକ୍ଷା ପ୍ରତି ତାଙ୍କର ଆଦୌ ଅନୁରାଗ ନ ଥିଲା; ମାତ୍ର ଘରେ ଗୃହଶିକ୍ଷକଙ୍କଠାରୁ ହିଁ ସେ ବହୁ ବିଷୟ ଅଧ୍ୟୟନ କରିଥିଲେ । କଳାନୁରାଗ ଥିଲା ତାଙ୍କର ସହଜାତ ଗୁଣସ୍ୱରୂପ । ସଙ୍ଗୀତ ଓ ଚିତ୍ରକଳାରେ ତାହାଙ୍କ କୃତିତ୍ୱ କିଶୋର ବୟସରୁ ହିଁ ଜଣାଯାଇଥିଲା । ତାହାଙ୍କ ବଡ଼ଭାଇ ଜ୍ୟୋତିରିନ୍ଦ୍ରନାଥ ଓ ତାଙ୍କ ପତ୍ନୀ କାଦମ୍ବରୀଙ୍କ ପ୍ରଭାବ ଓ ପ୍ରେରଣା ତାହାଙ୍କ କୈଶୋର ଓ

ଆଦ୍ୟ ଯୌବନର ରଚନାକୁ ଯେ ପ୍ରଭାବିତ କରିଥିଲ ଏହା ଅସ୍ୱୀକାର କରାଯାଇନପାରେ । ସତର ବର୍ଷ ବୟସରେ ବାରିଷ୍ଟର ପଢ଼ିବାଲାଗି ସେ ବିଲାତ ଯାଇଥିଲେ; ମାତ୍ର ଦେଢ଼ବର୍ଷ ପରେ ସେ ସ୍ୱଦେଶକୁ ଫେରିଆସିଲେ । ବାରିଷ୍ଟର ପଢ଼ାରେ କୃତିତ୍ୱ ଅର୍ଜନ ତାଙ୍କ ଭାଗ୍ୟରେ ନଥିଲା; ମାତ୍ର ଏହି ସମୟରେ ସେ ରଚନା କରିଥିଲେ 'ବନଫୁଲ', 'କବିକାହିନୀ', 'ଭାନୁସିଂହେର ପଦାବଳୀ', 'ଶୈଶବ ସଂଗୀତ' ପ୍ରଭୃତି ଚମତ୍କାର ରଚନାବଳୀ ।

ଜୋଡ଼ାଶଙ୍କ ଠାକୁର ପରିବାର ପକ୍ଷରୁ ପ୍ରକାଶିତ 'ଭାରତୀ' ଓ 'ବାଳକ' ପତ୍ରିକାରେ ସେ ନିୟମିତଭାବେ ଗଳ୍ପ, କବିତା ଲେଖୁଥିଲେ । 'ଭାରତୀ'ରେ ତାଙ୍କର ଉପନ୍ୟାସ 'କରୁଣା' ପ୍ରକାଶିତ ହୋଇଥିଲା । ବିଲାତରେ ରହୁଥିବାବେଳେ ସେ 'ଭଗ୍ନତରୀ' ରଚନା କରିଥିଲେ ।

ବିଲାତରୁ ଫେରିବାପରେ ସେ ଆପଣାକୁ କଳାର ସାଧନାରେ ନିଜାଇ ଦେଇଥିଲେ । ଏହି ସମୟରେ ଅଭିନୟ ପ୍ରତି ତାଙ୍କର ଅନୁରାଗ ଜନ୍ମିଲା । ରବୀନ୍ଦ୍ର ଥିଲେ ଦେଖିବାକୁ ଅତୀବ ସୁଶ୍ରୀ । ଜ୍ୟୋତିରୀନ୍ଦ୍ରଙ୍କ ରଚିତ 'ମାନମୟୀ' ନାଟକରେ ମଦନ ଭୂମିକାରେ ସର୍ବ ପ୍ରଥମେ ଅଭିନୟ କରି ସେ ବହୁ ପ୍ରଶଂସିତ ହୋଇଥିଲେ । ଏହାପରେ ସେ 'ବାଲ୍ମୀକି ପ୍ରତିଭା' ନାମକ ଏକ ନାଟକ ରଚନା କରିଥିଲେ । ଏହି ନାଟକଟି ମଞ୍ଚସ୍ଥ ହେଲା ଓ କବି ନିଜେ ଏଥିରେ ଅଭିନୟ କରିଥିଲେ । ତାଙ୍କର ଅଭିନୟ କୁଶଳତା ସମସ୍ତଙ୍କୁ ଚମତ୍କୃତ କରିଦେଇଥିଲା । ଖ୍ରୀ: ୧୮୮୨ରେ ତାହାଙ୍କ 'ନିର୍ଝରେର ସ୍ୱପ୍ନଭଙ୍ଗ' କବିତା ଓ 'ସଂଧ୍ୟା ସଙ୍ଗୀତ' କବିତା ସଂକଳନ ପ୍ରକାଶିତ ହୋଇ ଉଚ୍ଚ ପ୍ରଶଂସିତ ହୋଇଥିଲା ।

ଏହାପରେ ତାହାଙ୍କ 'କଡ଼ିଓକୋମଲ' 'ଚିତ୍ରାଙ୍ଗଦା' 'ବୌଠାକୁରାଣୀର ହାଟ' ପ୍ରଭୃତି ଉପନ୍ୟାସ ପ୍ରକାଶିତ ହେଲା । ତାହାଙ୍କ ରଚନାବଳୀର ଅଭିନବତ୍ୱ ଅନେକଙ୍କୁ ବିଚଳିତ କରିବା ସ୍ୱାଭାବିକ । ଏହା ଫଳରେ ବଙ୍ଗଳା ସାହିତ୍ୟର ସମାଲୋଚନା କ୍ଷେତ୍ରରେ ଏକ ରବୀନ୍ଦ୍ର ବିରୋଧୀ ଗୋଷ୍ଠୀର ସୃଷ୍ଟି ହୋଇଥିଲା ।

ଖ୍ରୀ: ୧୮୮୩ରେ ୨୨ବର୍ଷରେ ଆପଣ ଜମିଦାରୀ ସିରସ୍ତାର ଏକ କର୍ମଚାରୀଙ୍କ କନ୍ୟା ମୃଣାଳିନୀଙ୍କ ସଙ୍ଗେ ତାଙ୍କର ବିବାହ ହୋଇଥିଲା । ପରବର୍ଷ ପିତାଙ୍କ ନିର୍ଦ୍ଦେଶରେ ସେ ଆପଣା ଜମିଦାରୀ ପରିଦର୍ଶନରେ ନିଯୁକ୍ତ ହୋଇ ବଙ୍ଗ ଓ ଓଡ଼ିଶାର ବିଭିନ୍ନାଞ୍ଚଳ ଦେଖିବାର ସୁଯୋଗ ଲାଭ କରିଥିଲେ ।

ବୋଲ୍ପୁରଠାରେ ଖ୍ରୀ୧୯୦୧ରେ ସେ ଏକ ବ୍ରହ୍ମଚର୍ଯ୍ୟ ଆଶ୍ରମ ପ୍ରତିଷ୍ଠା କରିଥିଲେ । ଏହା ହିଁ ଅଧୁନା ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟରେ ପରିଣତ ହୋଇଅଛି । ଖ୍ରୀ୧୯୦୫ରେ ବଙ୍ଗ ଭଙ୍ଗ ପ୍ରସ୍ତାବକୁ କେନ୍ଦ୍ର କରି ବଙ୍ଗଳାରେ ଏକ ରାଜନୈତିକ ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ରବୀନ୍ଦ୍ରନାଥ ଏଥିରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । ଏହି ଉପଲକ୍ଷେ ସେ ରଚନା କରିଥିଲେ 'ବାଁଲାର ମାଟି, ବାଁଲାର ଜଳ' ନାମକ ଏକ ସୁପ୍ରସିଦ୍ଧ ତଥା ଜନପ୍ରିୟ ସଂଗୀତ । ସେ କଳ୍ପନାବିଳାସୀ କବି ଥିଲେହେଁ ସ୍ୱଦେଶର ସମସ୍ୟା ବିଷୟରେ ଥିଲେ ସଂପୂର୍ଣ୍ଣ ଅବହିତ; ମାତ୍ର କେତେକ ବିଷୟରେ ତାଙ୍କର ବିଚାରଧାରା ଥିଲା ଭିନ୍ନ । ପରବର୍ତ୍ତୀ କାଳରେ ଜାଲିୟାନା ୱାଲାବାଗ ହତ୍ୟାକାଣ୍ଡ (୧୩ . ୪ . ୧୯୧୯)ର ପ୍ରତିବାଦ ସ୍ୱରୂପ ସେ ବ୍ରିଟିଶ ସରକାରଙ୍କ ପ୍ରଦତ୍ତ 'ନାଇଟ' ଉପାଧିକୁ ପ୍ରତ୍ୟାଖ୍ୟାନ କରିଥିଲେ (୨୯. ୫. ୧୯୧୯) ।

କବିଙ୍କର ସାହିତ୍ୟ ସାଧନା ନାନା ପ୍ରତିକୂଳତା ସତ୍ତ୍ୱେ ଥିଲା ଅବ୍ୟାହତ । ସେ ରଚନା କରିଚାଲିଥିଲେ ଗ୍ରନ୍ଥ ପରେ ଗ୍ରନ୍ଥ । କବିତା, ଗଳ୍ପ, ଉପନ୍ୟାସ, ନାଟକ, ଗୀତିନାଟ୍ୟ ଇତ୍ୟାଦି । ଖ୍ରୀ: ୧୯୧୨ ରେ ସେ ଇଂଲଣ୍ଡ ଯାଇଥିଲେ । ସେତେବେଳକୁ ତାହାଙ୍କ 'ଗୀତାଞ୍ଜଳି' କାବ୍ୟଗ୍ରନ୍ଥଟି ପ୍ରକାଶିତ ହୋଇଥାଏ ଓ ଏହାକୁ ଇଂରେଜିରେ ଅନୁବାଦ କରି ସେ ତାହାର ପାଣ୍ଡୁଲିପିକୁ ମଧ୍ୟ ଇଂଲଣ୍ଡକୁ ନେଇଯାଇଥିଲେ । କବିଙ୍କ ପୁରାତନବନ୍ଧୁ ଓ ଇଂଲଣ୍ଡର ବିଶିଷ୍ଟ ଚିତ୍ରଶିଳ୍ପୀ ରୋଜେନଷ୍ଟାଇନ ଏହାକୁ ପାଠକରି ମୁଗ୍ଧ ହୋଇଗଲେ ଓ ତାହାଙ୍କୁ ଏଜରା ପାଉଣ୍ଡ, ଇଏଟସ ପ୍ରଭୃତି ଖ୍ୟାତନାମା କବିମାନଙ୍କ ସହ ପରିଚିତ କରାଇ ଦେଇଥିଲେ । ଖ୍ରୀ ୧୯୧୨ରେ, ଗୀତାଞ୍ଜଳିର ଇଂରାଜୀ ଅନୁବାଦ 'Song offerings'

ନାମରେ ପ୍ରକାଶିତ ହେଲା । ଏହାପରେ ସେ ଆମେରିକା ପରିଭ୍ରମଣରେ ଯାଇଥିଲେ ଓ ସେଠାରେ ବିଭିନ୍ନ ସଭାରେ ବକ୍ତୃତା ଦେଇ ଖ୍ରୀ: ୧୯୧୩ ଶେଷ ଭାଗରେ ସ୍ୱଦେଶକୁ ପ୍ରତ୍ୟାବର୍ତ୍ତନ କଲେ । ଗୀତାଞ୍ଜଳିର କବି ଭାବେ ସେ ନୋବେଲ ପୁରସ୍କାର ପାଇଥିବା ବିଷୟ ଏହି ସମୟରେ ଘୋଷିତ ହେଲା । ଏହା ଥିଲା ତତ୍କାଳୀନ ଭାରତ ପକ୍ଷେ ଏକ ସୁମହାନ ଓ ଦୁର୍ଲ୍ଲଭ ଗୌରବ । ୧୯୧୪ ମସିହାରେ କଲିକତା ବିଶ୍ୱବିଦ୍ୟାଳୟ ତାଙ୍କୁ ଡକ୍ଟରେଟ ଉପାଧିରେ ଭୂଷିତ କରିଥିଲେ ଓ ପରବର୍ଷ ତାଙ୍କୁ ବ୍ରିଟିଶ୍ ସରକାର 'ସାର୍' ଉପାଧି ପ୍ରଦାନ କରିଥିଲେ ।

ଖ୍ରୀ୧୯୧୬ରେ ସେ ଜାପାନ, ଇଂଲଣ୍ଡ, ଫ୍ରାନସ ଆମେରିକା ପ୍ରଭୃତି ଦେଶକୁ ଭ୍ରମଣ ଉଦ୍ଦେଶ୍ୟରେ ଯାତ୍ରାକରିଥିଲେ । ଖ୍ରୀ୧୯୨୪ରେ ଚୀନ ସରକାର ଓ ୧୯୨୬ରେ ଇଟାଲି ସରକାରଙ୍କ ଆମନ୍ତ୍ରଣ କ୍ରମେ ସେ ଉକ୍ତ ଦୁଇଦେଶକୁ ଯାଇଥିଲେ । ଇଟାଲିରେ ସେ ଶିଳ୍ପତତ୍ତ୍ୱବିତ୍ କେନେଦେତୋ କ୍ରୋଚେ ଓ ଫରାସୀ ମନୀଷୀ ରୋମାଁରୋଲାଁଙ୍କ ସହ ପରିଚିତ ହୋଇଥିଲେ । ୟୁରୋପର ବିଭିନ୍ନସ୍ଥାନ ଭ୍ରମଣ ଓ ବିଭିନ୍ନ ସ୍ଥାନରେ ଭାଷଣ ଦେଇ କାଏରୋ ବାଟେ ସେ ଭାରତବର୍ଷକୁ ଫେରିଆସିଲେ ।

ଖ୍ରୀ୧୯୨୭ରେ ଅଧ୍ୟାପକ ବାକ୍‌ଙ୍କ ଆମନ୍ତ୍ରଣରେ ସେ ଦୂର ପ୍ରାଚ୍ୟ ପରିଭ୍ରମଣରେ ଯାତ୍ରା କରିଥିଲେ । ୧୯୨୯ରେ କାନାଡ଼ା ଓ ୧୯୩୦ରେ ୟୁରୋପ, ଆମେରିକା, ରୁଷିଆ ଓ ପାରସ୍ୟ ଯାତ୍ରା କରିଥିଲେ । ଫ୍ରାନସର ରାଜଧାନୀ ପ୍ୟାରିସ ଓ ଜର୍ମାନୀର ରାଜଧାନୀ ବର୍ଲିନରେ ତାହାଙ୍କ ଅଙ୍କିତ ଛବିମାନଙ୍କର ଏକ ପ୍ରଦର୍ଶନୀ ଆୟୋଜିତ ହୋଇଥିଲା ଓ ଏହି ଛବିଗୁଡ଼ିକ ବିଦେଶୀ କଳା ସମାଲୋଚକମାନଙ୍କଦ୍ୱାରା ଉଚ୍ଚ ପ୍ରଶଂସିତ ହୋଇଥିଲା । ଫ୍ରାନସରେ ସେ ବିଶ୍ୱବିଖ୍ୟାତ ବୈଜ୍ଞାନିକ ଆଇନଷ୍ଟାଇନଙ୍କ ସହ ଆଳାପ କରିଥିଲେ । ବିଶ୍ୱବ୍ୟାପୀ ଭ୍ରମଣ ତାହାଙ୍କ ଦୃଷ୍ଟିଭଙ୍ଗୀକୁ ଯେ ସଂପ୍ରସାରିତ ଓ ସମୃଦ୍ଧ କରିଥିଲା, ଏହା କହିବା ଅନାବଶ୍ୟକ । ରୁଷିଆ ଭ୍ରମଣ କାଳରେ ବିପ୍ଳବୋତ୍ତର ରୁଷିଆର ସମାଜ ଓ ଶିକ୍ଷା ବ୍ୟବସ୍ଥା ଦେଖି କବି ମୁଗ୍ଧ ହୋଇ ଯାଇଥିଲେ । ଖ୍ରୀ୧୯୩୪ରେ ସେ ସିଂହଳ ପରିଦର୍ଶନ କରିଥିଲେ । ଦେଶ ବିଦେଶରେ ବକ୍ତୃତା ଦେଇ ସେ ଯେଉଁ ଅର୍ଥ ପାଉଥିଲେ, ତାହା

ତାହାଙ୍କ ପ୍ରତିଷ୍ଠିତ ଶାନ୍ତିନିକେତନର ପରିଚାଳନାରେ ହିଁ ବ୍ୟୟିତ ହେଉଥିଲା । ଶାନ୍ତିନିକେତନର ଅଭିବୃଦ୍ଧି ଥିଲା ତାଙ୍କ ଜୀବନର ଅନ୍ୟତମ ସ୍ୱପ୍ନ ଓ ସାଧନାର ବିଷୟ । ବୃଦ୍ଧାବସ୍ଥାରେ କବି ଶାନ୍ତି-ନିକେତନର ଅର୍ଥାଭାବ ଦୂର କରିବା ଉଦ୍ଦେଶ୍ୟରେ ଶାନ୍ତିନିକେତନର ଛାତ୍ର-ଛାତ୍ରୀମାନଙ୍କୁ ନେଇ ଭାରତର ବିଭିନ୍ନ ସ୍ଥାନରେ ନୃତ୍ୟନାଟ୍ୟ ପ୍ରଦର୍ଶନ କରାଇବାରେ ମନୋଯୋଗୀ ହୋଇଥିଲେ । ସେତେବେଳକୁ ତାଙ୍କୁ ୭୫ବର୍ଷ । କବିଙ୍କ ସ୍ୱାସ୍ଥ୍ୟ ବିଷୟରେ ଚିନ୍ତିତ ହୋଇ ମହାତ୍ମାଗାନ୍ଧି ୧୯୩୬ରେ ତାଙ୍କୁ ୬୦ ହଜାର ଟଙ୍କା ସାହାଯ୍ୟ କରିଥିଲେ ।

ଖ୍ରୀ ୧୯୪୦ରେ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟ କବିଙ୍କୁ ଡକ୍ଟରେଟ ଉପାଧିଦ୍ୱାରା ସମ୍ମାନିତ କରିବା ଉଦ୍ଦେଶ୍ୟରେ ଶାନ୍ତିନିକେତନରେ ଏକ ସ୍ୱତନ୍ତ୍ର ସମାବର୍ତ୍ତନ ଉତ୍ସବ କରାଇଥିଲେ ।

ବୟସ ବୃଦ୍ଧି ସହିତ କବିଙ୍କର ରଚନା ରୀତିରେ ମଧ୍ୟ ପରିବର୍ତ୍ତନ ଦେଖାଦେଇଥିଲା । କବି ଛନ୍ଦ ପ୍ରବୀଣ ହେଲେହେଁ ଶେଷ ବୟସରେ ରଚନା କରିଥିବା 'ଶ୍ୟାମଳୀ', 'ପୁନଶ୍ଚ', 'ଶେଷସପ୍ତକ' ପ୍ରଭୃତିରେ ମୁକ୍ତଛନ୍ଦ ଓ ଗଦ୍ୟଛନ୍ଦ ବ୍ୟବହାର କରିଛନ୍ତି ଓ ଏହାର ସପକ୍ଷରେ ମତ ବ୍ୟକ୍ତ କରିଅଛନ୍ତି ।

୧୯୪୧ରେ ତାହାଙ୍କ ଜନ୍ମଦିନ ଉପଲକ୍ଷେ ସେ 'ସଭ୍ୟତାର ସଙ୍କଟ' ନାମକ ଏକ ଚମତ୍କାର ରଚନା ପାଠକରି ସମସ୍ତଙ୍କୁ ବିସ୍ମିତ କରି ଦେଇଥିଲେ । ମୃତ୍ୟୁ ପର୍ଯ୍ୟନ୍ତ କାବ୍ୟ ରଚନାରୁ ତାହାଙ୍କ ଲେଖନୀ ବିରତ ହୋଇନଥିଲା । ଏହିପରି ଭାବେ ଆଜୀବନ କଳା ଚର୍ଚ୍ଚା, ସାହିତ୍ୟ ସୃଷ୍ଟି, ଶିକ୍ଷାନୁଷ୍ଠାନ ପରିଚାଳନାରେ ନିଯୁକ୍ତ ରହି ଓ ବହୁ ସମ୍ମାନ ଓ ଗୌରବ ଅର୍ଜନ କରି ୭-୮-୧୯୪୧ରେ କଲିକତାରେ ସେ ଶେଷ ନିଃଶ୍ୱାସ ତ୍ୟାଗ କରିଥିଲେ ।

ରବୀନ୍ଦ୍ରନାଥଙ୍କ ଏକକ ଚେଷ୍ଟାରେ ବଙ୍ଗଳା ସାହିତ୍ୟର ସମସ୍ତ ବିଭାବ ପରିପୁଷ୍ଟ ହେବା ସଙ୍ଗେ ସଙ୍ଗେ ଏହା ପୃଥିବୀର ଏକ ସମୁନ୍ନତ ସାହିତ୍ୟକୋଠୀକୁ ଉନ୍ନୀତ ହୋଇ ପାରିଥିଲା । କାବ୍ୟ, କ୍ଷୁଦ୍ରଗଳ୍ପ,

ଉପନ୍ୟାସ, ନାଟକ, ପ୍ରବନ୍ଧ, ସଙ୍ଗୀତ ପ୍ରଭୃତି ପ୍ରତ୍ୟେକ ବିଭାଗକୁ ତାଙ୍କର ଅବଦାନ ଅଜସ୍ର ଓ ଅପୂର୍ବ । ତାହାଙ୍କ 'ବିଶ୍ୱ ପରିଚୟ' ଗ୍ରନ୍ଥରୁ ବିଜ୍ଞାନ ପ୍ରତି ତାଙ୍କର ଆଗ୍ରହ ମଧ୍ୟ ଜଣାଯାଏ । ସେ ପ୍ରାୟ ଦୁଇହଜାରରୁ ଅଧିକ ସଙ୍ଗୀତ ରଚନା କରିଯାଇଅଛନ୍ତି । ରବୀନ୍ଦ୍ରନାଥଙ୍କ ରଚିତ ଗୀତ ହିଁ ଆଜି ଭାରତ ଓ ବାଂଲା ଦେଶର ଜାତୀୟ ସଙ୍ଗୀତ ରୂପେ ଗୃହୀତ ।

ରବୀନ୍ଦ୍ରନାଥଙ୍କ ଅର୍ଦ୍ଧଶତାବ୍ଦୀ ବ୍ୟାପୀ ନିରବଚ୍ଛିନ୍ନ ଅପୂର୍ବ ସାହିତ୍ୟ ସୃଷ୍ଟିର ପ୍ରଭାବ ବଙ୍ଗ ସାହିତ୍ୟରେ ଯୁଗାନ୍ତର ସୃଷ୍ଟି କରିବା ସଙ୍ଗେ ସଙ୍ଗେ ବଙ୍ଗ ସାହିତ୍ୟକୁ ସମୃଦ୍ଧ, ସମୁନ୍ନତ ଓ ପୃଥିବୀର ଅନ୍ୟତମ ବିଶିଷ୍ଟ ସାହିତ୍ୟ ରୂପେ ଗୌରବାନ୍ୱିତ କରିଅଛି । ଏହି ବିରାଟ, ଅତୁଳନୀୟ ପ୍ରତିଭାର କାଉଁରୀ ସ୍ପର୍ଶରେ ବଙ୍ଗଳା ସାହିତ୍ୟର କାବ୍ୟ ଓ ଗୀତିକାବ୍ୟ, ନାଟକ, ଉପନ୍ୟାସ, କ୍ଷୁଦ୍ରଗଳ୍ପ ଓ ପ୍ରବନ୍ଧ ପ୍ରଭୃତି ସକଳ ବିଭାଗ ଆଶ୍ଚର୍ଯ୍ୟଜନକ ଭାବରେ ପରିବର୍ତ୍ତିତ ହୋଇଯାଇଥିଲା । ସାହିତ୍ୟର ସର୍ବବିଧ ବିଭାଗରେ ସମାନ କୃତିତ୍ୱ ପ୍ରଦର୍ଶନକାରୀ ସ୍ରଷ୍ଟାଭାବେ ରବୀନ୍ଦ୍ରନାଥଙ୍କ କୃତିତ୍ୱ ଅନନ୍ୟ ଓ ଅସାଧାରଣ । ରବୀନ୍ଦ୍ର ପୂର୍ବ ଯୁଗର ସଦ୍ୟଜାତ ଆଧୁନିକ ସାହିତ୍ୟର ସମସ୍ତ ବିଭାଗ ରବୀନ୍ଦ୍ରନାଥଙ୍କ ରଚନାରେ ପରିପୂର୍ଣ୍ଣତା ଲାଭ କରିଥିଲା । ସେ ଏକାଧାରରେ କବି, ଔପନ୍ୟାସିକ, ନାଟ୍ୟକାର, ପ୍ରାବନ୍ଧିକ, କ୍ଷୁଦ୍ରଗଳ୍ପ ରଚୟିତା ଭାବେ କେବଳ ବଙ୍ଗ ସାହିତ୍ୟରେ କାହିଁକି ସମଗ୍ର ବିଶ୍ୱ-ସାହିତ୍ୟରେ ଚିରସ୍ମରଣୀୟ ।

ରବୀନ୍ଦ୍ରନାଥ ତାହାଙ୍କ ସାହିତ୍ୟ ସୃଷ୍ଟିର ଆଦିକାଳରେ ପୂର୍ବବର୍ତ୍ତୀ କବିମାନଙ୍କ ଆଦର୍ଶରେ ଆଖ୍ୟାନ କାବ୍ୟ ରଚନା କରିବାରେ ମନୋନିବେଶ କରିଥିଲେ ହେଁ ତାହାଙ୍କ ବୈଶିଷ୍ଟ୍ୟର ସ୍ୱର 'ସନ୍ଧ୍ୟା ସଙ୍ଗୀତ'ରେ ହିଁ ପ୍ରଥମେ ଧ୍ୱନିତ ହୋଇ ଉଠିଥିଲା । ଏହାପରେ ସେ 'ପ୍ରଭାତ ସଙ୍ଗୀତ', 'କଡ଼ି ଓ କୋମଳ', 'ଛବି ଓ ଗାନ', 'ମାନସୀ', 'ଚିତ୍ରା', 'ସୋନାର ତରୀ', 'ଚୈତାଳୀ', 'କଥା ଓ କାହିନୀ', 'କ୍ଷଣିକା', 'ନୈବେଦ୍ୟ', 'ସ୍ମରଣ', 'ଖେୟା', 'ଗୀତାଞ୍ଜଳି', 'ଗୀତିମାଲ୍ୟ', 'ଉତ୍ସର୍ଗ' ପ୍ରଭୃତି କାବ୍ୟ କବିତା ପୁସ୍ତକ ରଚନା କରିଥିଲେ । ଉତ୍ତର ଜୀବନରେ, ସେ 'ବଳାକା', 'ପଳାତକ', 'ପୂରବୀ', 'ଶିଶୁ ଭୋଲାନାଥ', 'ପୁନଶ୍ଚ', 'ଶେଷସପ୍ତକ'

ପ୍ରଭୃତି ବହୁବିଧ ଗୀତିକାବ୍ୟ ସଂଗ୍ରହ ରଚନା କରିଥିଲେ । ପ୍ରାଚୀନ ବୈଷ୍ଣବ କବିମାନଙ୍କ ଗୀତରେ ସେ ମୈଥିଳୀ ଓ ବଙ୍ଗଭାଷା ସମ୍ମିଶ୍ରଣରେ 'ଭାନୁସିଂହ ପଦାବଳୀ' ନାମକ ଏକ ଗୀତିଗୁଚ୍ଛ ପ୍ରାରମ୍ଭ ଜୀବନରେ ରଚନା କରିଥିଲେ । ପ୍ରେମ, ସୌନ୍ଦର୍ଯ୍ୟ, ଶିଳ୍ପ, ଜୀବନ, ପ୍ରକୃତି, ସମାଜ, ଶୈଶବ, ଈଶ୍ୱର ପ୍ରଭୃତି ବହୁ ବିଷୟକୁ ଉପଜୀବ୍ୟ କରି ତାହାଙ୍କର ବିଚିତ୍ର କଳ୍ପନା ଅପୂର୍ବ ବର୍ଣ୍ଣୋଜ୍ଜ୍ୱଳ କାବ୍ୟାଲୋକ ସୃଷ୍ଟି କରିଅଛି । ବହୁ ବିଚିତ୍ର ଛନ୍ଦର ପରୀକ୍ଷାରେ କବିଙ୍କର ଗୀତିକାବ୍ୟ ସରସ ଓ ରମଣୀୟ । ତାହାଙ୍କର ବହୁ ଜନପ୍ରିୟ ଓ ବିଶ୍ୱପ୍ରସିଦ୍ଧ କବିତାମାନଙ୍କ ମଧ୍ୟରୁ 'ଉର୍ବଶୀ', 'ଛବି', 'ସାହାଜାହାନ', 'ଏବାର ଫିରାଓ ମୋରେ', 'ଜୀବନ ଦେବତା', 'ସ୍ୱର୍ଗ ହଇତେ ବିଦାୟ', 'ଚଉଦଶହ ସାଲ', 'ସୋନାର ତରୀ', 'ଯେତେ ନାହିଁ ଦିବ', 'ବସୁନ୍ଧରା', 'ଦେବତାର ଗ୍ରାସ', 'ଭାରତ ତୀର୍ଥ', 'ବଳାକା', 'ଦୁଇବିଘେ ଜମି'ର ନାମ ଉଲ୍ଲେଖ କରାଯାଇପାରେ । ପ୍ରାଚୀନ ଭାରତର ଐତିହାସିକ କାହାଣୀ, କିଂବଦନ୍ତୀ ଓ ସାମାଜିକ କଥାବସ୍ତୁକୁ ଅବଲମ୍ବନ କରି ସେ 'କଥା ଓ କାହାଣୀ', 'କଳ୍ପନା', 'କ୍ଷଣିକା' ପ୍ରଭୃତି କବିତା ସଂଗ୍ରହ ରଚନା କରିଥିଲେ । ରବୀନ୍ଦ୍ରନାଥଙ୍କ କବିତାରେ ଭାରତୀୟ ଆଧ୍ୟାତ୍ମିକତାର ସ୍ୱର ମୁଖ୍ୟସ୍ଥାନ ଲାଭ କରିଅଛି । 'ନୈବେଦ୍ୟ', 'ଗୀତାଞ୍ଜଳି', ଗୀତିମାଲ୍ୟ', 'ଗୀତାଳୀ' ପ୍ରଭୃତି କାବ୍ୟ ଗ୍ରନ୍ଥରେ ଏହା ସ୍ପଷ୍ଟ ଭାବେ ବ୍ୟଞ୍ଜିତ । ମୃତ୍ୟୁର ଅବ୍ୟବହିତ ପର୍ଯ୍ୟନ୍ତ ସେ ତାଙ୍କର କାବ୍ୟ ସୃଷ୍ଟିକୁ ଅବ୍ୟାହତ ଓ ଗତିଶୀଳ ରଖିଥିଲେ ।

ବଙ୍ଗଳା ସାହିତ୍ୟରେ ବହୁବିଧ ଛନ୍ଦର ସଫଳ ପ୍ରୟୋଗକାରୀ ଭାବେ ରବୀନ୍ଦ୍ରନାଥ ଅଦ୍ୱିତୀୟ । ଇଂରେଜୀ ମୁକ୍ତଛନ୍ଦ ଗୀତରେ ବଙ୍ଗଳା ସାହିତ୍ୟରେ ସେ ମୁକ୍ତଛନ୍ଦ ଓ ଗଦ୍ୟଛନ୍ଦର ପ୍ରଥମ ପ୍ରବର୍ତ୍ତକ । ସବୁ ମହାକବିମାନଙ୍କ ଭଳି ରବୀନ୍ଦ୍ରନାଥଙ୍କୁ କୌଣସି ଏକ ସାହିତ୍ୟିକ ମତ ବା ପର୍ଯ୍ୟାୟଭୁକ୍ତ କରିବା ସମ୍ଭବପର ନୁହେଁ । ତାହାଙ୍କ ରଚନାରେ ଯେପରି ରୋମାଣ୍ଟିକ ଭାବନା ଓ ସ୍ୱପ୍ନଚାରୀ କଳ୍ପନାବିଳାସର ଅଭିବ୍ୟକ୍ତି ପରିଲକ୍ଷିତ ହୁଏ, ସେହିପରି ବାସ୍ତବ ଚେତନା, ସମାଜବାଦିତା, ସମୁଚ୍ଚମାନବବାଦିତା, ଆଧ୍ୟାତ୍ମିକ-ରହସ୍ୟବାଦିତା, ଉଦାର ଜାତୀୟତାବୋଧ, ବିଶ୍ୱପ୍ରେମ ପ୍ରଭୃତି ଆପାତବିରୋଧୀ ଗୁଣାବଳୀର ପ୍ରତିଫଳନ ଦେଖିବାକୁ ମିଳିଥାଏ ।

ରବୀନ୍ଦ୍ରନାଥ କଟର ସମସ୍ତ ଜାତୀୟ ଓ ଦେଶୀୟ ସଙ୍କୀର୍ଣ୍ଣତାର ଊର୍ଦ୍ଧ୍ୱରେ ବିଶ୍ୱମୈତ୍ରୀର ସ୍ୱପ୍ନ ଦେଖିଛନ୍ତି ତାହା ତାଙ୍କର ବହୁ କବିତାରୁ ଉପଲବ୍ଧ ହୁଏ । କବି ଲେଖିଥିଲେ—

"ସବ୍‌ଠାଇଁ ମୋର ଘର ଆଛେ ଆମି ସେଇ ଘର ମରି ଖୁଜିୟା
ଦେଶେ ଦେଶେ ମୋର ଦେଶ ଆଛେ ଆମି ସେଇ ଦେଶ ଲବ ଯୁଝିଆ ।"

ଅର୍ଥାତ୍ ;

'ସବୁଠାରେ ମୋର ଘର ଅଛି ମୁଇଁ ସେଇ ଘର ମରେ ଖୋଜିଣ,
ଦେଶେ ଦେଶେ ମୋର ଦେଶ ଅଛି ମୁଇଁ ସେଇ ଦେଶ ନେବ ଯୁଝିଣ ।'

ଆପଣା ଜୀବନର ଅନନ୍ତ ଓ ଅଖଣ୍ଡ ସତ୍ତାକୁ କବି 'ଜୀବନଦେବତା' ଭାବରେ ଗ୍ରହଣ କରି ବହୁ କବିତା ରଚନା କରିଅଛନ୍ତି । ଭାରତବର୍ଷ ତାହାଙ୍କ ନିକଟରେ 'ମହାମାନବର ସାଗର ତୀର', ମିଳନର ପୀଠ ରୂପେ ପ୍ରତୀୟମାନ ହୋଇଅଛି । ସମାଜର ଦୁଃସ୍ଥ ଦଳିତ ଜନସାଧାରଣଙ୍କ ପ୍ରତି ଅସୀମ ଅନୁକମ୍ପା ପ୍ରକାଶ କରି ସେ ଲେଖିଛନ୍ତି—

'ଏଇ ସବ ମୂଢ଼ ମ୍ଳାନ ମୂକ ମୁଖେ
ଦିତେ ହବେ ଭାଷା,
ଏଇ ସବ ଶ୍ରାନ୍ତ ଶୁଷ୍କ ଭଗ୍ନ ବୁକେ
ଧ୍ୱନିୟା ତୁଲିତେ ହବେ ଆଶା,
ଡାକିୟା ବଲିତେ ହବେ
ମୁହୂର୍ତ୍ତେ ତୁଲିୟା ଶିର ଏକତ୍ର ଦାଁଡ଼ାଓ ଦେଖି ସବେ ;

ମୋଟ ଉପରେ ଇଂରାଜୀ କବି ଶେଲୀଙ୍କ ବୈପ୍ଳବିକତା, ବାୟୁରନଙ୍କ ଉଦ୍ଦାମ ପ୍ରେମ, ଓ୍ୱାର୍ଡସଓ୍ୱାର୍ଥଙ୍କ ଶୈଶବ ପ୍ରୀତି ଓ କିଟ୍‌ସଙ୍କ ସୌନ୍ଦର୍ଯ୍ୟ-ବୋଧର ସମନ୍ୱୟ ରବୀନ୍ଦ୍ରନାଥଙ୍କ କାବ୍ୟ କବିତାରେ ହିଁ ସାର୍ଥକ ହୋଇଅଛି କହିଲେ ଅତ୍ୟୁକ୍ତି ହେବନାହିଁ ।

ବହୁ ଗୀତିନାଟ୍ୟ, ପ୍ରତୀକ ନାଟ୍ୟ ଓ ମଞ୍ଚୋପଯୋଗୀ ନାଟକ ରଚନା କରି ରବୀନ୍ଦ୍ରନାଥ ବଙ୍ଗଳା ନାଟ୍ୟ ସାହିତ୍ୟରେ ମଧ୍ୟ ଅମରତ୍ୱର

ନିଦର୍ଶନ ରଖିଯାଇ ଅଛନ୍ତି । ତାହାଙ୍କ 'ବିସର୍ଜନ', 'ରାଜା ଓ ରାଣୀ', 'ଚିରକୁମାର ସଭା' ପ୍ରଭୃତି ମଞ୍ଚୋପଯୋଗୀ ନାଟକ 'ଡାକଘର' ପ୍ରତୀକ ନାଟକ ଓ 'ବାଲ୍ମୀକି ପ୍ରତିଭା', 'ମାୟାର ଖେଳା' ଗୀତିନାଟ୍ୟ ଭାବରେ ଗ୍ରହଣୀୟ । ତ୍ରିପୁରାର ଇତିହାସକୁ ଭିତ୍ତି କରି ତାହାଙ୍କ 'ବିସର୍ଜନ' ନାଟକଟି ରଚିତ । ଏଥିରେ ପ୍ରେମ ଓ ସଂସ୍କାରର ଦ୍ୱନ୍ଦ୍ୱ ସୁନ୍ଦର ଭାବରେ ଅଭିବ୍ୟକ୍ତି ଲାଭ କରିଅଛି । ହାସ୍ୟରସାତ୍ମକ ନାଟକ ଭାବରେ 'ଚିରକୁମାର ସଭା' ଏକ ମନୋରମ ସୃଷ୍ଟି । ତାହାଙ୍କ ପ୍ରାଥମିକ ନାଟକଗୁଡ଼ିକର କଥାବସ୍ତୁ ମଞ୍ଚୋପଯୋଗୀ ଓ ଚରିତ୍ର ପ୍ରଧାନହେଲେହେଁ ତାହାଙ୍କ ପରିଣତ ବୟସରେ ଲିଖିତ ନାଟକଗୁଡ଼ିକରେ ଭାବର ପ୍ରାଧାନ୍ୟ ପରିଲକ୍ଷିତ ହୁଏ । 'ଅଚଳାୟତନ', 'ରକ୍ତକରବୀ', 'ମୁକ୍ତଧାରା' 'ଡାକଘର', 'ଫାଲଗୁନୀ', 'ରାଜା', 'ତାସେର ଦେଶ' ପ୍ରଭୃତି ନାଟକଗୁଡ଼ିକ ତାହାର ଉତ୍କୃଷ୍ଟ ଉଦାହରଣ । 'ମୁକ୍ତଧାରା', 'ରକ୍ତକରବୀ' ନାଟକରେ ଯନ୍ତ୍ର ସଭ୍ୟତାର ନିର୍ମମ ପରିଣତି ବିଷୟ ଚର୍ଚ୍ଚିତ ହୋଇଅଛି । ଏହି ଭାବ-ପ୍ରଧାନ, ରୂପକ ନାଟକଗୁଡ଼ିକ ଅଭିନୟ ଦୃଷ୍ଟିରୁ ଅନୁପଯୁକ୍ତ ଓ ମଞ୍ଚୋପଯୋଗୀ ନ ହେଲେହେଁ ସାହିତ୍ୟ ସୃଷ୍ଟି ଭାବରେ ତାହା ଉଚ୍ଚକୋଟୀର ବିବେଚିତ ହୁଏ ।

ରବୀନ୍ଦ୍ରନାଥଙ୍କ ରଚିତ ଉପନ୍ୟାସମାନଙ୍କ ମଧ୍ୟରୁ 'ଗୋରା', 'ଘରେ ବାହିରେ', 'ନୌକାଡୁବି', 'ଶେଷେରବାଳି' 'ଶେଷେର କବିତା', 'ଯୋଗାଯୋଗ', 'ଦୁଇବୋନ', 'ମାଳଞ୍ଚ', 'ଚାର୍ ଅଧ୍ୟାୟ', 'ଚତୁରଙ୍ଗ' ପ୍ରଭୃତି ବିଶିଷ୍ଟତମ ।' ସର୍ବାଦୌ ସେ 'ବୌଠାକୁରାଣୀର ହାଟ' ଓ 'ରାଜର୍ଷି' ନାମକ ଦୁଇଟି ଉପନ୍ୟାସ ରଚନା କରିଥିଲେ । ମନସ୍ତତ୍ତ୍ୱମୂଳକ ଉପନ୍ୟାସ ରଚନା କରିବାରେ ରବୀନ୍ଦ୍ରନାଥଙ୍କୁ ବଙ୍ଗଳା ଉପନ୍ୟାସ କ୍ଷେତ୍ରରେ ସର୍ବ-ପ୍ରଥମ ଲେଖକ ଭାବରେ ଗ୍ରହଣ କରାଯାଇଥାଏ । 'ଶେଷେର ବାଲି' ଉପନ୍ୟାସ ହିଁ ତାହାର ଉତ୍କୃଷ୍ଟ ଉଦାହରଣ । 'ଗୋରା' ଉପନ୍ୟାସଟିକୁ ତାହାଙ୍କର ସର୍ବଶ୍ରେଷ୍ଠ ଉପନ୍ୟାସ ଭାବରେ ଗ୍ରହଣ କରାଯାଇଥାଏ । ଦେଶପ୍ରେମ ଯେ ବିଶ୍ୱପ୍ରେମର ବିରୋଧୀ ନୁହେଁ ତାହା ହିଁ ଗୋରା ଚରିତ୍ର ମାଧ୍ୟମରେ ରବୀନ୍ଦ୍ରନାଥ ଦର୍ଶାଇଅଛନ୍ତି । କେହି କେହି ତାହାଙ୍କ 'ଚତୁରଙ୍ଗ' ଉପନ୍ୟାସଟିକୁ ସର୍ବୋତ୍କୃଷ୍ଟ ଉପନ୍ୟାସ ଭାବରେ ଗ୍ରହଣ କରିଥାନ୍ତି । ଭାଷା, ଭାବ, ଚରିତ୍ର ସୃଷ୍ଟି ଓ ରଚନାରୀତି ଦୃଷ୍ଟିରୁ ତାହାଙ୍କ ଉପନ୍ୟାସ

ବଙ୍ଗ ଉପନ୍ୟାସ ସାହିତ୍ୟକୁ ସମୃଦ୍ଧ ଓ ସୁବିଖ୍ୟାତ କରିଅଛି । ତାହାଙ୍କ 'ଘରେ-ବାହିରେ' ଉପନ୍ୟାସଟି (ଇଂରାଜୀ ଅନୁବାଦ Home and World) ଜର୍ମାନ, ଫରାସୀ ସ୍ପେନିସ୍ ପ୍ରଭୃତି ବହୁ ଭାଷାରେ ଅନୂଦିତ ହୋଇଅଛି ।

କଥାଶିଳ୍ପୀ ଭାବରେ ରବୀନ୍ଦ୍ରନାଥଙ୍କୁ ବଙ୍ଗ ସାହିତ୍ୟର ପ୍ରଥମ ଓ ଶ୍ରେଷ୍ଠ ଲେଖକ ଭାବରେ ଗ୍ରହଣ କରାଯାଇଥାଏ । ତାହାଙ୍କର ସୁପ୍ରସିଦ୍ଧ ଗଳ୍ପ ସଂଗ୍ରହ 'ଗଳ୍ପଗୁଚ୍ଛ'ର ବହୁଗଳ୍ପ ବହୁ ଭାଷାରେ ଅନୂଦିତ ଓ ବିଶ୍ୱର ଶ୍ରେଷ୍ଠ ଗଳ୍ପମାନଙ୍କ ମଧ୍ୟରୁ ଅନ୍ୟତମ ଭାବରେ ବିବେଚିତ ହୋଇଥାଏ । ତାହାଙ୍କର ସୁପ୍ରସିଦ୍ଧ ଗଳ୍ପମାନଙ୍କ ମଧ୍ୟରୁ 'କାବୁଲିଓ୍ୱାଲା' 'ନଷ୍ଟ ନୀଡ଼' କ୍ଷୁଧିତପାଷାଣ', 'ଦଶୀଥେ', 'ଶୁଭା', 'କଙ୍କାଳ', 'ମଧ୍ୟବର୍ତ୍ତିନୀ' ପ୍ରଭୃତି ଉଲ୍ଲେଖଯୋଗ୍ୟ ।

ବହୁ ବିଷୟକ ପ୍ରବନ୍ଧ ରଚନା କରି ବଙ୍ଗ ସାହିତ୍ୟକୁ ସମୃଦ୍ଧ କରିବାରେ ରବୀନ୍ଦ୍ରନାଥଙ୍କ ଦାନ ମଧ୍ୟ ଅପରିସୀମ । ସାହିତ୍ୟ, ସଂସ୍କୃତି, ସମାଜ, ରାଜନୀତି, ଆଧ୍ୟାତ୍ମିକତା ପ୍ରଭୃତି ବହୁବିଧ ବିଷୟକୁ ଉପଜୀବ୍ୟ କରି ସେ ବହୁ ପ୍ରବନ୍ଧ ରଚନା କରିଯାଇଅଛନ୍ତି । ଏତଦ୍‌ବ୍ୟତୀତ ତାଙ୍କର ଭ୍ରମଣବୃତ୍ତାନ୍ତ, ଜୀବନସ୍ମୃତି, ଡାଏରୀ, ଚିଠିପତ୍ର ମଧ୍ୟ ଉଚାଙ୍ଗ ପ୍ରବନ୍ଧ ଓ ଶିଳ୍ପ ସୃଷ୍ଟି ଭାବରେ ବିବେଚିତ ହୋଇଥାଏ । ସାହିତ୍ୟ ତତ୍ତ୍ୱ ଓ ଆଲୋଚନାମୂଳକ ଗ୍ରନ୍ଥ ଭାବରେ ତାହଙ୍କ ରଚିତ 'ପ୍ରାଚୀନ ସାହିତ୍ୟ' 'ଆଧୁନିକ ସାହିତ୍ୟ', 'ସାହିତ୍ୟର ପଥେ' ପ୍ରଭୃତି ସରସ, ତଥ୍ୟପୂର୍ଣ୍ଣ ରଚନା ଭାବରେ ସୁବିଦିତ । ତତ୍ତ୍ୱ ସମ୍ବଳିତ ବିଷୟକୁ ସରସ, ସୁଖପାଠ୍ୟ କରାଇ-ବାରେ ରବୀନ୍ଦ୍ରନାଥ କିପରି ସଫଳତା ଲାଭ କରିଥିଲେ, ତାହାଙ୍କ ପ୍ରବନ୍ଧାବଳୀରୁ ତାହା ଉପଲବ୍ଧ ହୋଇଥାଏ । ମହାତ୍ମାଗାନ୍ଧିଙ୍କ ପ୍ରବର୍ତ୍ତିତ ବିଦେଶୀ ବସ୍ତ୍ରବର୍ଜନ ନୀତି ବିରୁଦ୍ଧରେ 'ସ୍ୱରାଜ ସାଧନ' ଶୀର୍ଷକ ପ୍ରବନ୍ଧ ରଚନାକରି ସେ ଏ ବିଷୟରେ ତାହାଙ୍କ ପ୍ରତିକୂଳ ମତବାଦକୁ ବଳିଷ୍ଠ ଭାବରେ ଲିପିବଦ୍ଧ କରିଥିଲେ । ତାହାଙ୍କ ପ୍ରବନ୍ଧ ଭାଷା ଓ ପ୍ରକାଶ ଭଙ୍ଗୀ ଦୃଷ୍ଟିରୁ କିପରି ଅନବଦ୍ୟ ଓ ଚିତ୍ତାକର୍ଷକ 'ଜୀବନ ସ୍ମୃତି', 'ରସିଆର ଚିଠି', 'ଯାତ୍ରୀ', 'ଜାପାନଯାତ୍ରୀ' ପ୍ରଭୃତିରୁ ହିଁ ତାହାର ପ୍ରମାଣ ମିଳିଥାଏ । କବିଙ୍କ ତିନଗୋଟି ସୁପ୍ରସିଦ୍ଧ କବିତାର ଓଡ଼ିଆ ଅନୁବାଦ ।

( ୧ )

## ଭାରତକୁ ସେଇ ସ୍ୱର୍ଗେ କର ଜାଗରିତ

ଚିତ୍ତ ଯହିଁ ଭୟଶୂନ୍ୟ, ଉଚ୍ଚ ଯହିଁ ଶିର,
ଜ୍ଞାନ ଯହିଁ ମୁକ୍ତ, ଯହିଁ ଗୃହର ପ୍ରାଚୀର
ଆପଣା ପ୍ରାଙ୍ଗଣ ତଳେ ଦିବସ ଶର୍ବରୀ
ବସୁଧାରେ ରଖିନାହିଁ ଖଣ୍ଡ କ୍ଷୁଦ୍ର କରି,
ହୃଦୟ ଉତ୍ସ ମୁଖୁ ବାକ୍ୟରାଶି ଯହିଁ
ନିବାରିତ ସ୍ରୋତରୂପେ ଉଚ୍ଛ୍ୱସି ଉଠଇ
ଦେଶେ ଦେଶେ କର୍ମଧାରା ଧାଏଁ ଚୌଦିଗରେ
ଚରିତାର୍ଥ ହେବା ଲାଗି ସହସ୍ରରୂପରେ ।
ଯହିଁ ତୁଚ୍ଛ ଆଚାରର ମରୁବାଲି ରାଶି
ବିଚାରର ସ୍ରୋତ ପଥ ପକାଇନି ଗ୍ରାସି
ପୌରୁଷରେ କରିନି ଶତଧା-ସତ୍ୟ ଯେଉଁଠାରେ
ତୁମେ ନେତା ସର୍ବ କର୍ମ ଚିନ୍ତା ଆନନ୍ଦରେ
ନିଜ ହସ୍ତେ ନିର୍ଦ୍ଦୟ ଆଘାତ କରି ପିତଃ
ଭାରତକୁ ସେଇ ସ୍ୱର୍ଗେ କର ଜାଗରିତ ।

(ନୈବେଦ୍ୟ)

( ୨ )

## ମାତୃ-ଅଭିଷେକ

ହେ ମୋର ଚିତ୍ତ, ପୁଣ୍ୟ ତୀର୍ଥେ ଜାଗରେ ଧୀରେ-
ଏଇ ଭାରତର ମହାମାନବର ସାଗର ତୀରେ ।
ସେଠି ଠିଆ ହୋଇ ତୋଳି ବାହୁ ଦୁଇ ନମେ ନରଦେବତାରେ
ଉଦାର ଛନ୍ଦେ ପରମାନନ୍ଦେ ବନ୍ଦନା କର ଯାରେ ।
ଧ୍ୟାନ ଗମ୍ଭୀର ଏ ଯେଉଁ ଭୂଧର, ନଦୀଜପମାଳା ଧୃତ ପ୍ରାନ୍ତର
ସେଠାରେ ନିତ୍ୟ ହେର ପବିତ୍ର ଏ ଧରଣୀରେ

ଏଇ ଭାରତର ମହାମାନବର ସାଗର ତୀରେ ।
କେହ ନାହିଁ ଜାଣେ କାହା ଆହ୍ୱାନେ କେତେ ଜନଧାରା ଆସି
ଦୁର୍ବାର ସ୍ରୋତେ କାହୁଁ ଆସି ସିଏ ସମୁଦ୍ରେ ଗଲେ ମିଶି
ସେଠାରେ ଆର୍ଯ୍ୟ ସେଠି ଅନାର୍ଯ୍ୟ ସେଇଠି ଦ୍ରାବିଡ଼ ଚୀନ-
ଶକହୁନ ଦଳ ପଠାଣ ମୋଗଲ ଏକଦେହେ ହେଲେ ଲୀନ ।
ପଶ୍ଚିମ ଆଜି ଖୋଲିଅଛି ଦ୍ୱାର ସରବେ ଆଣନ୍ତି ତହୁଁ ଉପହାର
ଦେବେ ଆଉ ନେବେ ମିଳି ମିଳାଇବେ ନଫେରିବେରେ ।
ଏଇ ଭାରତର ମହାମାନବର ସାଗର ତୀରେ ।
ରଣଧାରା ବାହି ଜୟଗାନ ଗାଇ ଉନ୍ମାଦ ରବ ଘୋଷି
ଭେଦି ମରୁପଥ ଗିରିପର୍ବତ ଯେଉଁମାନେ ଥିଲେ ଆସି
ମୋହର ଭିତରେ ବିରାଜନ୍ତି ସକଳେ କେହି ନୁହନ୍ତି ନୁହନ୍ତି ଦୂର
ମୋ ରକତେ ନିତ୍ୟ ହୋଇଛି ଧ୍ୱନିତ ତାଙ୍କ ବିଚିତ୍ର ସ୍ୱର ।
ହେ ରୁଦ୍ରବୀଣା ବାଜ ବାଜ ଆଜି ଘୃଣ୍ୟ ବୋଲି ଯେ ଦୂରେ ଛନ୍ତି
ଆଜି ।
ବନ୍ଧ ଭାଙ୍ଗିବେ ସିଏ ବି ଆସିବେ ଠିଆହେବେ ଘେରିରେ
ଏଇ ଭାରତର ମହାମାନବର ସାଗର ତୀରେ ।
ହିନେ ଏଠାରେ ଅବିରାମ ଭରେ ମହା ଓଁକାର ଧ୍ୱନି
ହୃଦୟ ତନ୍ତ୍ରେ ଏକକ ମନ୍ତ୍ରେ ଉଠିଥିଲା ଅନୁରଣି
ତପସ୍ୟା ବଳେ ଏକର ଅନଳେ ବହୁଙ୍କୁ ଆହୁତି ଦେଇ
ବିଭେଦଙ୍କୁ ଭୁଲି ଜଗାଇଣ ଦେଲେ ବିରାଟ ହୃଦୟ ସେହି,
ସେଇ ସାଧନାର ସେ ଆରାଧନାର
ଯଜ୍ଞଶାଳାର ଖୋଲା ଆଜି ଦ୍ୱାର
ସେଇଠି ସରବେ ମିଳିତ ହୋଇବେ ଆନତ ଶିରେ
ଏଇ ଭାରତର ମହାମାନବର ସାଗର ତୀରେ ।
ସେଇ ହୋମାନଳେ ଦେଖ ଆଜି ଜଳେ ଦୁଃଖର ରକ୍ତ ଶିଖା
ହେବ ତାହା ସହି ମର୍ମେ ଦହନ ଅଛି ସେ ଭାଗ୍ୟେ ଲେଖା ।
ଏ ଦୁଃଖ ବହନ କର ମୋର ମନ ଶୁଣ ଡାକ ଏକତାର
ଯେତେ ଲାଜ ଭୟ କର କର ଜୟ ଅପମାନ ହେଉ ଦୂର ।
ଦୁଃସହ ବ୍ୟଥା ହୋଇ ଅବସାନ ଜନ୍ମ ଲଭିବ କି ବିଶାଳ ପ୍ରାଣ

ବିତାଇ ରଜନୀ ଜାଗିଛି ଜନନୀ ବିପୁଳ ନୀଡ଼େ
ଏଇ ଭାରତର ମହାମାନବର ସାଗର ତୀରେ ।
ଆସ ହେ ଆର୍ଯ୍ୟ ଆସ ଅନାର୍ଯ୍ୟ ହିନ୍ଦୁ ମୁସଲମାନ
ଆସ ଆସ ଆଜ ତୁମେ ଇଂରାଜ ଆସ ଆସ ଖ୍ରୀଷ୍ଟାନ
ଆସ ବ୍ରାହ୍ମଣ ଶୁଚି କରି ମନ ସବୁରି ହସ୍ତ ଧର
ଆସ ହେ ପତିତ କର ଅପନୀତ ସବୁ ଅପମାନ ଭାର ।
ମା'ଆ ଅଭିଷେକେ ଆସ ଆସ ତ୍ୱରା
ମଙ୍ଗଳ ଘଟ ହୋଇନି ଯେ ପୂରା
ସବୁରି-ପରଶେ-ପବିତ୍ର-ହେବା ତୀର୍ଥ ନୀରେ
ଏଇ ଭାରତର ମହାମାନବର ସାଗର ତୀରେ ।

( ଗୀତାଞ୍ଜଳି )



( ୩ )

## ଉର୍ବଶୀ

ନୁହଁ ମାତା, ନୁହଁ କନ୍ୟା, ନୁହଁ ବଧୂ, ସୁନ୍ଦରୀ ରୂପସୀ,
ହେ ନନ୍ଦନବାସିନୀ ଉର୍ବସୀ !
ଗୋଷ୍ଠେ ଯେବେ ସନ୍ଧ୍ୟା ଅବତରେ
ଶ୍ରାନ୍ତ ଦେହେ ସ୍ୱର୍ଣ୍ଣାଞ୍ଚଳ ଟାଣି
ତୁମେ କେଉଁ ଗୃହ ପ୍ରାନ୍ତେ
ଜଳାଅନା ସନ୍ଧ୍ୟାଦୀପ ଆଣି
ଦ୍ୱିଧାରେ ଜଡ଼ିତ ପଦେ କମ୍ପ୍ର ବକ୍ଷେ ତାଳ ନମ୍ରନେତ୍ର
ସ୍ମିତ ହାସ୍ୟେ ଚଳନାହିଁ ବାସର ଶଯ୍ୟାକୁ ସଲଜ୍ଜିତ
ସ୍ତବ୍ଧ ଅର୍ଦ୍ଧରାତ୍ରେ
ଉଷାର ଉଦୟ-ସମ ଅନବଗୁଣ୍ଠିତା
ତୁମେ ଅକୁଣ୍ଠିତା ।
ବୃନ୍ତହୀନ ପୁଷ୍ପସମ ଆପେ ଆପେ ବିକେଇ ବିକଶି
କେବେ ତୁମେ ଫୁଟିଲ ଉର୍ବଶୀ !

ଆଦିମ ବସନ୍ତ ପ୍ରାତେ   ଉଠିଥିଲ ମନ୍ଥିତ ସାଗରେ
ଡାହାଣେ ସୁଧାର ପାତ୍ର ବିଷ ଭାଣ୍ଡ ଧରି ବାମ କରେ;
ତରଙ୍ଗିତ ମହାସିନ୍ଧୁ ମନ୍ତ୍ର ଶାନ୍ତ ଭୁଜଙ୍ଗ ସଦୃଶ
ପଡ଼ିଥିଲା ପଦପ୍ରାନ୍ତେ ଉଚ୍ଛ୍ୱସିତ ଫଣା ଲକ୍ଷ ଶତ
କରି ଅବନତ
କୁନ୍ଦ ଶୁଭ୍ର ନଗ୍ନକାନ୍ତି ସୁରେନ୍ଦ୍ର ବନ୍ଦିତା

ତୁମେ ଅନିନ୍ଦିତା ।

ନଥିଲ କି କେଉଁକାଳେ ମୁକୁଳିକା ବାଳିକା ବୟସୀ
ହେ ଅନନ୍ତ ଯୌବନା ଉର୍ବଶୀ ?
ଅନ୍ଧାର ସାଗର ତଳେ ଏକୁଟିଆ ବସି କାହା ଘରେ
ମାଣିକ ମୁକୁତା ନେଇ କରୁଥିଲ ଖେଳ ଶୈଶବରେ
ମଣି ଦୀପ ଦୀପ୍ତ କକ୍ଷେ ସମୁଦ୍ରର କଲ୍ଲୋଳ ଗୀତେ
ଅକଳଙ୍କ ହାସ୍ୟ ମୁଖେ ଶୋଇଥିଲ ପ୍ରବାଳ ପଲଙ୍କେ
ସେ କାହାର ଅଙ୍କେରେ !
ଯେବେ ଜାଗିଥିଲ ବିଶ୍ୱେ, ଯୌବନେ ଗଠିତା

ପୂର୍ଣ୍ଣ ପ୍ରସ୍ଫୁଟିତା ।

ଯୁଗୁଁ ଯୁଗାନ୍ତର ଧରି ତୁମେ ଏକା ବିଶ୍ୱର ପ୍ରେୟସୀ
ହେ ଅପୂର୍ବ ଶୋଭନା ଉର୍ବଶୀ !
ମୁନିଗଣ ଧ୍ୟାନ ଭାଙ୍ଗି ଦିଅନ୍ତି ପଦେ ତପସ୍ୟାର ଫଳ,
ତୁମର କଟାକ୍ଷଘାତେ ତ୍ରିଭୁବନ ଯୌବନ ଚଞ୍ଚଳ,
ତୁମର ମଦିର ଗନ୍ଧ ଅନ୍ଧବାୟୁ ବହି ଦିଗେ ଘୂରେ
ମଧୁମତ୍ତ ଭୃଙ୍ଗ ସମ ମୁଗ୍ଧ କବି ଲୁବ୍ଧ ଚିତ୍ତେ ଫେରେ
ଉଦ୍ଦାମ ଗୀତରେ ।
ନୂପୁର ଗୁଂଜରି ଯାଅ ଆକୁଳ ଅଂଚଳା ।
ବିଦ୍ୟୁତ ଚଞ୍ଚଳା
ସୁରସଭା ତଳେ ଯେବେ ନୃତ୍ୟକର ପୁଲକେ ଉଲ୍ଲସି
ହେ ବିଲୋଳ ହିଲ୍ଲୋଳ ଉର୍ବଶୀ,

ଛନ୍ଦେ ଛନ୍ଦେ ନାଚି ଉଠେ ସିନ୍ଧୁ ମଧ୍ୟେ ତରଙ୍ଗର ଦଳ
ଶସ୍ୟଶୀର୍ଷେ ଶିହରଣ କଂପି ଉଠେ ଧରାର ଅଂଚଳ,
ତବ ସ୍ତନହାର ହେତୁ ନଭସ୍ଥଳେ ଖସିପଡ଼େ ତାରା,
ଅକସ୍ମାତ ପୁରୁଷର ବକ୍ଷ ମଧ୍ୟେ ଚିତ୍ତ ଆତ୍ମହରା-
ନାଚେ ରକ୍ତଧାରା ।
ଦିଗନ୍ତେ ମେଖଳା ତବ ଟୁଟେ ଆଚମ୍ବିତେ
ଅୟି ଅସମ୍ବୃତେ ।
ସ୍ୱର୍ଗର ଉଦୟାଚଳେ ମୂର୍ତ୍ତିମତୀ ତୁମେ ହେ ଉଷସୀ;
ହେ ଭୁବନମୋହିନୀ ଉର୍ବଶୀ ।
ଜଗତର ଅଶ୍ରୁଧାରେ ଧୌତ ତବ ତନୁର ତନିମା
ତ୍ରିଲୋକର ହୃଦରକ୍ତେ ଅଙ୍କା ତବ ଚରଣ ଶୋଣିମା;
ମୁକ୍ତ ବେଣୀ ବିବସନେ, ବିକଶିତ ବିଶ୍ୱ ବାସନାର
ଅରବିନ୍ଦ ମଧ୍ୟସ୍ଥଳେ ପାଦପଦ୍ମ ରଖିଛ ତୁମର
ଅଖିଳ ମାନସ ସ୍ୱର୍ଗେ ଅନନ୍ତ ରଙ୍ଗିଣୀ,
ହେ ସ୍ୱପ୍ନ ସଂଗିନି ॥

( ଚିତ୍ରା )



# କୁମାରନ୍ ଆସାନ

ଆଧୁନିକ ମାଲୟାଲମ ସାହିତ୍ୟର ମହାନ କବି ତ୍ରୟଙ୍କ ମଧ୍ୟରୁ କୁମାରନ ଆସାନ ଅନ୍ୟତମ । ପ୍ରାଚ୍ୟ ଓ ପାଶ୍ଚାତ୍ୟର ସୁସମନ୍ୱୟ ତାହାଙ୍କ କୃତି ଓ ଜୀବନଧାରାରେ ପରିଲକ୍ଷିତ ହୁଏ । ମହାନ କବି ଓ ସଂଗଠକ ଭାବେ ସେ ଅମରତ୍ୱ ଲାଭକରି ଅଛନ୍ତି । ତାହାଙ୍କ ଜୀବନ ଓ ସାଧନା କାଳ ସ୍ୱଳ୍ପ ହେଲେହେଁ ତାହା ଯେପରି କଠୋର ସଂଘର୍ଷ, ସେହିପରି ବର୍ଣ୍ଣନାତ୍ମକ ଓ ରୋମାଞ୍ଚକର । ଏକ ସଂଗତି ଓ ମର୍ଯ୍ୟାଦାହୀନ ପରିବାରରେ ସେ ଜନ୍ମ-ଗ୍ରହଣ କରିଥିଲେହେଁ ଆପଣାର ପୌରୁଷ, କର୍ମନିଷ୍ଠା ଓ କୃତିଯୋଗୁ ଆପଣାର ତଥା ଦେଶର ଗୌରବ ବୃଦ୍ଧି କରିଯାଇଅଛନ୍ତି ।

**ଜୀବନ ଧାରା :—**

କେରଳର ଏକ ଏଝବ ପରିବାରରେ ଖ୍ରୀ୧୮୭୩ ଚୈତ୍ର ପୂର୍ଣ୍ଣିମୀ ଦିନ ସେ ଜନ୍ମ ଗ୍ରହଣ କରିଥିଲେ । ସଂଖ୍ୟାରେ ସ୍ୱଳ୍ପ ନ ହେଲେହେଁ ସେତେବେଳେ ଏଝବ ସମ୍ପ୍ରଦାୟ ଥିଲେ କେରଳ ରାଜ୍ୟରେ ଅତୀବ ଅନୁନ୍ନତ ଓ ଅବହେଳିତ । ସବର୍ଣ୍ଣ ହିନ୍ଦୁମାନଙ୍କ ସହିତ ଏକ ବିଦ୍ୟାଳୟରେ ଅଧ୍ୟୟନ କରିବାର ସୁଯୋଗ ସେମାନଙ୍କୁ ମିଳୁ ନ ଥିଲା । କୌଣସି ସମ୍ମାନ-ଜନକ ବୃତ୍ତି ସେମାନେ ଗ୍ରହଣ କରିପାରୁନଥିଲେ । ରାଜ କର୍ମଚାରୀଭାବେ ମଧ୍ୟ ସେମାନେ ନିଯୁକ୍ତିତ ହୋଇପାରୁ ନ ଥିଲେ । ଏପରିକି ଦେବ ମନ୍ଦିରକୁ ମଧ୍ୟ ଯାଇ ପାରୁନଥିଲେ । କୃଷିକାର୍ଯ୍ୟ, ଲୁଗା ବୁଣିବା ଓ ଗଛରୁ ତାଡ଼ି କାଟିବାରେ ହିଁ ସେମାନେ ଥିଲେ ନିଯୁକ୍ତିତ । ଏହିଭଳି ସାମାଜିକ

ପରିବେଶରେ ନିଗ୍ରନ୍ଥମଠାରୁ ବାରଶ ମାଇଲ ଦୂରରେ ଅବସ୍ଥିତ କର୍ପୁକରା ନାମକ ଏକ କ୍ଷୁଦ୍ରଗ୍ରାମରେ ସେ ଜନ୍ମଗ୍ରହଣ କରିଥିଲେ । ଏ ଗାଁଟିର ପରିବେଶ ମନୋରମ । ଗୋଟିଏ ପଟେ ସମୁଦ୍ର, ଅନ୍ୟଦିଗରେ ଏକ କ୍ଷୁଦ୍ର ହ୍ରଦ ଓ ଚତୁର୍ଦ୍ଦିଗରେ ନାରିକେଳ ବୃକ୍ଷର ସମାରୋହ । ପିତା ନାରାୟଣନ୍‌ଙ୍କ ମୁଖ୍ୟ ବୃତ୍ତି ଥିଲା କତା, ଦଉଡ଼ି ଓ ନଡ଼ିଆ ପ୍ରଭୃତି ଜିନିଷର ବ୍ୟବସାୟ । ସେ ଥିଲେ ସଙ୍ଗୀତାନୁରାଗୀ ମାଲୟାଲମ ଓ ତାମିଲ ସାହିତ୍ୟ ପ୍ରତି ତାଙ୍କର ଖୁବ୍ ଆଗ୍ରହ ଥିଲା । ମୁଖ୍ୟତଃ ତାଙ୍କର ଉଦ୍ୟମରେ କର୍ପୁକରା ଗ୍ରାମରେ ଏକ ପ୍ରାଥମିକ ବିଦ୍ୟାଳୟ ସ୍ଥାପିତ ହୋଇପାରିଥିଲା । ଆସାନଙ୍କ ମାତା କଲିୟାମ୍ମା ଶିକ୍ଷିତା ନ ଥିଲେ ହେଁ ଥିଲେ ସୁଗୁଣସମ୍ପନ୍ନା । ମାଲୟାଲମ ପୁରାଣର ବହୁ କାହାଣୀ ତାହାଙ୍କୁ ଜଣାଥିଲା ।

ସେ କାଳର ବ୍ୟବସ୍ଥାନୁଯାୟୀ କୁମାରନ୍ ସାତବର୍ଷ ବୟସରେ ଗାଁ ଗୁରୁଶାଳୀରେ ପାଠ ପଢ଼ିଲେ । ଏକ ବର୍ଷରେ ସେ ସଂସ୍କୃତ ପଣ୍ଡିତ ଓ ଚିକିତ୍ସକ ଭାବେ ସୁଖ୍ୟାତ କୋଚୁରାମନ ବୈଦ୍ୟାରଙ୍କ ନିକଟରେ ସଂସ୍କୃତ ଅମରକୋଷ, କୃଷ୍ଣବିଳାସ, ରଘୁବଂଶ ପ୍ରଭୃତି ଅଧ୍ୟୟନ କଲେ । ଏହି ସମୟରେ ନିଜ ଗାଁରେ ପ୍ରାଥମିକ ବିଦ୍ୟାଳୟଟି ସ୍ଥାପିତ ହେବାରୁ ସେ ସେଠାରେ ଆନୁଷ୍ଠାନିକ ଶିକ୍ଷା ଲାଭ କଲେ, ତିନିବର୍ଷ ପଢ଼ିବା ପରେ ସେ ଏଠାରୁ କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ ।

ଅସ୍ୱଚ୍ଛଳ ପାରିବାରିକ ଅବସ୍ଥା ଦୃଷ୍ଟିରୁ ବାଧ୍ୟ ହୋଇ ତାଙ୍କୁ ଜଣେ ବ୍ୟବସାୟୀଙ୍କ ଗୋଦାମରେ ଗୁମାସ୍ତା ହେବାକୁ ପଡ଼ିଲା; ମାତ୍ର ହୃଦୟରେ ତାଙ୍କର ଅଧ୍ୟୟନ ପ୍ରତି ଗଭୀର ଅନୁରାଗ । ଏଣେ ବାପାଙ୍କ ଇଚ୍ଛା କୁମାରନ୍ ଘର ଚଳାଇବା ପାଇଁ କିଛି ଉପାର୍ଜନ କରିବା ଆବଶ୍ୟକ । ପୁତ୍ରର ଆଗ୍ରହ ଦେଖି ଶେଷରେ ପିତା ବାଧ୍ୟ ହୋଇ ତାଙ୍କୁ ପଢ଼ିବାକୁ ଅନୁମତି ଦେଲେ । "ବିଜ୍ଞାନ ସନ୍ଦାୟିନୀ" ନାମକ ଏକ ସଂସ୍କୃତ ବିଦ୍ୟାନୁଷ୍ଠାନରେ ସେ ପଢ଼ିଲେ । ସେତେବେଳକୁ ତାଙ୍କୁ ୧୭ ବର୍ଷ ବୟସ । ଆର୍ଥିକ ଅବସ୍ଥା ଦୃଷ୍ଟିରୁ ତାଙ୍କୁ ବିନା ବେତନରେ ଏଠାରେ ପଢ଼ିବାର ସୁଯୋଗ ମିଳିଥିଲା ।

ଏହି ସଂସ୍କୃତ ଶିକ୍ଷାନୁଷ୍ଠାନରେ ଖୁବ୍ ମନୋଯୋଗପୂର୍ବକ ସେ ଅଧ୍ୟୟନ କରିବାରେ ଲାଗିପଡ଼ିଲେ । ଏହି ସମୟରୁ ତାହାଙ୍କ କବି ପ୍ରତିଭାର-

ଉନ୍‌ମେଷ ହୋଇଥିଲା ଓ ସେ ସଂସ୍କୃତରେ ବହୁ ଶ୍ଳୋକ ଲେଖି ପ୍ରଶଂସିତ ହୋଇ ପାରିଥିଲେ । ବର୍ଷକ ମଧ୍ୟରେ କୁମାରନ୍ ମାଘ, ନୈଷଧଚରିତ, ଅଭିଜ୍ଞାନ-ଶାକୁନ୍ତଳମ୍ ଓ କୁବଳୟାନଂଦ ପ୍ରଭୃତି ବିଖ୍ୟାତ କାବ୍ୟ ଓ ଅଳଙ୍କାର ଗ୍ରନ୍ଥସମୂହ ପାଠ କରିଥିଲେ । ନିଜେ ମଧ୍ୟ ସଂସ୍କୃତରେ 'ବାଳବିବାହମ୍' କବିତା ଓ 'ଉଷା କଲ୍ୟାଣମ୍' ନାମକ ଏକ ନାଟକ ରଚନା କରିଥିଲେ । ଦୁଇବର୍ଷ ମଧ୍ୟରେ ଆଚାର୍ଯ୍ୟଙ୍କ ନିକଟରେ ତାଙ୍କର ବିଦ୍ୟାଅଧ୍ୟୟନ ସମାପ୍ତ ହେଲା ।

ଏହି ସମୟଟି ଥିଲା ଏଝବମାନଙ୍କ ମଧ୍ୟରେ ଏକ ନୂତନ ଜାଗରଣର ଯୁଗ । ଏହାର ନେତୃତ୍ୱ ନେଇଥିଲେ ଏହି ସମ୍ପ୍ରଦାୟର ଜନୈକ ସନ୍ନ୍ୟାସୀ ନାରାୟଣ ଗୁରୁ (୧୮୫୭-୧୯୨୮) । ନାରାୟଣ ଗୁରୁ ଧର୍ମଗୁରୁ ଓ ସଂସ୍କାରକ ଭାବେ ସବୁ ଅବହେଳିତ ସମ୍ପ୍ରଦାୟ ମଧ୍ୟରେ ଥିଲେ ପୂଜ୍ୟ ଓ ବରଣୀୟ । ତାଙ୍କର ପୁଣ୍ୟ ପ୍ରଚେଷ୍ଟାରେ ଅସ୍ପୃଶ୍ୟ ଓ ଅବହେଳିତ ସମ୍ପ୍ରଦାୟର ଜନସାଧାରଣଙ୍କ ପୂଜା ଉପାସନା ଲାଗି କେରଳର ବିଭିନ୍ନ ସ୍ଥାନରେ ବହୁ ଦେବ ପୀଠ ଗଢ଼ି ଉଠିଥିଲା । ମନୁଷ୍ୟ-ମାନଙ୍କର ଜାତି ଏକ, ଧର୍ମ ଏକ ଓ ଈଶ୍ୱର ମଧ୍ୟ ଏକ ଏହାହିଁ ଥିଲା ତାଙ୍କ ପ୍ରଚାରର ମୂଳମନ୍ତ୍ର । ତାଙ୍କର ଏହି ମତର ପ୍ରଚାରର ଫଳରେ ସମାଜର ବହୁ କୁସଂସ୍କାର ଦୂର ହୋଇ ପାରିଥିଲା । ସେ ଥିଲେ ଅଲୌକିକ ବ୍ୟକ୍ତି । ଏଣୁ ଲୋକେ ତାଙ୍କୁ ସ୍ୱାମୀ ବା ପ୍ରଭୁ ଭାବେ ଭକ୍ତି କରୁଥିଲେ । ତାଙ୍କର ପ୍ରେରଣାରେ "ନାରାୟଣ ଧର୍ମ ପରିପାଳନ ଯୋଗମ୍" ନାମକ ଏକ ଅନୁଷ୍ଠାନ ଖ୍ରୀ ୧୯୩୦ ରେ ଗଢ଼ି ଉଠିଥିଲା ।

ଅଠର ବର୍ଷ ବୟସରେ କୁମାରନ୍ ସଂସ୍କୃତ ଶିକ୍ଷା କରୁଥିବା ଅବକାଶରେ ଏହି ମହାନ୍ ଯୋଗୀ, ସ୍ୱାମୀ ନାରାୟଣଙ୍କ ସଂସ୍ପର୍ଶରେ ଆସିଲେ । ଏକ ଅଲୌକିକ ଆକର୍ଷଣରେ ସେ ଗ୍ରହଣ କଲେ ତାଙ୍କର ଶିଷ୍ୟତ୍ୱ । ସ୍ୱାମୀ ମଧ୍ୟ କୁମାରନ୍‌ଙ୍କଠାରେ ଉଜ୍ଜ୍ୱଳ ସମ୍ଭାବନାର ସଙ୍କେତ ଉପଲବ୍‌ଧି କରିଥିଲେ । ଏହି ସମ୍ପର୍କ ଉଭୟଙ୍କ ପକ୍ଷେ କେବଳ ହିତକର ହୋଇ ନ ଥିଲା, ଅଧିକନ୍ତୁ ଏହା ସମଗ୍ର କେରଳବାସୀଙ୍କ ପକ୍ଷେ ମଙ୍ଗଳ-ପ୍ରଦ ହୋଇଥିଲା ।

ସଂସ୍କୃତ ବିଦ୍ୟାଳୟରୁ ବିଦାୟ ନେଲା ପରେ କୁମାରନ୍ ଘରେ ତାମିଲ୍ ଓ ସଂସ୍କୃତର ବହି ସବୁ ପଢ଼ାପଢ଼ି କଲେ ଓ ମାତୃଭାଷା ମାଲୟାଲମ୍‌ରେ କେତେକ ଭକ୍ତି କବିତା ରଚନା କଲେ । ତାଙ୍କର ଏହି ସମୟର ଦୁଇଟି ରଚନା ହେଉଛି 'ସୁବ୍ରମନିଆ ଶତକମ୍' ଓ 'ଭକ୍ତି ବିଳାପନ୍' । ସ୍ୱାମୀ ମଧ୍ୟ ବିଦ୍ୱିକ୍‌କରାଳୁ ମଝିରେ ମଝିରେ ଆସି ତରୁଣ କବିଙ୍କ କବିତା ଶୁଣି ତାଙ୍କୁ ପ୍ରଶଂସା କରନ୍ତି । କହିବା ନିଷ୍ପ୍ରୟୋଜନ ସ୍ୱାମୀଙ୍କ ପ୍ରଭାବ କୁମାରନ୍‌ଙ୍କ ଜୀବନର ଗତିପଥକୁ ଭିନ୍ନମୁଖୀ କରି ଦେଇଥିଲା । ଏହି ସମୟରେ ଗ୍ରାମରେ କୁମାରନ୍ ପିଲାମାନଙ୍କୁ ସଂସ୍କୃତ ଶିକ୍ଷା ଦେବାକୁ ଆରମ୍ଭ କଲେ । ଏହି ସମୟରୁ ତାଙ୍କ ନାଁ ସହ 'ଆସାନ' ବା ଆଚାର୍ଯ୍ୟ ପଦବୀଟି ଯୁକ୍ତ ହୋଇଗଲା । ସେତେବେଳକୁ ସେ ପୂର୍ଣ୍ଣ ଯୁବକ । ତାହାଙ୍କ ଦେହର ସବଳ ଗଠନ କୁଞ୍ଚିତ କେଶ, ଗୋଲାକାର ମୁଖମଣ୍ଡଳର ଉଜ୍ଜ୍ୱଳ ଦୃଷ୍ଟି ସମସ୍ତଙ୍କୁ ଆକୃଷ୍ଟ କରିଦେଉଥିଲା; ମାତ୍ର ସ୍ୱାମୀଜୀଙ୍କ ସମ୍ପର୍କରେ ଆସିବା ପରଠାରୁ ସେ ବିଶେଷଭାବେ ନିଃସଙ୍ଗ ହେବାକୁ ଚାହିଁଲେ ଓ ବେଳେବେଳେ ଧ୍ୟାନସ୍ଥ ହେବା ପାଇଁ ନିକଟବର୍ତ୍ତୀ ପର୍ବତ ଓ ବନକୁ ଚାଲି ଯାଉଥିଲେ ।

ସ୍ୱାମୀଙ୍କ ଆହ୍ୱାନରେ ଦିନେ (୧୮୯୨) କୁମାରନ୍ ଆପଣା ଗୃହର ସମସ୍ତ ମାୟା ମମତାର ବନ୍ଧନକୁ ଛିନ୍ନ କରି ସ୍ୱାମୀଙ୍କ ଆଶ୍ରମ ଅରୁଭିପୁରମ୍‌ରେ ଉପସ୍ଥିତ ହେଲେ । ଏକ ଦୁର୍ଗମ ଅରଣ୍ୟ ମଝିରେ କେୟାର ନଦୀ କୂଳରେ ଏକ ମନୋଜ୍ଞ ପରିବେଶରେ ସ୍ୱାମୀଜୀଙ୍କ ଏହି ଆଶ୍ରମଟି ଅବସ୍ଥିତ ଥିଲା । ଏଇଠି ଦୀର୍ଘ ତିନି ବରଷ କୁମାରନ୍ ଥିଲେ ସ୍ୱାମୀଜୀଙ୍କ ଶିଷ୍ୟ ଓ ସହଚର । ସ୍ୱାମୀଜୀ କୁମାରନ୍‌ଙ୍କୁ ସାଥିରେ ନେଇ ବିଭିନ୍ନ ଅଞ୍ଚଳକୁ ଧର୍ମ ପ୍ରଚାର ଉଦ୍ଦେଶ୍ୟରେ ଯାଉଥିଲେ । ଏହି ସମୟରେ କୁମାରନ୍ 'ଚିନ୍ନା ସ୍ୱାମୀ' (ଶ୍ରେଷ୍ଠସ୍ୱାମୀ) ନାମରେ ପରିଚିତ ଥିଲେ । ଗୁରୁଙ୍କ ପାଖରେ ରହି ସେ ବେଦାନ୍ତ ଶାସ୍ତ୍ର ଅଧ୍ୟୟନ କରିବା ସଙ୍ଗେ ସଙ୍ଗେ ଯୋଗ ସାଧନାରେ ମଧ୍ୟ ବ୍ୟୁତ୍ପତ୍ତି ଲାଭ କରିଥିଲେ । ଏହି ଆଶ୍ରମରେ ଥିବା ବେଳେ ସେ 'ଶିବ ସ୍ତୋତ୍ରମାଳା' ରଚନା କରିଥିଲେ ।

ସ୍ୱାମୀଜୀଙ୍କ ପ୍ରତିଷ୍ଠିତ ସଂଘ ବା ଯୋଗମ୍‌ର ମୁଖ୍ୟ ଆର୍ଥିକ ପୃଷ୍ଠପୋଷକ ଥିଲେ ଡଃ ପଲପୁ । ବାଙ୍ଗାଲୋରରେ ସେ ସରକାରୀ ଉଚ୍ଚପଦବୀରେ

ଅଧିଷ୍ଠିତ ଥିଲେ । ଖ୍ରୀ୧୮୯୫ରେ ସ୍ୱାମୀଜୀ କେତେକ ଶିଷ୍ୟଙ୍କ ସହ ବାଙ୍ଗାଲୋର ଯାଇ ଡଃ ପଲପୁଙ୍କ ଗୃହରେ ଅବସ୍ଥାନ କରିଥିଲେ । ସେଠାରେ କର୍ମଚିନ୍ତା ଓ ଭବିଷ୍ୟତ ବିଷୟ ଆଲୋଚନା ପ୍ରସଙ୍ଗରେ ଡଃ ପଲପୁ ଆପଣା ସମ୍ପ୍ରଦାୟର ଜଣେ ଯୁବକଙ୍କ ଉଚ୍ଚଶିକ୍ଷାର ସମସ୍ତ ବ୍ୟୟଭାର ବହନ କରିବାକୁ ଆପଣାର ଅଭିଳାଷ ବ୍ୟକ୍ତ କରିବାରୁ ସ୍ୱାମୀଜୀ କୁମାରନ୍‌ଙ୍କୁ ଏଥିପାଇଁ ମନୋନୀତ କଲେ ।

ଏହି ବ୍ୟବସ୍ଥା ଅନୁଯାୟୀ କୁମାରନ୍ ବାଙ୍ଗାଲୋରରେ ଡଃ ପଲପୁଙ୍କ ପରିବାରରେ ରହିଲେ । ଡଃ ପଲପୁଙ୍କ ଉଦ୍ୟମ ଯୋଗୁଁ ହିଁ ସେ ବାଙ୍ଗାଲୋରରେ ଶ୍ରୀ ଚାମ ରାଜେନ୍ଦ୍ର ସଂସ୍କୃତ କଲେଜରେ ଛାତ୍ରଭାବେ ଯୋଗଦେବାର ସୁବିଧା ପାଇଲେ । କାରଣ ସେ ପର୍ଯ୍ୟନ୍ତ କେବଳ ବ୍ରାହ୍ମଣ ସବର୍ଣ୍ଣ ଛାତ୍ରମାନଙ୍କ ଶିକ୍ଷାଲାଗି ସେହି କଲେଜଟି ଉଦ୍ଦିଷ୍ଟ ଥିଲା । ସେହି କଲେଜରେ ଆସାନ ତିନିବର୍ଷ ଅଧ୍ୟୟନ କରିଥିଲେ । ନ୍ୟାୟଶାସ୍ତ୍ର ତାଙ୍କର ସ୍ୱତନ୍ତ୍ର ଅଧ୍ୟୟନର ବିଷୟ ଥିଲା । ନିମ୍ନ ପରୀକ୍ଷାରେ ତାଙ୍କର ଫଳ ଥିଲା ଅତ୍ୟୁତ୍ତମ ଓ ଶେଷ ପରୀକ୍ଷାରେ ସେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେବା ଥିଲା ଏକ ପ୍ରକାର ସୁନିଶ୍ଚିତ; ମାତ୍ର ଈର୍ଷାପରାୟଣ ଛାତ୍ରସମାଜ ଏହା କରାଇବାକୁ ଚାହିଁଲେ ନାହିଁ । ଏଥିପାଇଁ କଲେଜରେ ଧର୍ମଘଟ ହେଲା । ଓ କୁମାରନ୍‌ଙ୍କୁ କଲେଜରୁ ବହିଷ୍କୃତ ହେବାକୁ ପଡ଼ିଲା । ଏହିକବେଳେ ଡଃ ପଲପୁଙ୍କୁ ମଧ୍ୟ ଉଚ୍ଚଶିକ୍ଷା ଉଦ୍ଦେଶ୍ୟରେ ୟୁରୋପ ଯିବାକୁ ପଡ଼ିଲା । ତଥାପି ସେ ବିଦେଶ ଯାତ୍ରା ପୂର୍ବରୁ କୁମାରନଙ୍କ ଉଚ୍ଚଶିକ୍ଷାର ସମସ୍ତ ଆର୍ଥିକ ବ୍ୟବସ୍ଥା କରିଯାଇଥିଲେ ।

ବାଙ୍ଗାଲୋରରେ ଅଧ୍ୟୟନ ବିଷୟରେ ବିଫଳ ମନୋରଥ ହେଲା ପରେ ଡଃ ପଲପୁ କେତେକ ବନ୍ଧୁଙ୍କ ପରାମର୍ଶ କ୍ରମେ କୁମାରନ୍ ଉଚ୍ଚଶିକ୍ଷା ଲାଭ କରିବା ଲାଗି କଲିକତା ଯାତ୍ରା କଲେ । କଲିକତା ସଂସ୍କୃତ କଲେଜରେ ସେ କଠୋର ପରିଶ୍ରମ ଓ ଏକାଗ୍ରତାପୂର୍ବକ ତିନିବର୍ଷ ନ୍ୟାୟଶାସ୍ତ୍ର ଅଧ୍ୟୟନ କରିଥିଲେ; ମାତ୍ର ଉପାଧିଲାଭ ତାଙ୍କ ଭାଗ୍ୟରେ ନ ଥିଲା । ଏଠାରେ ମଧ୍ୟ ଶେଷ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବା ସମ୍ଭବ ହେଲା ନାହିଁ । ଖ୍ରୀ୧୯୦୦ରେ କଲିକତା ନଗରୀରେ ଭୟାବହ ପ୍ଲେଗ୍ ରୋଗ ବ୍ୟାପିବାରୁ କଲେଜ ସବୁ

ବନ୍ଦ କରି ଦିଆଗଲା ଓ ଆସାନ ବାଧ୍ୟ ହୋଇ କଲକତା ଛାଡ଼ି ବାଙ୍ଗାଲୋର ଫେରି ଯାଇଥିଲେ । ସେତେବେଳକୁ ଡଃ ପଲପୁ ସିଙ୍ଗାପୁରରୁ ଫେରି ଆସିଥାନ୍ତି । ଆସାନ ଡଃ ପଲ୍‌ପୁ ତାଙ୍କୁ ସମସ୍ତ ଜଣାଇ ଗୁରୁ ନାରାୟଣ ସ୍ୱାମୀଙ୍କ ଆଶ୍ରମ ଅରୁଭିପୁରମ୍‌କୁ ଫେରିଗଲେ ।

ଯାହାହେଉ, କେରଳ ବାହାରେ କନ୍ନଡ଼, ତାମିଲ ଓ ବଙ୍ଗ ଭାଷାଭାଷୀଙ୍କ ଗହଣରେ ରହି ବିଭିନ୍ନ ସଂସ୍କୃତିକୁ ଜାଣିବାଦ୍ୱାରା କୁମାରନ୍‌ଙ୍କ ଦୃଷ୍ଟିକୋଣ ନିଶ୍ଚିତଭାବେ ସଂପ୍ରସାରିତ ହୋଇଥିଲା । କଲକତାରେ ଥିବା ସମୟରେ ରବୀନ୍ଦ୍ରନାଥଙ୍କ କବିତାବଳୀ ବିଷୟରେ ସେ ଯଥେଷ୍ଟ ସାମାନ୍ୟ ଅବହିତ ହୋଇଥିବା ଅନୁମେୟ । ରବୀନ୍ଦ୍ରନାଥ ଖ୍ରୀ ୧୯୨୨ରେ କେରଳକୁ ଆସିଥିବା ସମୟରେ କୁମାରନ୍ ତାହାଙ୍କ ଉଦ୍ଦେଶ୍ୟରେ 'ଦିବ୍ୟ କୋକଳମ୍ ଓ "ସ୍ୱାଗତ ପଞ୍ଚକମ୍" ରଚନା କରିଥିଲେ ।

ଗୁରୁଙ୍କ ନିର୍ଦ୍ଦେଶରେ କୁମାରନ୍ ସଂଘର ସେବା ଓ ପରିଚାଳନାରେ ଆପଣାକୁ ସଂପୂର୍ଣ୍ଣରୂପେ ଉତ୍ସର୍ଗ କରିଦେଲେ । ଖ୍ରୀ୧୯୦୨ରେ ଏଇ ସଂଘଟି ରେଜେଷ୍ଟ୍ରୀଭୁକ୍ତ ହୋଇଥିଲା । ସେତେବେଳକୁ କୁମାରନ୍ ସତେଇଶ ବର୍ଷ ବୟସର ଯୁବକ । ଦୀର୍ଘ ସତର ବର୍ଷ ସେ ଏହାର ସଂପାଦକ ଭାବେ ଏଝବା ମାନଙ୍କ ମଧ୍ୟରେ ଧାର୍ମିକ, ଶିକ୍ଷାତ୍ମକ ତଥା ଆର୍ଥନୈତିକ ବିକାଶ ସାଧନଲାଗି ଆପ୍ରାଣ ଉଦ୍ୟମ କରିଥିଲେ । ସମସ୍ତ କେରଳ ରାଜ୍ୟରେ ଏହାର ବହୁ ଶାଖା ପ୍ରତିଷ୍ଠିତ ହୋଇଥିଲା । ତାହାଙ୍କ ଅପୂର୍ବ ସଂଗଠନ କ୍ଷମତାଫଳରେ ଯେ ଏହାର ଉତ୍ତରୋତ୍ତର ବିକାଶ ସାଧିତ ହୋଇଥିଲା ଏହା କହିବା ଅନାବଶ୍ୟକ । ଏଥିପାଇଁ ତାଙ୍କୁ କେରଳ ରାଜ୍ୟର ଏ ପ୍ରାନ୍ତରୁ ସେପ୍ରାନ୍ତ ପର୍ଯ୍ୟନ୍ତ ପରିଭ୍ରମଣ କରିବାକୁ ପଡ଼ିଥିଲା । ଏହି ଅନୁଷ୍ଠାନର ମୁଖପତ୍ର ଭାବେ 'ବିବେକୋଦୟମ୍' ନାମକ ଏକ ପତ୍ରିକା ମଧ୍ୟ ସେ ସଂପାଦନ କରୁଥିଲେ । ତାହାଙ୍କ ଯୋଗ୍ୟ ସଂପାଦନାରେ ଏହା ପନ୍ଦର ବର୍ଷ ପ୍ରକାଶ ପାଇଥିଲା । ଏହା ପରେ ଗୁରୁଙ୍କ ନିର୍ଦ୍ଦେଶରେ ସେ ଅଲଓ୍ୱିରେ ଅବସ୍ଥିତ ଅଦ୍ୱୈତ ଆଶ୍ରମ ଓ ସଂସ୍କୃତ ବିଦ୍ୟାଳୟର ସଂପାଦକ ଦାୟିତ୍ୱ ଖ୍ରୀ୧୯୨୦ରୁ ଗ୍ରହଣ କଲେ ।

ପଇଂତ୍ରିଶ ବର୍ଷ ପର୍ଯ୍ୟନ୍ତ ଗୁରୁଙ୍କ ନିର୍ଦ୍ଦେଶରେ ସଂଘ କାର୍ଯ୍ୟରେ ଆତ୍ମନିୟୋଗ କରିବା ସମୟରେ କୁମାରନ୍ ଆପଣାର ବିବାହ ସମ୍ବନ୍ଧରେ କେବେ ଚିନ୍ତା କରିଥିବା ଜଣାଯାଏ ନାହିଁ । ବ୍ରହ୍ମଚାରୀ ଓ ଶ୍ରେଷ୍ଠ ସ୍ୱାମୀଜୀ ଭାବରେ ହିଁ ସେ ଥିଲେ ସୁପରିଚିତ; ମାତ୍ର ଅତୀବ ଆକସ୍ମିକ ଭାବରେ ହିଁ ସେ ବିବାହ କରିବାକୁ ସମ୍ମତ ହୋଇଥିଲେ । ଆପଣାର ପୈତୃକ ସଂସାର ପ୍ରତି ତାଙ୍କର କୌଣସି ଆକର୍ଷଣ ନଥିଲା । ମା'ଙ୍କ ମୃତ୍ୟୁ ସମ୍ବାଦ ମଧ୍ୟ ତାଙ୍କୁ ବିଚଳିତ କରି ନଥିଲା । ଆତ୍ମୀୟମାନଙ୍କ ସହ ତାଙ୍କର ସଂପର୍କ ମଧ୍ୟ ଥିଲା ବିଶେଷତ୍ୱହୀନ । କେବଳ ଡଃ ପଲପୁଙ୍କ ପରିବାର ସହ ତାଙ୍କର ଥିଲା ବିଶେଷ ଘନିଷ୍ଠତା । ସଂଘର ଅନ୍ୟତମ କର୍ମକର୍ତ୍ତା ଭାବେ ତଥା ଡଃ ପଲପୁଙ୍କ ଜଣେକ ଆତ୍ମୀୟଭାବେ କୁମାରନ୍ଙ୍କ ପରିବାର ସହ ତାଙ୍କର ଘନିଷ୍ଠତା ଜନ୍ମିଥିଲା । କୁମାରନ୍ଙ୍କ ପତ୍ନୀ ଥିଲେ ସଙ୍ଗୀତ ଓ ସାହିତ୍ୟର ଅନୁରାଗିଣୀ ଓ କୁମାରନ୍ଙ୍କ କବିତାକୁ ସେ ଖୁବ୍ ପ୍ରଶଂସା କରୁଥିଲେ । ସେହି ଭାବରେ ହିଁ ଏହି ପରିବାର ସହ କୁମାରନ୍ଙ୍କ ପରିଚୟ କ୍ରମେ ଘନିଷ୍ଠତାରେ ପରିଣତ ହେଲା । ପ୍ରେମର ଦେବତାଙ୍କ ପ୍ରଭାବ ଅତୀବ ବିଚିତ୍ର । ପଇଁତ୍ରିଶ ବର୍ଷର ବ୍ରହ୍ମଚାରୀ କୁମାରନ କନ୍ୟା ଭାନୁମତୀଙ୍କୁ ଯେ ଦିନେ ବିବାହ କରିବେ ଏହା ଥିଲା ଏକ କଳ୍ପନାତୀତ ବ୍ୟାପାର । ଭାନୁମତୀ ମଧ୍ୟ ଥିଲେ କୁମାରନ୍ଙ୍କ ଶିଷ୍ୟା । ପିତା ମାତାଙ୍କ ଅନୁରୋଧ କ୍ରମେ କୁମାରନ୍ ଭାନୁମତୀର ସଂସ୍କୃତ ଶିକ୍ଷାର ଦାୟିତ୍ୱ ଗ୍ରହଣ କରିଥିଲେ । ଦୁଇ ବର୍ଷ ମଧ୍ୟରେ ଗୁରୁ ଓ ଶିଷ୍ୟାଙ୍କ ମଧ୍ୟରେ ପ୍ରଣୟ ହେଲା ଘନୀଭୂତ । ଦୁହେଁ ଶେଷରେ ବିବାହ ବନ୍ଧନରେ ଆବଦ୍ଧ ହେଲେ ।

କୁମାରନ୍ଙ୍କ ଏହି ବିବାହକୁ ଜନସାଧାରଣ ସହଜ ଭାବରେ ଗ୍ରହଣ ନକରିବା ସ୍ୱାଭାବିକ । ପୂର୍ବରୁ ସ୍ୱାମୀଜୀଙ୍କ ସମ୍ମତି ନ ନେଇଥିବାରୁ ସେ ମଧ୍ୟ ପ୍ରକାଶ୍ୟରେ ନ କହିଲେ ବି ଏହି ବିବାହକୁ ସମ୍ଭବତଃ ଆନ୍ତରିକ ଅନୁମୋଦନ କରିପାରିନଥିଲେ ।

କୁମାରନ୍ ନିଭନମ୍‌ରେ ଶ୍ରେଷ୍ଠ ଘରଟିଏ ନିର୍ମାଣ କରିଥିଲେ । ନବ ଦମ୍ପତି ସେଠାରେ ସେମାନଙ୍କ ନୂତନ ପାରିବାରିକ ଜୀବନ ଆରମ୍ଭ କଲେ; ସନ୍ନ୍ୟାସୀ ହେଲେ ଗୃହସ୍ଥ । ଆସାନ୍ଙ୍କ ଭଳି ଜଣେ ସମାଜରେ ପ୍ରତିଷ୍ଠିତ

ସମ୍ମାନିତ ବ୍ୟକ୍ତି ଏପରି ଏକ ସରଳା ଅପରିଣତ ବୟସ୍କା କନ୍ୟାଟିଏ ବିବାହ କରିବା ଯୋଗୁଁ ଅନେକେ ଆସାନଙ୍କୁ ସମାଲୋଚନା କରିଥିଲେ । ସଂଘର ସଂପାଦକ ଭାବେ ସେ ସମାଜରେ ଥିଲେ ସମ୍ମାନାସ୍ପଦ । ଅନେକେ ତାଙ୍କୁ କଳଙ୍କିତ କରିବାକୁ ପଛେଇଲେ ନାହିଁ । ତାଙ୍କ ନାମରେ ନାନା ପ୍ରକାର କୁତ୍ସାରଟନା କରିଗଲେ । ଆପଣାର ଅତି ପ୍ରିୟ ଓ ନିକଟତମ ଲୋକଙ୍କଠାରୁ ଏଭଳି ଆକ୍ଷେପ ଆସାନଙ୍କୁ ମର୍ମାହତ କରିଥିବା ବିଚିତ୍ର ନୁହେଁ । ତାଙ୍କର ତତ୍କାଳୀନ ମାନସିକ ପ୍ରତିକ୍ରିୟାକୁ କବି ଖ୍ରୀ ୧୯୧୯ରେ ରୂପ ଦେଇଥିଲେ 'ଗ୍ରାମବୃକ୍ଷତଳେ କୁଇଲ୍', (ଗ୍ରାମ ବୃକ୍ଷରେ କୋଇଲି) ନାମକ ଏକ ପଦ୍ୟରେ ।

ସଂଘର ସଂପାଦକ ଦାୟିତ୍ୱରୁ ଅବ୍ୟାହତି ନେବାକୁ କୁମାରନ୍ ଅନେକ ଦିନୁ ଇଚ୍ଛୁକ ଥିଲେ । ସେତେବେଳକୁ ତାଙ୍କର ଖ୍ୟାତି କେରଳର ସୀମା ବାହାରକୁ ମଧ୍ୟ ପରିବ୍ୟାପ୍ତ ହୋଇଯାଇଥାଏ । ନିଜେ ସଂପାଦକ ପଦରୁ ଅବ୍ୟାହତି ନେବାକୁ ଚାହୁଁଥିବା ବିଷୟ ସେ ଦିନେ ପ୍ରକାଶ୍ୟରେ ଘୋଷଣା କଲେ । ଅନ୍ୟ କର୍ମକର୍ତ୍ତାଙ୍କୁ ପ୍ରବୋଚିତ କରାଇବା ପରେ ତାହା ଗୃହୀତ ହୋଇଥିଲା ।

କର୍ମଜୀବନରୁ ଅବ୍ୟାହତି ପାଇ ଗାର୍ହସ୍ଥ୍ୟ ଜୀବନ ଯାପନ କରୁଥିବା ଅବକାଶରେ କୁମାରନ୍ କେତେକ ଉଚ୍ଚକୋଟୀର ଗ୍ରନ୍ଥ ରଚନା କରିବାକୁ ସମର୍ଥ ହୋଇଥିଲେ । ମାତ୍ର ସୃଜନଶୀଳତା ଓ ଖ୍ୟାତିର ଉଚ୍ଚ ସୋପାନକୁ ଉନ୍ନୀତ ହୋଇଥିବା ସମୟରେ ହିଁ ଭାଗ୍ୟର ନିର୍ମମ ପରିହାସ ସ୍ୱରୂପ ସେ ଦିନେ ଆକସ୍ମିକ ଭାବେ ମୃତ୍ୟୁ କବଳିତ ହେଲେ । ତ୍ରିବାନ୍ଦ୍ରମଠାରୁ ପନ୍ଦର ମାଇଲ ଦୂରରେ ତୋନାକୁଲ୍ ନାମକ ଏକ ସ୍ଥାନରେ ତାଙ୍କର କେତେ ଏକର ଜମି ଥିଲା । ୧୯୨୪ ମସିହା ଜାନୁଆରୀ ୧୫ ତାରିଖ ଦିନ ତୋନାକୁଲ୍‌ରେ କାମଦାମ ସାରି ସେ ଆଲୱେ ବାହାରିଲେ । କୁଇଲନ୍‌କୁ ଆସି ସେ ଡଙ୍ଗାରେ ଚଢ଼ିଲେ । ଡଙ୍ଗାଟି ଆଲେପ୍‌ପି ଯାଉଥାଏ । ଆଲେପ୍‌ପିଠାରୁ ସେ ଆଲୱେ ଯାଇଥାନ୍ତେ; ମାତ୍ର ସେହି ଡଙ୍ଗାରେ ହିଁ କୁମାରନ ଲଭିଲେ ସଲିଳସମାଧି । କୁଇଲନରୁ ବାହାରିଲାବେଳେ ଡଙ୍ଗାରେ ଅସମ୍ଭବ ଭିଡ଼, ବହୁତ ଲୋକ ସେଥିରେ ବସିଥାନ୍ତି । କେତେବାଟ ଗଲାପରେ କେତେକ

ପ୍ରଶଂସାକାରୀଙ୍କୁ କବି ତାଙ୍କର 'ବୁଦ୍ଧ ଚରିତ' ଓ 'କରୁଣା' କାବ୍ୟ ଗ୍ରନ୍ଥରୁ କିଛି ପଦ୍ଧ ଶୁଣାଇଥିଲେ । ମଧ୍ୟରାତ୍ରି ପରେ ଟିକିଏ ଶୋଇବା ଲାଗି କବି ଲଞ୍ଚର ତଳଭାଗରେ ଥିବା ପ୍ରଥମ ଶ୍ରେଣୀର କାବିନକୁ ଶୋଇବାକୁ ଗଲେ । ସେ ଦିନଟି ହେଉଛି ୧୯୨୪ ମସିହା ଜାନୁଆରୀ ୧୭ ତାରିଖ—ବେଶ୍ ଶୀତ ହେଉଥାଏ । ଖଦଡ଼ କୋଟଟିକୁ ଓହ୍ଲାଇ ଗୋଟିଏ ଭଲ ଶାଲ୍ ଘୋଡ଼ାଇ ହୋଇ ସେ ଶୋଇପଡ଼ିଲେ । ଏହାହିଁ ଥିଲା ତାଙ୍କର ଶେଷ ନିଦ୍ରା । ସେ ଆଉ ଉଠିନାହାନ୍ତି ।

ଏକ ଶ୍ରେଷ୍ଠ କେନାଲରେ ଲଞ୍ଚଟି ଯାଉଥିବାବେଳେ ପଲ୍ଲନଠାରେ ଏହାର ନିମ୍ନାଂଶ ଫାଟିଗଲା । ପରଦିନ ତାଙ୍କର ମୃତଦେହ ଉପରକୁ ଅଣାଗଲା । ତାଙ୍କ କପାଳରେ ଥିଲା ସାମାନ୍ୟ ଆଞ୍ଚୁଡ଼ା ଦାଗ । ଏହି ଆକସ୍ମିକ ମୃତ୍ୟୁ ଥିଲା ଯେପରି କରୁଣ ସେହିପରି ରହସ୍ୟମୟ । ବିକ୍ଷୁବ୍ଧ ସମୁଦ୍ର ଓ ନଦୀରେ ପହଁରିବାରେ ଦକ୍ଷ କବି କୁମାରନ୍ ଏହିପରି ବିଚିତ୍ର ଭାବେ ସଳିଳସମାଧି ବରଣ କଲେ । ସେତେବେଳକୁ ତାଙ୍କୁ ମାତ୍ର ଏକାବନ ବର୍ଷ ବୟସ ଓ ତାହାଙ୍କ ପତ୍ନୀଙ୍କ ବୟସ ତେଇଶ; ମାତ୍ର ଛଅବର୍ଷ ବିବାହିତ ଜୀବନ ସେମାନେ ଯାପନ କରିଥା'ନ୍ତି ଓ ଭାନୁମତୀଙ୍କ କୋଳରେ ଥାନ୍ତି ପାଞ୍ଚବର୍ଷ ଓ ଦୁଇବର୍ଷର ଦୁଇଟି ପୁତ୍ର ସନ୍ତାନ । ସମଗ୍ର କେରଳ ଏଇ ଦୁଃସମ୍ବାଦରେ ମର୍ମାଭିଭୂତ ଓ ଶୋକବିହ୍ୱଳ ହୋଇଗଲା । କୋଡ଼ିଏ ବର୍ଷର ସମାଜସେବା ଓ ପନ୍ଦର ବର୍ଷର ସାହିତ୍ୟ ସେବାର ଜୀବନଦୀପଟି ସବୁଦିନ ପାଇଁ ଲିଭିଗଲା ।

## ସାହିତ୍ୟ ସୃଷ୍ଟି—

ଆସାନଙ୍କର ପ୍ରଥମ କବିତା ସଂକଳନ 'ଓରୁ ଥାଣା ପୁଭୁ' (ପତିତ ପୁଷ୍ପ) ଖ୍ରୀ: ୧୯୦୮ରେ ପ୍ରକାଶ ପାଇଥିଲା । ସଦର ସମ୍ପାଦକ ଥିବାବେଳେ ସେ ଯେଉଁ କେତେକ ସୁପ୍ରସିଦ୍ଧ ସଂସ୍କୃତ ରଚନାର ଅନୁବାଦ କରିଥିଲେ ସେଗୁଡ଼ିକ ହେଉଛି ଶଙ୍କରାଚାର୍ଯ୍ୟଙ୍କ 'ସୌନ୍ଦର୍ଯ୍ୟ ଲହରୀ' (୧୯୦୧), କାଳିଦାସଙ୍କ ମେଘଦୂତର ଅନୁବାଦ 'ମେଘ ସନ୍ଦେଶମ୍' (୧୯୦୨), 'ପ୍ରବୋଧ ଚନ୍ଦ୍ରୋଦୟମ୍' (୧୯୦୨) । ଏହା ବ୍ୟତୀତ ସେ 'ବିଚିତ୍ର ବିଜୟମ୍' ନାମକ ଏକ ନାଟକ ମଧ୍ୟ ପ୍ରଣୟନ କରିଥିଲେ । ଏହାପରେ ଖ୍ରୀ: ୧୯୧୧ରେ

ତାହାଙ୍କ ରଚିତ ପ୍ରଣୟ-ପ୍ରଧାନ କାବ୍ୟ 'ନଳିନୀ' ଓ ଖ୍ରୀ: ୧୯୧୪ରେ 'ଲୀଳା' ପ୍ରକାଶିତ ହୋଇଥିଲା । କେରଳର ରାଜା ଏ. ଆର. ରାଜରାଜ ବର୍ମା (ଖ୍ରୀ: ୧୮୬୩-୧୯୧୮) ଙ୍କ ବିୟୋଗ ପରେ ସେଇ ଉପଲକ୍ଷେ ସେ 'ପ୍ରାରୋଦନମ୍' ନାମକ ଏକ ଦୀର୍ଘ ଶୋକ ଗୀତ ରଚନା କରିଥିଲେ । ଏହାର ପରବର୍ତ୍ତୀ କାବ୍ୟ ରଚନା ହେଉଛି 'ଚିନ୍ତାଭିଷ୍ଟୟା ସୀତା' (୧୯୧୯) ।

କୁମାରନ୍‌ଙ୍କ କବି ଜୀବନରେ ଶେଷ ପର୍ଯ୍ୟାୟର ରଚନାଗୁଡ଼ିକ ଅଧିକ ସାମାଜିକ । ଏଇ ଧରଣର ରଚନା ଭାବେ 'ଦୁରବସ୍ଥା', 'ଚଣ୍ଡାଳ ଭିକ୍ଷୁଣୀ' ନାମକ ଦୁଇଟି କାବ୍ୟକୃତି ଉଲ୍ଲେଖଯୋଗ୍ୟ । ଏହା ବ୍ୟତୀତ ତାହାଙ୍କ କ୍ଷୁଦ୍ର କବିତାର ସଙ୍କଳନ ଭାବେ 'ପୁଷ୍ପବାଟୀ', 'ମଣିମାଳା', 'ବନମାଳା' ସୁବିଖ୍ୟାତ । ଶେଷୋକ୍ତ ଗ୍ରନ୍ଥ ଦୁଇଟି ତାହାଙ୍କ ମୃତ୍ୟୁ ପରେ ତାହାଙ୍କ ପତ୍ନୀଙ୍କଦ୍ୱାରା ପ୍ରକାଶିତ । ଅନୁବାଦକ ଭାବେ ମଧ୍ୟ ତାହାଙ୍କ କୃତିତ୍ୱ ଉଲ୍ଲେଖନୀୟ । ସାର୍ ଏଡ୍‌ୱିନ ଆର୍ନୋଲ୍‌ଡ଼ଙ୍କ 'ଲାଇଟ ଅଫ୍ ଏସିଆ' କାବ୍ୟ ଜେମସ୍ ଆଲନଙ୍କ 'ଯ୍ୟାଜ ଏ ମ୍ୟାନ ଥିଙ୍କେଥ' ଗଦ୍ୟ ରଚନାକୁ ସେ ଯଥାକ୍ରମେ ବୁଦ୍ଧ ଓ ମନଶକ୍ତି ନାମରେ ଅନୁବାଦ କରିଅଛନ୍ତି । ବିବେକାନନ୍ଦଙ୍କ 'ରାଜଯୋଗ' (୧୯୦୮)ର ଅନୁବାଦ ମଧ୍ୟ ତାହାଙ୍କର ଏକ ସଫଳ ପ୍ରୟାସ ।

ବାଲ୍ମୀକିଙ୍କ ରାମାୟଣର କଥାବସ୍ତୁ ଅବଲମ୍ବନରେ ସେ କିଶୋର-ମାନଙ୍କ ଲାଗି 'ବାଳ ରାମାୟଣ' ନାମକ ଏକ କ୍ଷୁଦ୍ରଗ୍ରନ୍ଥ ଅନୁଷ୍ଟୁପ୍ ଛନ୍ଦରେ ରଚନା କରିଯାଇଅଛନ୍ତି । ଏଇ ସମସ୍ତ ସାହିତ୍ୟ କୃତି ମଧ୍ୟରେ 'କରୁଣା' ନାମକ କାବ୍ୟଟି ତାଙ୍କର ସର୍ବଶେଷ ତଥା ସର୍ବଶ୍ରେଷ୍ଠ ରଚନା ଭାବେ ପରିଗୃହୀତ ହୁଏ । ଆସାନଙ୍କ ଜୀବନ ଯେପରି ପ୍ରାଚ୍ୟ ଓ ପାଶ୍ଚାତ୍ୟ ଜୀବନାଦର୍ଶର ସମନ୍ୱୟ, ସେହିପରି ତାହାଙ୍କ ସାହିତ୍ୟ ସୃଷ୍ଟି ମଧ୍ୟ ତାହାର ସାର୍ଥକ ଓ ସଫଳ ନିଦର୍ଶନ ।

# ପ୍ରେମଚନ୍ଦ

ଯେଉଁ ସାହିତ୍ୟିକମାନଙ୍କ ଅମର କୃତି ଯୋଗୁ ଭାରତ ବିଶ୍ୱସାହିତ୍ୟ କ୍ଷେତ୍ରରେ ଗୌରବାନ୍ୱିତ ହୋଇପାରିଛି, ସେହିମାନଙ୍କ ମଧ୍ୟରୁ ଆଧୁନିକ ହିନ୍ଦୀ ସାହିତ୍ୟର କଥାଶିଳ୍ପୀ ପ୍ରେମଚନ୍ଦ ଅନ୍ୟତମ । ଅଳ୍ପ କେତେଖଣ୍ଡ ନାଟକ ଓ ପ୍ରବନ୍ଧ ରଚନା କରିଥିଲେ ହେଁ ଗଳ୍ପ ଓ ଉପନ୍ୟାସ ରଚୟିତା ଭାବେ ସେ ହିନ୍ଦୀ ସାହିତ୍ୟ କ୍ଷେତ୍ରରେ ନବଯୁଗର ସ୍ରଷ୍ଟା ଭାବେ ସ୍ୱୀକୃତ ଓ ସମ୍ମାନିତ । ଭାରତ ତଥା ପୃଥିବୀର ବହୁ ଭାଷାରେ ତାହାଙ୍କ ରଚନାବଳୀ ଅନୂଦିତ ହୋଇ ସୁସମାଦୃତ ହୋଇଅଛି ।

**ଜୀବନଧାରା—**

ପ୍ରେମଚନ୍ଦଙ୍କ ପୈତୃକ ନାମ ଧନପତ ରାୟ । ଧନପତ ପରବର୍ତ୍ତୀ କାଳରେ ତାହାଙ୍କ ସାହିତ୍ୟିକ ଛଦ୍ମନାମ ପ୍ରେମଚନ୍ଦ ଭାବରେ ସୁବିଦିତ ହୋଇଅଛନ୍ତି । ଖ୍ରୀ: ୧୮୮୦ରେ ବାରାଣସୀ ନିକଟବର୍ତ୍ତୀ ଲମହୀ ନାମକ ଏକ ଗ୍ରାମରେ ଏକ ନିମ୍ନମଧ୍ୟବିତ୍ତ କାୟସ୍ଥ ପରିବାରରେ ସେ ଜନ୍ମଗ୍ରହଣ କରିଥିଲେ । ତାହାଙ୍କ ପିତାଙ୍କ ନାମ ଅଜାୟବ ଲାଲ ଓ ମାତାଙ୍କ ନାମ ଆନନ୍ଦୀ ଦେବୀ । ପିତା ଗୋଟିଏ ଡାକଘରେ କିରାଣି କାମ କରୁଥିଲେ । ପୈତୃକ ଜମି ଥିଲା ମାତ୍ର ଛଅମାଣ । ମାସିକ ଦରମା ପଚିଶ ଟଙ୍କାରେ ଏକ ବଡ଼ ପରିବାରର ଦାୟିତ୍ୱ ବହନ କରିବା ତାଙ୍କ ପକ୍ଷେ କଷ୍ଟକର ହୋଇଥିଲା ।

ପ୍ରେମଚନ୍ଦଙ୍କ ଜୀବନ ଆଦୌ ଘଟଣାବହୁଳ ନୁହେଁ । ତାହାଙ୍କ ଶୈଶବ ଓ କୈଶୋର ସ୍ୱଗ୍ରାମରେ ହିଁ ଅତିବାହିତ ହୋଇଥିଲା । ନିକଟବର୍ତ୍ତୀ ଗ୍ରାମରେ ରହୁଥିବା ଜନୈକ ମୌଲବୀଙ୍କଠାରୁ ଶୈଶବରେ ସେ ପାର୍ଶୀ ଓ ଉର୍ଦ୍ଦୁ ଭାଷା ଅଧ୍ୟୟନ କରିଥିଲେ । ଏହାପରେ ବନାରସର କୁଇନ୍ସ କଲେଜ ସଂଲଗ୍ନ ଉଚ୍ଚ ଇଂରାଜୀ ବିଦ୍ୟାଳୟରେ ସେ ଅଧ୍ୟୟନ କଲେ; ମାତ୍ର ତାଙ୍କର ଏଣ୍ଟ୍ରାନ୍ସ ଅଧ୍ୟୟନ କାଳ ନିରୁପଦ୍ରବ ନ ଥିଲା । ଏଠାରେ ଅଧ୍ୟୟନ କରୁଥିବା ସମୟରେ ତାଙ୍କୁ ପ୍ରତ୍ୟହ ଗ୍ରାମରୁ ଦୂର ପାଞ୍ଚମାଇଲ ପାଦରେ ଚାଲି ବାରାଣସୀ ଯିବାକୁ ପଡ଼ୁଥିଲା । ତେବେ, ୧୪ ବର୍ଷ ବୟସରେ ତାଙ୍କର ମାତାଙ୍କର ମୃତ୍ୟୁ ହେଲା । ଘର ଚଳାଇବା ପାଇଁ ବୋହୂଟିଏ ଦରକାର । ସମ୍ଭବତଃ ସେଥିପାଇଁ ମାତ୍ର ପନ୍ଦର ବର୍ଷ ବୟସରେ ଖ୍ରୀ. ୧୮୯୫ରେ ତାଙ୍କୁ ବିବାହ ବନ୍ଧନରେ ଆବଦ୍ଧ କରାଯାଇଥିଲା । ଏହାର ପରବର୍ଷ ତାଙ୍କର ପିତାଙ୍କର ମଧ୍ୟ ମୃତ୍ୟୁ ଘଟିଲା । ଏହିପରି ପରିସ୍ଥିତି ମଧ୍ୟରେ ପ୍ରେମଚନ୍ଦ ୧୮୯୮ରେ ଏଣ୍ଟ୍ରାନ୍ସ (ପ୍ରବେଶିକା) ପରୀକ୍ଷାରେ ପାସ୍ କଲେ । କଲେଜରେ ଅଧ୍ୟୟନ କରିବାକୁ ସେ ଅଭିଳାଷୀ ଥିଲେ ଓ ଏଥିପାଇଁ ଚେଷ୍ଟା କରିଥିଲେ ହେଁ ତାହା ଫଳବତୀ ହୋଇପାରି ନ ଥିଲା । ପରିବାରର ଦାୟିତ୍ୱ ଦୃଷ୍ଟିରୁ ମାତ୍ର ୧୯ ବର୍ଷ ବୟସରେ ତାଙ୍କୁ ପରିବାର ଭରଣପୋଷଣ ଉଦ୍ଦେଶ୍ୟରେ ବାଧ୍ୟହୋଇ ଚାକିରୀ କରିବାକୁ ପଡ଼ିଥିଲା ।

ଶିକ୍ଷକତାକୁ ହିଁ ସେ ବୃତ୍ତି ଭାବେ ଗ୍ରହଣ କରି ନେଇଥିଲେ । ପ୍ରଥମେ ଏକ ବେସରକାରୀ ସ୍କୁଲରେ ସହକାରୀ ଶିକ୍ଷକରୂପେ ସେ ଖ୍ରୀ୧୮୯୯ରେ ଯୋଗ ଦେଇଥିଲେ ଓ ଏହା ପରବର୍ଷ ଏକ ସରକାରୀ ସ୍କୁଲର ଶିକ୍ଷକ ରୂପେ ସେ ନିଯୁକ୍ତି ପାଇଥିଲେ । ପ୍ରାୟ ବାଇଶ ବର୍ଷ ଶିକ୍ଷକତା କରିବା ପରେ କର୍ତ୍ତୃପକ୍ଷଙ୍କ ଦୁର୍ବ୍ୟବହାର ଯୋଗୁଁ ୧୯୨୧ରେ ସେ ଏହି କାର୍ଯ୍ୟରୁ ଇସ୍ତଫା ଦେଇଥିଲେ । ଶିକ୍ଷକ ଭାବେ ତାଙ୍କୁ ଚୁନାର, ବହରାଇଚ, ପ୍ରତାପଗଡ଼, ଏଲାହାବାଦ, କାନପୁର, ବସ୍ତି, ଗୋରଖପୁର ପ୍ରଭୃତି ସ୍ଥାନରେ ବହୁବର୍ଷ ଅତିବାହିତ କରିବାକୁ ପଡ଼ିଥିଲା । ଶିକ୍ଷକତା କାଳରେ ଘରୋଇ ଭାବରେ ପଢ଼ି ପରୀକ୍ଷା ଦେଇ ସେ ଆଇ.ଏ. ଓ ବି.ଏ. ପାସ୍ କରିଥିଲେ ।

ଦୁର୍ଭାଗ୍ୟକୁ ତାଙ୍କର ପ୍ରଥମ ପତ୍ନୀ ଥିଲେ କୁରୂପା, ରୁଚିହୀନା, କଳହପ୍ରିୟା ଓ ଏକଗୁଣିଆ; ବିମାତା ଥିଲେ କ୍ରୋଧସମ୍ପନ୍ନା ଓ କଳହ ପରାୟଣା । ଏଣୁ ସର୍ବଦା ଗୃହ ବିବାଦ ଯୋଗୁଁ ପ୍ରେମଚାନ୍ଦ ପରିବାରରୁ ଶାନ୍ତି ପାଇପାରୁ ନ ଥିଲେ । ତରୁଣ ବୟସରେ ଏକ ରୂପ ରୁଚିହୀନା କଳହପ୍ରିୟା ପତ୍ନୀକୁ ପାଇ ତାଙ୍କର ସମସ୍ତ ସ୍ୱପ୍ନ ଧୂଳିସାତ ହୋଇଯାଇଥିବା ଏକାନ୍ତ ସ୍ୱାଭାବିକ । ଗୃହ ବିବାଦର ପରିଣତି ସ୍ୱରୂପ ପ୍ରଥମା ପତ୍ନୀ ଆତ୍ମହତ୍ୟା କରିବାକୁ ଚେଷ୍ଟା କରିଥିଲେ । ଅବଶେଷରେ ଦିନେ ସେ ରାଗରେ ସ୍ୱାମୀଙ୍କ ଗୃହର ସମସ୍ତ ମମତା ତ୍ୟାଗ କରି ପିତ୍ରାଳୟକୁ ଚାଲିଗଲେ । ଯାହାହେଉ ବିବାହର ପ୍ରାୟ ସାତବର୍ଷ ପରେ ପ୍ରଥମା ପତ୍ନୀଙ୍କ ସହ ପ୍ରେମଚାନ୍ଦଙ୍କ ସମସ୍ତ ସମ୍ପର୍କ ଛିନ୍ନ ହୋଇଯାଇଥିଲା । ବିବାହର ଦଶବର୍ଷ ପରେ ସେ ପୁନର୍ବିବାହ କରିଥିଲେ । ଆଦର୍ଶ ବାଦୀ ଭାବରେ ସେ ଜନୈକ ଜମିଦାରଙ୍କ ବାଲ୍ୟବିଧବା କନ୍ୟା ଶିବରାଣୀଙ୍କୁ ବିବାହ କରିଥିଲେ ।

ଶିବରାଣୀ ଥିଲେ ଗୃହକର୍ମ ନିପୁଣା ଓ ବିଷୟ ବୁଦ୍ଧିସଂପନ୍ନା । ମୋଟାମୋଟି ଭାବେ ସେ ପ୍ରେମଚାନ୍ଦଙ୍କ ଯୋଗ୍ୟା ସହଧର୍ମିଣୀ ହୋଇପାରି ଥିଲେ । ପ୍ରେମଚାନ୍ଦଙ୍କ ମୃତ୍ୟୁପରେ ସେ ତାହାଙ୍କ ଗାର୍ହସ୍ଥ୍ୟ ଜୀବନ ସଂପର୍କରେ 'ପ୍ରେମଚାନ୍ଦ ଘରମେ' ନାମକ ଏକ ପୁସ୍ତକ ରଚନା କରିଯାଇଅଛନ୍ତି । ତାଙ୍କର ଗୋଟିଏ କନ୍ୟା, ଶ୍ରୀପତ ଓ ଅମୃତ ନାମକ ଦୁଇଟି ପୁତ୍ର । ବହୁ ଅଧ୍ୟବସାୟପୂର୍ବକ ଅମୃତ ରାୟ 'କଲମକା ସିପାହୀ' ନାମକ ପିତାଙ୍କର ଏକ ଉପାଦେୟ ଜୀବନ ଚରିତ ରଚନା କରିଅଛନ୍ତି ।

ସରକାରୀ ଚାକିରିରୁ ଇସ୍ତଫା ଦେବାପରେ ପ୍ରେମଚାନ୍ଦ ବନାରସରେ ଅବସ୍ଥାନ କଲେ । ଅଳ୍ପ କେତେ ମାସପାଇଁ ଏକ ଘରୋଇ ଶିକ୍ଷାନୁଷ୍ଠାନରେ ଶିକ୍ଷକତା କରିଥିଲେହେଁ ୧୯୨୨ରେ ଏଠାରେ ସେ ସରସ୍ୱତୀ ପ୍ରେସ୍ ନାମକ ଏକ ଛାପାଖାନା ସ୍ଥାପନ କରିଥିଲେ ଓ ପ୍ରାୟ ଦଶବର୍ଷ ଏହାକୁ ପରିଚାଳନା କରିଥିଲେ; ମାତ୍ର ବିଷୟ ବୁଦ୍ଧିସମ୍ପନ୍ନ ନ ଥିବାରୁ ଏହି ଛାପାଖାନା ହିଁ ତାଙ୍କୁ କ୍ଷତିଗ୍ରସ୍ତ କରାଇଥିଲା । ଏହି ସମୟରେ ସେ ମହାତ୍ମାଗାନ୍ଧିଙ୍କ ମତ ଓ ଆଦର୍ଶ ପ୍ରଚାରରେ ମଧ୍ୟ ମନୋନିବେଶ କରିଥିଲେ । ଅବସର କ୍ରମେ ଭାରତର ବିଭିନ୍ନ ସ୍ଥାନ ପରିଭ୍ରମଣ କରିବାପାଇଁ ସେ ଥିଲେ ଖୁବ୍ ଆଗ୍ରହୀ ।

ଏତଦ୍‌ବ୍ୟତୀତ କେତେକ ପତ୍ର ପତ୍ରିକା ସଂପାଦନା ସହ ମଧ୍ୟ ସେ ନିଜକୁ ସଂପୃକ୍ତ କରିଥିଲେ ଓ 'ହଂସ' ନାମକ ଏକ ଗଳ୍ପ ପତ୍ରିକା ମଧ୍ୟ ନିଜେ ସଂପାଦନା କରିଥିଲେ । ପ୍ରେସ୍ ପରିଚାଳନାରେ କ୍ଷତିଗ୍ରସ୍ତ ହେବାପରେ ସେ ବାଧ୍ୟହୋଇ ବମ୍ବେର ଏକ ଫିଲ୍ମ କଂପାନୀରେ କାହାଣୀ ଲେଖକ ଭାବେ ପ୍ରାୟ ଏକବର୍ଷ (୧୯୩୪) କାମ କରିଥିଲେ ।

ଏହାପରେ ସେ ପୁଣି ବନାରସକୁ ଫେରି ଆସିଲେ । ସେତେବେଳକୁ ସେ ଏକ ପ୍ରକାର ଶ୍ରାନ୍ତ ଓ ରୋଗଜୀର୍ଣ୍ଣ । ତଥାପି ସାହିତ୍ୟ ସୃଷ୍ଟିରୁ ସେ ବିରତ ହୋଇନଥିଲେ । ତାଙ୍କର ପାରିବାରିକ ଜୀବନ ସୁଖମୟ ନଥିଲା । ଶୈଶବରେ ମାତୃସ୍ନେହରୁ ସେ ଥିଲେ ବଞ୍ଚିତ । ବିମାତାଙ୍କ ବ୍ୟବହାର ମଧ୍ୟ ତାଙ୍କ ପ୍ରତି ପ୍ରୀତିପ୍ରଦ ବା ସମ୍ବେଦନଶୀଳ ନ ଥିଲା । କୈଶୋରରେ ପିତୃହୀନ, ମଧ୍ୟ ତାଙ୍କୁ ବ୍ୟଥିତ କରିବା ସଙ୍ଗେ ସଙ୍ଗେ ଜୀବିକା ଅନ୍ୱେଷଣ କରିବାକୁ ବାଧ୍ୟ କରିଥିଲା । ଚାକିରୀ ଜୀବନରେ ମଧ୍ୟ ସ୍ଥାନାନ୍ତର-ଯାତ୍ରା ତାଙ୍କର ସ୍ୱାସ୍ଥ୍ୟପକ୍ଷେ ଅନୁକୂଳ ନଥିଲା । ଏହିପରି ଆଜୀବନ ବହୁ ଘାତ ପ୍ରତିଘାତ ମଧ୍ୟ ଦେଇ ଜୀବନ ଅତିବାହିତ କରିଥିବାରୁ ସେ ହୋଇପାରିଥିଲେ ଧୈର୍ଯ୍ୟବାନ ଓ ସହିଷ୍ଣୁ । ସେ ଥିଲେ ଗୌରବର୍ଣ୍ଣ ଦୀର୍ଘାକୃତିବିଶିଷ୍ଟ ସୁପୁରୁଷ । ତାହାଙ୍କ ବେଶଭୂଷା ଓ ଚଳଣି ଥିଲା ଅତୀବ ସରଳ ଓ ସାଧାରଣ ।

ଆମାଶୟ ରୋଗ ଥିଲା ତାଙ୍କର ଚିର ସହଚର । ୧୯୩୬ରେ ତାଙ୍କର ଦ୍ରୁତ ସ୍ୱାସ୍ଥ୍ୟହାନି ହେଲା ଓ ସେହିବର୍ଷ ଅକ୍ଟୋବର ଆଠ ତାରିଖ ସକାଳେ ମାତ୍ର ଛପନ ବର୍ଷ ବୟସରେ ସେ ଶେଷନିଃଶ୍ୱାସ ତ୍ୟାଗ କରିଥିଲେ ।

ପ୍ରେମଚନ୍ଦ ଥିଲେ ଆଦର୍ଶବାଦୀ, ନିର୍ଭୀକ ଓ ସତ୍ୟର ପୂଜାରୀ । ମିଥ୍ୟା କପଟତାଠାରୁ ସେ ବହୁ ଦୂରରେ ଥିଲେ । ମହାତ୍ମା ଗାନ୍ଧିଙ୍କ ପରି ମନୁଷ୍ୟ ସ୍ୱଭାବତଃ ସଦ୍‌ଗୁଣସଂପନ୍ନ ଏହାହିଁ ସେ ବିଶ୍ୱାସ କରୁଥିଲେ । କୃଷକ ଓ ସାଧାରଣ ଜନ ଜୀବନର ଜୀବନ ଯାତ୍ରା, ବ୍ୟଥା ଓ ବେଦନାକୁ ସେ ଉତ୍ତମ ରୂପେ ଅବଧାରଣ କରି ପାରିଥିଲେ । ସମକାଳୀନ ରାଜନୈତିକ ବିଚାର-ଧାରା ସମ୍ପର୍କରେ ସେ ଥିଲେ ଅବହିତ ଓ ସଚେତନ । ମହାତ୍ମା ଗାନ୍ଧିଙ୍କ

ନିର୍ଦ୍ଦେଶିତ କଂଗ୍ରେସର ଚରମ ପନ୍ଥୀ ମତବାଦକୁ ସେ ଯଥାର୍ଥ ବୋଲି ଗ୍ରହଣ କରିନେଇଥିଲେ । ଭାରତୀୟ ଜନତାର ଉନ୍ନତି ପାଇଁ ବିଦେଶୀ ସରକାରଙ୍କ ସହ ସଂଘର୍ଷ ଓ ସଂଗ୍ରାମ ଯେ ଅନିବାର୍ଯ୍ୟ ଏହାହିଁ ଥିଲା ତାଙ୍କର ଦୃଢ଼ ଅବଧାରଣା ।

ତୁଳନାତ୍ମକ ଭାବେ ବିଚାର କଲେ ଫକୀରମୋହନ ଓ ପ୍ରେମଚନ୍ଦଙ୍କ ଜୀବନ ଓ ସୃଷ୍ଟି କ୍ଷେତ୍ରରେ ବହୁ ସାମଞ୍ଜସ୍ୟ ପରିଲକ୍ଷିତ ହୋଇଥାଏ । ଉଭୟଙ୍କୁ ସାଂସାରିକ ଘାତପ୍ରତିଘାତ ଯୋଗୁ କୈଶୋରରୁ ଜୀବନ ସଂଗ୍ରାମରେ ବ୍ରତୀ ହେବାକୁ ପଡ଼ିଛି ଓ ବାସ୍ତବ ଜୀବନର ଆଲେଖ୍ୟ ଚିତ୍ରଣ, ସତ୍ୟ ଓ ନ୍ୟାୟର ପ୍ରତିଷ୍ଠା, ଉଭୟଙ୍କ ସାହିତ୍ୟ ସୃଷ୍ଟିର ଆଭିମୁଖ୍ୟଥିଲା; ମାତ୍ର ପରିଣତ ବୟସରେ ଫକୀରମୋହନ ଭାଗ୍ୟବାଦୀ, ଈଶ୍ୱରବିଶ୍ୱାସୀ ଓ ଧର୍ମପରାୟଣ ହୋଇ ପଡ଼ିଥିଲେହେଁ ପ୍ରେମଚନ୍ଦ ଆମରଣ ଥିଲେ ବିପ୍ଳବୀ ଓ ନିରୀଶ୍ୱରବାଦୀ । ଫକୀରମୋହନ ଗଳ୍ପ ଉପନ୍ୟାସ ବ୍ୟତୀତ କାବ୍ୟକବିତା ରଚନାରେ ମନୋନିବେଶ କରିଥିଲେହେଁ କାବ୍ୟ କବିତା ପ୍ରତି ପ୍ରେମଚନ୍ଦଙ୍କର ଆଦୌ ଅନୁରାଗ ନଥିଲା ।

ଗଳ୍ପ ଉପନ୍ୟାସ ପ୍ରତି ପ୍ରେମଚନ୍ଦ ଶୈଶବରୁ ହିଁ ଅନୁରକ୍ତ ଥିଲେ । ମାତାଙ୍କ ମୃତ୍ୟୁ, ପିତାଙ୍କ ଦ୍ୱିତୀୟ ଦାର ପରିଗ୍ରହ, ତାହାଙ୍କ ମନରେ ଯେଉଁ ଜୀବନ-ଜିଜ୍ଞାସା ଓ କୌତୂହଳ ସୃଷ୍ଟି କରିଥିଲା ତାହା ତାଙ୍କୁ ଗଳ୍ପ ଉପନ୍ୟାସ ପଢ଼ିବାକୁ ଓ ବାସ୍ତବ ଲୋକ ଚରିତ୍ର ଅନୁଧ୍ୟାନ କରିବାକୁ ଆକୃଷ୍ଟ କରିବା ସ୍ୱାଭାବିକ । ତାହାଙ୍କ ସ୍ନେହ ଭୋକିଲା ଶିଶୁର ନିଃସଙ୍ଗ ମନ ଯେପରି ଗଳ୍ପ ଉପନ୍ୟାସ ଭିତରେ ହିଁ ଖୋଜି ପାଇଥିଲା ଆଶ୍ୱାସନା ଓ ଏହା ତାହାଙ୍କ ମନକୁ ଅନ୍ତର୍ମୁଖୀ ଓ କଳ୍ପନା ପ୍ରବଣ କରିଥିଲା ।

## ସାହିତ୍ୟ ସାଧନା ଓ ସୃଷ୍ଟି ସମ୍ଭାର :

ଖ୍ରୀ୧୯୦୧ରୁ ତାହାଙ୍କ ସାହିତ୍ୟିକ ଜୀବନର ସୂତ୍ରପାତ ହେଲା । ଏହାପରେ ସେ କାନପୁରରେ ଶିକ୍ଷକତା କରୁଥିବା ସମୟରେ ଖ୍ରୀ୧୯୦୩ରେ 'ଜମାନା' ପତ୍ରିକାର ସଂପାଦକ ଦୟାନାରାୟଣ ନିଗମଙ୍କ ସହ ତାଙ୍କର ପରିଚୟ ଓ ଅନ୍ତରଙ୍ଗତା ସ୍ଥାପନ ତାହାଙ୍କ ସାହିତ୍ୟିକ ଜୀବନର ଏକ

ଉଲ୍ଲେଖଯୋଗ୍ୟ ବିଷୟ । ନିଗମ ଥିଲେ ପ୍ରେମଚାନ୍ଦଙ୍କ ଆମରଣ ଅନ୍ତରଙ୍ଗ ବନ୍ଧୁ; ହିତାକାଙ୍‌କ୍ଷୀ, ପ୍ରେରଣାଦାତା ଓ ସାହିତ୍ୟ ସୃଷ୍ଟିର ଉତ୍ସାହଦାତା ଓ ରଚନାବଳୀର ପ୍ରକାଶକ ।

ପ୍ରେମଚାନ୍ଦ ସର୍ବାଗ୍ରେ ଉର୍ଦ୍ଦୁ ଭାଷାରେ ଉପନ୍ୟାସ ରଚନା କରିଥିଲେ । ତାହାଙ୍କ ପ୍ରଥମ ଉପନ୍ୟାସ ହେଉଛି, ଅସରାର-ମ-ଆବିଦ (ମନ୍ଦିରର ରହସ୍ୟ) । ଏହା ୧୯୦୩ ମସିହାରେ ରଚିତ ହୋଇଥିଲା । ଉର୍ଦ୍ଦୁ ଭାଷାରେ ମୁଦ୍ରଣ କାର୍ଯ୍ୟ ଉନ୍ନତ ହୋଇପାରି ନ ଥିବାରୁ ଓ ଉର୍ଦ୍ଦୁ ଅପେକ୍ଷା ହିନ୍ଦୀ ଭାଷାର ପାଠକ ସଂଖ୍ୟା ଅଧିକ ହୋଇଥିବାରୁ ସେ ତାହାଙ୍କ ଉର୍ଦ୍ଦୁ ଭାଷାରେ ରଚିତ ଉପନ୍ୟାସଗୁଡ଼ିକୁ ହିନ୍ଦୀରେ ରୂପାନ୍ତରିତ କରି ପ୍ରକାଶ କରାଇଥିଲେ । ଖ୍ରୀ:୧୯୦୫ରେ ତାହାଙ୍କ ପ୍ରଥମ ଉପନ୍ୟାସ ପ୍ରକାଶିତ ହୋଇଥିଲା । ଦ୍ୱିତୀୟ ଓ ତୃତୀୟ ଉପନ୍ୟାସ ୧୯୦୭ରେ ପ୍ରକାଶିତ ହେଲା । ଏହି ଉପନ୍ୟାସଗୁଡ଼ିକ 'ନବାବ ରାୟ' ନାମକ ଏକ ଛଦ୍ମ ନାମରେ ପ୍ରକାଶିତ ହୋଇଥିଲା । ମାତ୍ର ଏହି ବିଷୟ ସରକାରୀ କର୍ତ୍ତୃପକ୍ଷ ଜାଣିଦବା ପରେ ଓ ତାଙ୍କର ପ୍ରଥମ ଗଳ୍ପସଂଗ୍ରହ 'ସୋଜ-ଏ-ବତନ' ରାଜବିଦ୍ରୋହାତ୍ମକ ରଚନା ବୋଲି ୧୯୦୮ରେ ବାଜ୍ୟାପ୍ତ ହୋଇଯିବା ଯୋଗୁ ସେ ବାଧ୍ୟ ହୋଇ ଆପଣାର ସାହିତ୍ୟକୃତିକୁ 'ପ୍ରେମଚାନ୍ଦ' ଛଦ୍ମ ନାମରେ ପ୍ରକାଶ କରିଲେ । ଗଳ୍ପ ଉପନ୍ୟାସରେ ଅଭିବ୍ୟକ୍ତ ବିଷୟ ପାଇଁ ତାଙ୍କୁ ସରକାରଙ୍କ କୋପଦୃଷ୍ଟିରେ ପଡ଼ିବାର ଆଶଙ୍କା ଥିବାରୁ ବନ୍ଧୁ ନିଗମଙ୍କ ପରାମର୍ଶ କ୍ରମେ ୧୯୧୦ ମସିହାରୁ ତାଙ୍କୁ ଏହି ପନ୍ଥା ଗ୍ରହଣ କରିବାକୁ ପଡ଼ିଥିଲା ।

ତାହାଙ୍କ ଉପନ୍ୟାସମାନଙ୍କ ମଧ୍ୟରୁ 'ସେବା ସଦନ (୧୯୧୬-୧୭), ପ୍ରେମାଶ୍ରମ, ରଙ୍ଗଭୂମି ( ୧୯୨୨-୨୪ ) କାୟାକଳ୍ପ ( ୧୯୨୪-୨୬ ) ବରଦାନ, ନିର୍ମଳା (୧୯୨୫-୨୬) ଏବଂ ଗବନ, (୧୯୩୧), କର୍ମଭୂମି (୧୯୩୧), ପ୍ରତିଜ୍ଞା, ଗୋଦାନ (୧୯୩୨-୩୪), ଏବଂ ଗଳ୍ପ ସଂଗ୍ରହମାନଙ୍କ ମଧ୍ୟରୁ ସପ୍ତ ସରୋଜ, ନବ ନିଧି, ପ୍ରେମ ପୂର୍ଣ୍ଣିମା, ପ୍ରେମ ପ୍ରମୋଦ, ପ୍ରେମ ପଚିଶ ପ୍ରଭୃତିର ନାମ ଉଲ୍ଲେଖଯୋଗ୍ୟ । 'ମଙ୍ଗଳ ସୂତ୍ର' ନାମକ ଅସମାପ୍ତ ଉପନ୍ୟାସଟି ତାହାଙ୍କର ସର୍ବଶେଷ କୃତିଭାବେ ଗୃହୀତ ହୁଏ । ଏତଦ୍‌ବ୍ୟତୀତ

ସେ କର୍ବଲା ଓ ସଂଗ୍ରାମ ନାମକ ଦୁଇଟି ନାଟକ ଓ କଲମ, ତ୍ୟାଗ ଔର ତଲବାର' ନାମକ ଏକ ପ୍ରବନ୍ଧ ସଂଗ୍ରହ ରଚନା କରିଯାଇଅଛନ୍ତି । ଶେଷ ଜୀବନରେ ଲିଖିତ 'ଗୋଦାନ'କୁ ତାଙ୍କର ସର୍ବଶ୍ରେଷ୍ଠ ଉପନ୍ୟାସ ଭାବରେ ଗ୍ରହଣ କରାଯାଇଥାଏ ।

ଜୀବଦ୍ଦଶାରେ ଆପଣା ଲେଖାଲେଖିରୁ ସେ ବିଶେଷ ଲାଭବାନ ହୋଇପାରି ନଥିଲେ । ପରବର୍ତ୍ତୀକାଳରେ ତାହାଙ୍କ ପୁସ୍ତକାବଳୀ ଯୋଗୁଁ ତାଙ୍କର ଉତ୍ତରାଧିକାରୀବର୍ଗ ପ୍ରଚୁର ଧନର ଅଧିକାରୀ ହୋଇପାରିଥିଲେହେଁ ପ୍ରେମଚନ୍ଦଙ୍କ ପକ୍ଷେ ଗୋଟିଏ ବର୍ଷର ବାର୍ଷିକ ପ୍ରାପ୍ତିରେ ଥରେ ଗୋଟିଏ ଘଣ୍ଟା ଓ ହଳେ ଯୋତା ମାତ୍ର କିଣିବା ସମ୍ଭବ ହୋଇଥିଲା । ବନ୍ଧୁ ନିଗମଙ୍କୁ ଲେଖିଥିବା ନିମ୍ନୋକ୍ତ ପତ୍ରଟିରୁ ତାହାଙ୍କ ଅସ୍ୱଚ୍ଛଳ ଆର୍ଥିକ ଅବସ୍ଥା ସହଜରେ ଅନୁମେୟ ।

"ନିର୍ଦ୍ଧାରିତ ହାରରେ ମୋର ପ୍ରାପ୍ୟ ହେଉଛି ଆଠ ଟଙ୍କା । ଯଦି ଖୁବ୍ ଅସୁବିଧା ନ ହୁଏ ତାହେଲେ ମୋ ପାଇଁ ଯଦି ତିନିଚାରି ଟଙ୍କାର ଗୋଟିଏ ପକେଟ ଘଡ଼ି ଏବଂ ସାଢ଼େ ଚାରିଟଙ୍କା ଦାମର ହଳେ ଯୋତା ପଠାଇ ପାରନ୍ତି, ମୁଁ ତାହେଲେ ବିଶେଷ ବାଧିତ ହେବି । ଦୁଇଟି ଯାକ ଜିନିଷ ଗୋଟାଏ ପାର୍ସଲରେ ଭର୍ତ୍ତିକରି ପଠାଇ ପାରନ୍ତି । ସାନଟି ମୋ ଜୋତା ନକଲ ନେଇ ଯାଇଥିବାରୁ ମୁଁ ଏବେ ଖାଲି ପାଦରେ ଯା ଆସ କରୁଛି ।"

ଟଲଷ୍ଟୟଙ୍କ ସାହିତ୍ୟାଦର୍ଶ ପ୍ରେମଚନ୍ଦଙ୍କୁ ପ୍ରଭାବିତ କରିଥିଲା । ସେ ମଧ୍ୟ ଟଲଷ୍ଟୟଙ୍କ କେତେଗୋଟି ଗଳ୍ପକୁ ହିନ୍ଦୀରେ ଅନୁବାଦ କରିଯାଇ ଅଛନ୍ତି । ଆଦର୍ଶପରିପୂର୍ଣ୍ଣତାର ପ୍ରକଟନ ଓ ସମାଜ କଲ୍ୟାଣ ଉଦ୍ଦେଶ୍ୟରେ ହିଁ ତାହାଙ୍କ ସମଗ୍ର ସାହିତ୍ୟ ସୃଷ୍ଟି ଉଦ୍ଦିଷ୍ଟ ଥିଲା । ସତ୍ୟ, ନ୍ୟାୟ ଓ ଧର୍ମର ବିଜୟ ଦର୍ଶାଇବା ସଙ୍ଗେ ସଙ୍ଗେ ସେ ଅନ୍ୟାୟ ଓ ଅଧର୍ମର ପରାଜୟ ଦର୍ଶାଇଯାଇ ଅଛନ୍ତି । ତଥାପି ସେ ଥିଲେ ବାସ୍ତବବାଦୀ ଜୀବନର ଚିତ୍ରକର । ଏହି ଦୃଷ୍ଟିରୁ ତାହାଙ୍କୁ ହିନ୍ଦୀ ଉପନ୍ୟାସ କ୍ଷେତ୍ରରେ ନବ ଯୁଗର ସ୍ରଷ୍ଟା ଭାବେ ଗ୍ରହଣ କରାଯାଏ । ହିନ୍ଦୀ ଉପନ୍ୟାସରେ ପ୍ରଚଳିତ ଅବାସ୍ତବ ଜୀବନ ଚିତ୍ରଣର ଧାରା ତାହାଙ୍କ ଅଭିନବ ସାହିତ୍ୟ ସୃଷ୍ଟି ଫଳରେ ପରିବର୍ତ୍ତିତ

ହୋଇଯାଇଥିଲା । ଅନ୍ତରଙ୍ଗ ବନ୍ଧୁ ଜୈନେନ୍ଦ୍ର କୁମାରଙ୍କ ସହାୟତାରେ ସେ ହିନ୍ଦୁସ୍ତାନୀ ସଭା ନାମକ ଏକ ସାହିତ୍ୟାନୁଷ୍ଠାନ ସଂଗଠନ କରିଥିଲେ । ହିନ୍ଦୀ ଓ ଉର୍ଦ୍ଦୁ ଭାଷାର ଲେଖକମାନଙ୍କ ମଧ୍ୟରେ ଆଳାପ ଓ ସଦ୍‌ଭାବ ପ୍ରତିଷ୍ଠା ଥିଲା ଏହାର ଲକ୍ଷ୍ୟ ।

୧୯୩୬ ଏପ୍ରିଲ୍ ମାସରେ ଲକ୍ଷ୍ନୌରେ ଅନୁଷ୍ଠିତ ହୋଇଥିବା ଭାରତୀୟ ପ୍ରଗ୍ରେସିଭ୍ ଲେଖକ ଆନ୍ଦୋଳନର ପ୍ରଥମ ଅଧିବେଶନରେ ସେ ସଭାପତିତ୍ୱ କରିଥିଲେ । ଏଠାରେ ସେ ଦେଇଥିବା ଅଭିଭାଷଣରୁ କଳା ଓ ସାହିତ୍ୟ ସଂପର୍କରେ ତାଙ୍କର ଅଭିମତ କିପରି ପ୍ରଗତିଶୀଳ ଥିଲା ତାହା ସହଜରେ ଅନୁମେୟ—"ମୋର ଏ କଥା ସ୍ୱୀକାର କରିବାରେ କୌଣସି ବାଧା ନାହିଁ, ଜୀବନର ଅନ୍ୟାନ୍ୟ କ୍ଷେତ୍ରରେ ଯେପରି, ଆର୍ଟ କ୍ଷେତ୍ରରେ ସେହିପରି ମୁଁ ଉପଯୋଗର କଷଟିରେ ତଉଲି ଏହାର ଉତ୍କର୍ଷ ବିଚାର କରେ । ଆମକୁ ସୌନ୍ଦର୍ଯ୍ୟ ବିଚାରର ମାନ ବଦଳାଇବାକୁ ପଡ଼ିବ । ଆମେ ଏବେ ମଧ୍ୟ ପୂର୍ବପରି ଭାବୁଛୁ ଯେ ଆର୍ଟ ହେଉଛି ସୌନ୍ଦର୍ଯ୍ୟର ପୂଜା, ରୂପର ପୂଜା ଜୀବନର ନାନା ସଂଗ୍ରାମ ଭିତରେ ଯେ ଏକ ପରମ ସୌନ୍ଦର୍ଯ୍ୟ ବିରାଜିତ, ସେହି ଅନ୍ତର୍ଦ୍ଦୃଷ୍ଟି ଆମମାନଙ୍କର ଏବେ ମଧ୍ୟ ଖୋଲିନାହିଁ ।"

ପ୍ରେମଚନ୍ଦ ମୁଖ୍ୟତଃ ସାଧାରଣ ପାଠକଙ୍କ ଲାଗି ସାହିତ୍ୟ ରଚନା କରିଥିଲେ । ଏଣୁ ତାହାଙ୍କ ରଚନାବଳୀର ଭାଷା ସରଳ ଓ ସର୍ବଜନବୋଧ । ପରିମାଣ ଦୃଷ୍ଟିରୁ ତାହାଙ୍କ ଗଳ୍ପ ମଧ୍ୟ ସ୍ୱଳ୍ପ ନୁହେଁ । ସେ ପ୍ରାୟ ଦୁଇଶହ ପଚାଶରୁ ଅଧିକ ଗଳ୍ପ ରଚନା କରିଯାଇ ଅଛନ୍ତି । ଗୁଣାତ୍ମକ ଦୃଷ୍ଟିରୁ ତାହାଙ୍କ ଗଳ୍ପ ଯେ କୌଣସି ଭାଷାର ଶ୍ରେଷ୍ଠ ସଂପଦ ଭାବେ ଗ୍ରହଣୀୟ ।

ତାହାଙ୍କ ରଚନା ମୁଖ୍ୟତଃ ଜୀବନଧର୍ମୀ ତଥା ସମାଜ ଧର୍ମୀ । ଏଥିରେ କବି କଳ୍ପନାର ଏକାନ୍ତ ଅଭାବ ପରିଲକ୍ଷିତ ହୁଏ । ବହିଃପ୍ରକୃତି ଅପେକ୍ଷା ମନୁଷ୍ୟର ଗତି ମତି, ଚଳଣି ଅନ୍ତଃ ପ୍ରକୃତି ଚିତ୍ରଣରେ ସେ ଥିଲେ ଅଧିକ ଅନୁରାଗୀ । ତାହାଙ୍କ ଚରିତ୍ରଗୁଡ଼ିକ ଆବେଗପ୍ରବଣ ହେବା ପରିବର୍ତ୍ତେ ଅଧିକ ବଳିଷ୍ଠ ଓ ସଂଗ୍ରାମୀ ମନୋଭାବାପନ୍ନ । ଏହି ଦୃଷ୍ଟିରୁ ଏହି ମହାନ କଥାଶିଳ୍ପୀ ଭାରତୀୟ ସାହିତ୍ୟର ରତ୍ନ ସ୍ୱରୂପ ।

ପ୍ରେମଚନ୍ଦଙ୍କ ଅନ୍ତିମ ଓ ସର୍ବଶ୍ରେଷ୍ଠ ଉପନ୍ୟାସ ହେଉଛି 'ଗୋଦାନ'। ଏହା ୧୯୩୬ରେ ପ୍ରକାଶିତ ହୋଇଥିଲା । ଏହାକୁ ହିନ୍ଦୀ ସାହିତ୍ୟର ତଥା ଭାରତୀୟ କୃଷକ ଜୀବନର ଏକ ମହାକାବ୍ୟ ଭାବେ ଗ୍ରହଣ କରାଯାଏ । ଲେଖକଙ୍କ ଅନ୍ୟ କେତେକ ଉପନ୍ୟାସ ପରି ଏହାର କଥାବସ୍ତୁର କ୍ଷେତ୍ର ଦୁଇ ଭାଗରେ ବିଭକ୍ତ । ପ୍ରଥମ ଓ ମୁଖ୍ୟ ଭାଗଟି ଗ୍ରାମୀଣ ଜୀବନଧାରା ସହ ଓ ଅନ୍ୟଟି ନାଗରିକ ଜୀବନ ସହ ସମ୍ପର୍କାନ୍ୱିତ । ଏହାର ସଂକ୍ଷିପ୍ତ କଥାବସ୍ତୁ ଏହିପରି—

ଅଯୋଧ୍ୟା ନିକଟବର୍ତ୍ତୀ ବେଲରୀ ଗ୍ରାମରେ କୃଷକ ହୋରିର ଘର । ତା ସ୍ତ୍ରୀ ନାଁ ଧନିଆ, ପୁଅର ନାଁ ଗୋବର । ଦୁଇଟି ଝିଅଙ୍କ ନାମ ହେଉଛି ସୁନା ଓ ରୂପା । ଶୋଭା ଓ ହୀରା ହେଉଛନ୍ତି ତାର ଦୁଇ ଭାଇ । ଘର ଚଳାଇବା ଲାଗି ଓ ଘରର ମାନ ମହତ ରକ୍ଷିବା ଲାଗି ହୋରିକୁ କଠିନ ପରିଶ୍ରମ କରିବାକୁ ପଡ଼ୁଥିଲା । ଭାଇ ଭାଗ ବଣ୍ଟା ହେଲା ପରେ ଘରର ଆର୍ଥିକ ଅବସ୍ଥା ଖରାପ ହୋଇପଡ଼ିଲା । ଏହିପରି ଅସୁବିଧାରେ ପଡ଼ି ହୋରି ଭାବିଲା ପାଖ ଗାଁ ଜମିଦାରଙ୍କ ପାଖକୁ ଗଲେ ହୁଏତ କିଛି ସୁବିଧା ହେବ । ଏଣୁ ସେ ସେମରି ଗାଁଆରେ ରହୁଥିବା ଜମିଦାର ରାୟ ସାହେବ ଅମର ପାଳ ସିଂହଙ୍କ ପାଖକୁ ଯା ଆସ କରିବାକୁ ଲାଗିଲା । ତାଙ୍କୁ ନମସ୍କାର କରି ତାଙ୍କ ନିକଟରେ ଆପଣାର ଚାଷ କାମରେ ତତ୍ପରତାର ପରିଚୟ ଦିଏ ।

ଥରେ ଜମିଦାରଙ୍କ ଘରକୁ ଗଲାବେଳେ ସେ ଭୋଳା ବୋଲି ଜଣେ ଲୋକର ଗାଈଟିକୁ ଦେଖିବାକୁ ପାଇଲା । ଗାଈଟିକୁ ପାଳିବା ଲାଗି ତାର ମନରେ ଏକ ପ୍ରବଳ ଲାଳସା ଜନ୍ମିଲା । ଆପଣାର ମାନ ମର୍ଯ୍ୟାଦା ଦୃଷ୍ଟିରୁ ତାର ଗାଈଟିଏ ମଧ୍ୟ ରଖିବା କଥା । ଗାଈଟି ପାଇଁ ସେ ଭୋଳାକୁ ଅନେକ ପ୍ରଲୋଭନ ଦେଖାଇଲା । ଭୋଳାର ସ୍ତ୍ରୀ ମରିଯାଇଥାଏ । ହୋରି ଭୋଳାକୁ ଦ୍ୱିତୀୟ ବିବାହ କରାଇଦେବ ବୋଲି ଓ ମାଗଣାରେ ତାକୁ କୁଣ୍ଡିକୁଣ୍ଡା ପ୍ରଭୃତି ଦେବ ବୋଲି ଲୋଭ ଦେଖାଇଲା । ପୁଅ ଗୋବରକୁ ସାଙ୍ଗରେ ନେଇ ସେ ଭୋଳା ଘରେ କେତେ ଥର ଭୁଷି ପ୍ରଭୃତି ମଧ୍ୟ ଦେଇ ଆସିଛି ।

ଭୋଳାର ଗୋଟିଏ ବିଧବା ଝିଅ ଥାଏ । ତା ନାଆଁ ଝୁନିଆ । ଘରକୁ ଯା ଆସ ଫଳରେ ଝୁନିଆ ଓ ଗୋବର ପରସ୍ପର ପ୍ରତି ଆକୃଷ୍ଟ

ହୋଇପଡ଼ିଲେ । ଭେଳା ଗାଈଟିକୁ ହୋରକୁ ଦେବାକୁ ରାଜି ହୋଇଗଲା । ଦିନେ ସନ୍ଧ୍ୟାରେ ଗୋବରା ଭେଳାର ଗାଈଟିକୁ ନେଇ ଘରେ ପହଞ୍ଚିଲା । ହୋରି ଖୁବ୍ ଖୁସିହୋଇ ତାକୁ ନେଇ ଅଗଣାରେ ବାନ୍ଧିଲା ।

ଗାଈଟି ହୋରି ଘରେ ପହଞ୍ଚିବାର ଅଳ୍ପସମୟ ପୂର୍ବରୁ ହୋରି ଓ ତାର ସାନଭାଇ ହୀରାର ସ୍ତ୍ରୀ ମଧ୍ୟରେ ଖୁବ୍ କଳି ହୋଇଯାଇଥାଏ । ହୋରି ସେମାନଙ୍କ ଇଜ୍‌ମାଇଲି ବାଉଁଶ ବୁଦାରୁ ବାଉଁଶ ବିକିଦେବାକୁ ଚାହିଁବାରୁ ହୀରାର ସ୍ତ୍ରୀ ପୁନିଆ ଏହାର ବିରୋଧ କଲା । ଏହି ଘଟଣାରୁ ସେମାନଙ୍କ ମଧ୍ୟରେ ମନାନ୍ତର ହୋଇଯାଇଛି । ହୋରି ଘରକୁ ଆଣିଥିବା ଗାଈଟିକୁ ଦେଖିବାଲାଗି ଗାଁର ସବୁଲୋକ ହୋରି ଘରକୁ ଆସିଲେ; ମାତ୍ର ହୀରା ଓ ପୁନିଆ ହୋରି ଦୁଆର ମଧ୍ୟ ମାଡ଼ିଲେ ନାହିଁ ।

ପୂର୍ବ ବିବାଦ ଯୋଗୁ ହୋରିର ଅନିଷ୍ଟ କରିବାକୁ ହୀରା ଛକିଥାଏ । ଦିନେ ସୁଯୋଗ ଦେଖି ସେ ଗାଈକୁ ବିଷଦେଇ ଘରୁ ଚାଲିଗଲା । ଗାଈଟି ମରିଯିବା ଫଳରେ ହୋରିର ସ୍ତ୍ରୀ ଚିତ୍କାର କରି ସାରା ଗାଁକୁ କମ୍ପାଇ ଦେଲା । ଗାଁଆ ଚୌକିଦାର ଯାଇ ଏ ବିଷୟ ଥାନାରେ ଜଣାଇଲା । ସେହି ଅନୁସାରେ ଜମାଦାର ଏ ବିଷୟରେ ତଦାରଖ କରିବା ଲାଗି ଗାଁଆକୁ ଆସିଲେ । ହୀରା ଘର ତଲସ କରାଗଲା । ହୋରି ଦେଖିଲା ଏହା ଫଳରେ ତା ଭାଇ ତଥା ନିଜ ଘରର ମାନ ତଳେ ପଡ଼ିଯିବ । ଏହି ଆଶଙ୍କାରେ ସେ ଭାଇ ବିରୋଧରେ ହୋଇଥିବା ଅଭିଯୋଗକୁ ଅସ୍ୱୀକାର କଲା । ଟଙ୍କା କରଜ କରି ଜମାଦାରକୁ ଲାଞ୍ଚ ଦେଇ ବିଦା କରିବାକୁ ମଧ୍ୟ ପ୍ରସ୍ତୁତ ହୋଇଗଲା । ସେ ହୁଏତ ଏହା କରିଥାନ୍ତା; ମାତ୍ର ଧନିଆ ଆପଣାର ଉଗ୍ରରୂପ ଦେଖାଇ ହୋରିକୁ କରଜ କରି ଲାଞ୍ଚଦେବାରୁ ରକ୍ଷା କରିଛି । ଫଳରେ ଜମାଦାରଙ୍କୁ ଖାଲି ହାତରେ ଫେରିବାକୁ ପଡ଼ିଛି ।

ହୋରିକୁ ନାନା ପ୍ରକାର କଷ୍ଟ ସହିବାକୁ ପଡ଼ିଛି; ମାତ୍ର ସେ ଆପଣାର ସୌଜନ୍ୟ, ସରଳତା, ଉଦାର ସ୍ୱଭାବ ଛାଡ଼ି ପାରିନାହିଁ । ଗୋବରା ଓ ଝୁନିଆର ଗୋପନ ପ୍ରଣୟ ବ୍ୟାପାର ଗାଆଁରେ ପ୍ରଘଟ ହୋଇଗଲା । ଏଥିପାଇଁ ଗାଁ ଲୋକଙ୍କ ଲାଞ୍ଛନା ମଧ୍ୟ ତାକୁ ସହିବାକୁ ପଡ଼ିଲା । କ୍ରମେ ହୋରିର ଅବସ୍ଥା ଦିନକୁ ଦିନ ଖରାପ ହେବାକୁ ଲାଗିଲା ।

ଅବଶ୍ୟ ଆପଣା କ୍ଷେତରେ ଫସଲ ଦେଖି ତାର ମନ ଖୁସି ହେଉଥାଏ; ମାତ୍ର ଝୁନିଆ ଯୋଗୁ ଗାଁରେ ପଞ୍ଚାୟତ ଓ ତା ଉପରେ ନଗଦ ବସିଲା ଶହେଟଙ୍କା ଜୋରିମନା ଓ ତିରିଶ ମହଣ ଗହମ ଜୋରିମନା କରାଗଲା । ଯେପରି ହେଉ ଏହା ତାକୁ ଦେବାକୁ ପଡ଼ିବ । ଏଣୁ ତାର ଆର୍ଥିକ ଅବସ୍ଥା ଆହୁରି ଖରାପ ହୋଇଗଲା । ଏହା ସତ୍ତ୍ୱେ ସେ ଓ ତା ସ୍ତ୍ରୀ ଝୁନିଆ ପ୍ରତି ସଦୟ ବ୍ୟବହାର କରିବାରେ ହେଳା କରି ନ ଥିଲେ ।

ଝୁନିଆ ସେତେବେଳକୁ ଗର୍ଭବତୀ । ସେଇଦିନ ରାତିରେ ଝୁନିଆର ପୁଅଟିଏ ଜନ୍ମ ହେଲା । ହୋରି ନିରୁପାୟ ଭାବରେ କିଛି ଶସ୍ୟ ବିକିଦେଲା ଓ ଆପଣା ଘର ଉପର ଝିଙ୍ଗୁରି ସିଂହକୁ ବନ୍ଧାଦେଇ ଅଶୀ ଟଙ୍କା ଆଣିଲା । ଏହିପରି ଭାବେ ସେ ଗାଁବାଲାଙ୍କୁ ଜୋରିମନା ଟଙ୍କାତକ ଦେଇ-ଦେଲା । ଏହାପରେ ଅଭାବ ଯୋଗୁ ଗୋବର ଘର ଛାଡ଼ି ଚାଲିଯାଇଛି । ଲକ୍ଷ୍ନୌ ସହରକୁ ଯାଇ ସେ ସେଠାରେ ମୂଲ ଲାଗିଲା । ହୋରି ମହାଜନ ହାତ ମୁଠାରେ ପୁରାପୁରି ଚପି ହୋଇଗଲା । ତଥାପି ଏତେ ଦୁଃଖ ଦୁର୍ଦ୍ଦଶାରେ ମଧ୍ୟ ଆପଣା ଭାଇର ସ୍ତ୍ରୀ ପୁନିଆକୁ ଯଥାଶକ୍ତି ସାହାଯ୍ୟ କରୁଥିଲା । ଭୋଳାକୁ ଗାଈ ବାବଦ ଟଙ୍କା ଦିଆ ହୋଇ ପାରିନାହିଁ । ସେଥିପାଇଁ ଭୋଳା ବାରମ୍ବାର ତାଗଦା କରୁଥାଏ ।

ଦିନେ ଭୋଳା ଆସି ହୋରି ଘରେ ପହଞ୍ଚିଲା । ଗାଁବାଲା ମନାକଲେ ବି ସେ ହୋରିର ଖୁଣ୍ଟରୁ ବଳଦ ଦୁଇଟିକୁ ଖୋଲି ନେଇଗଲା । ହୋରି ନିରୁପାୟ ହୋଇ ବ୍ରାହ୍ମଣ ଦାତାଦୀନଙ୍କ ଜମି ଭାଗରେ ଚଷିଲା । ଆଖୁ କଟା ବେଳ ହେଲା । ହୋରି ଭାଗରେ ଯାହା ଆଖୁ ପଡ଼ିଥିଲା ସବୁତକ କରଜ ବାବଦକୁ ଝିଂଗୁରି ସିଂହ ଓ ନୋଖିରାମ ନେଇଗଲେ । ଘର ଚଳାଇବା ପାଇଁ ତାକୁ କିଛି ହେଲେ ମିଳିଲା ନାହିଁ ।

ଦିନେ ବିଲରେ କାମ କରୁ କରୁ ଖରାତାତି ଓ ଗରମ ଲୁ ପବନ ବାଜି ହୋରିର ଦେହ ଅଚଳ ହୋଇଗଲା । ଏଇ ସମୟରେ ଗୋବର ଆସି ହଠାତ୍ ଘରେ ପହଞ୍ଚିଛି । ଗାଁରେ ପହଞ୍ଚି ସେ ଖୁବ୍ ଫୁଟାଣି ଦେଖାଇଲା । ଭୋଳା ଘରକୁ ଯାଇ ସେମାନଙ୍କ ବଳଦ ଦୁଇଟିକୁ ବାନ୍ଧି

ଆଣିଲ । ସେ ଗୃହୁଁ ଥିଲ, ହୋର ଆପଣାର ସରଳତା ଛାଡ଼ିଦେଉ; ମାତ୍ର ହୋର ସେଥିପାଇଁ ପ୍ରସ୍ତୁତ ନ ଥିଲ । ଆପଣା ସ୍ୱଭାବ ବା ସେ କିପରି ଛାଡ଼ିବ ? ଶେଷକୁ ଗୋବର୍‌ ତା ସ୍ତ୍ରୀ ଓ ପୁଅକୁ ନେଇ ଲକ୍ଷ୍ନୌ ଚାଲିଗଲ । କଥା କହିବାରେ ସେ ଥିଲ ଧୁରନ୍ଧର; ମାତ୍ର ଘରର ଅବସ୍ଥା ସୁଧାରିବାକୁ ତାର ଶକ୍ତି ନ ଥିଲ ।

ହୋର ମହାଜନଙ୍କ ଯନ୍ତ୍ରାରେ ପଡ଼ି ପୂରାପୂରି ପେଷି ହୋଇ ଯାଉଥାଏ । ଯାହା ହେଉ ଦୁଲାରି ସାହୁଆଣୀ ଓ ନୋହରୀଙ୍କଠାରୁ ଟଙ୍କା ଉଧାର କରି ସେ ସୋନାର ବାହାଘର କରିଦେଲ । ମଥୁରାର ଜଣେ ଚାଷୀପୁଅ ସଙ୍ଗେ ତାର ବାହାଘର ହେଲ । ଋଣ ବୋଝରେ ସେ ଚାପି ହୋଇଯାଉଛି; ଅଥଚ ଏପରି ଅବସ୍ଥାରେ ସେ ଗାଆଁରେ ସିଲିଆ ଚମାରୁଣୀକୁ ଆଣି ବାଉପଟେ ଆଶ୍ରୟ ଦେଇଛି । ଜୀବନ ସଂଗ୍ରାମରେ ସେ ତିଳତିଳ ନିଷ୍ପେଷିତ ହେଉଥାଏ । କେତେଦିନ ପରେ ଗୋବର ଘରକୁ ଫେରି ଆସିଲ । ବାପାଙ୍କର ଶୋଚନୀୟ ଅବସ୍ଥା ଦେଖି ତାହା ହୃଦୟରେ ସହାନୁଭୂତି ଜାତ ହୋଇଛି; ମାତ୍ର ସେ ବା କଣ କରିବ ? ମୂଲ ଲାଗି ହୋରିକୁ ପେଟ ପୋଷିବାକୁ ପଡ଼ୁଥାଏ ।

ତା ଭଲ ହୀରା ଓ ଶୋଭା ଘରକୁ ଫେରି ଆସିଛନ୍ତି । ହୋରି ସେମାନଙ୍କୁ ଦେଖି ଖୁବ୍ ଖୁସି ହୋଇଛି; କିନ୍ତୁ ସେତେବେଳକୁ ସେ ଶକ୍ତିହୀନ ହୋଇ ଯାଇଥାଏ । ତାର ଉଦାର ହୃଦୟ (ପୁଅ, ଭାଇ, ସମସ୍ତଙ୍କ) ପ୍ରତି ଥିଲ ଉନ୍ମୁକ୍ତ ଓ ଦୟାର୍ଦ୍ର । ସ୍ଥୂଳତ ବୈଷୟିକତା ଦୃଷ୍ଟିରୁ ସେ ପରାଜିତ ହୋଇ ଯାଇଥିଲେ ହେଁ ତାର ମନ ଥିଲ ପ୍ରସନ୍ନ । ଜୀବନ ସଂଗ୍ରାମରେ ତାର ଅସ୍ତ୍ରଶସ୍ତ୍ର ଭାଙ୍ଗି ଭୁଟି ଗଲେ ବି ଏହା ଥିଲ ତାର ବିଜୟର ପତାକା ।

ମୂଲ ଲାଗି ଚାଲିବା ଭିତରେ ଦିନେ କ୍ଷେତରେ କାମ କରୁକରୁ ସେ ପୁଣି ଲୁ ପବନ ଯୋଗୁ ଅସୁସ୍ଥ ହୋଇପଡ଼ିଲ । ମୃତ୍ୟୁର ଦିନ ପାଖେଇ ଆସିଲ; ମାତ୍ର ଗାଈଟିଏ ପାଇବାର ଆଶା ସଫଳ ହୋଇପାରିଲ ନାହିଁ । ହୋରି କାତରଲଗା ହୋଇ ପଡ଼ିଛି । ଧନିଆ ଆଖିରୁ ଲୁହ

ବୋଲୁଥାଏ । ସ୍ତ୍ରୀ କାନ୍ଦୁ କାନ୍ଦୁ କହିଲା—"ସ୍ୱାମୀ, ଏଥର ମନ ଦୃଢ଼ କର, ତୁମଙ୍କ ଯିବାବେଳ ହୋଇଗଲା, ଗୋଦାନ କରେଇ ଦିଅ" ।

ଧନିଆ ସେଦିନ ସୂତା ବିକି ଟଙ୍କାଏ ଚାରଣା ପାଇଥିଲା । ସ୍ୱାମୀଙ୍କ ଶୀତଳ ହାତରେ ସେତକ ରଖି ସାମ୍ନାରେ ଠିଆ ହୋଇଥିବା ବ୍ରାହ୍ମଣ ଦାତାଦୀନଙ୍କୁ କହିଲା—"ମହାପ୍ରଭୁ ଘରେ ମୋର ଗାଈ ନାହିଁ ବା ବାଛୁରୀଟିଏ ବି ନାହିଁ । ଏହା କିଣିବାକୁ ପଇସା ବି ମୋ ପାଖେ ନାହିଁ । ଏତିକ ମାତ୍ର ଅଛି ଏତିକ ତାଙ୍କର ଗୋଦାନ ଭାବେ ଗ୍ରହଣ କରନ୍ତୁ ।"



# ରାଜଗୋପାଳାଚାରୀ

ଚଳିତ ଶତାବ୍ଦୀର ଭାରତର ବରପୁତ୍ରମାନଙ୍କ ମଧ୍ୟରୁ ଚକ୍ରବର୍ତ୍ତୀ ରାଜଗୋପାଳାଚାରୀ ଅନ୍ୟତମ। 'ରାଜାଜୀ' ନାମରେ ସେ ଥିଲେ ସୁପରିଚିତ । ମହାନ ଦେଶପ୍ରେମୀ, ପ୍ରବଳ ଦୂରଦୃଷ୍ଟିସମ୍ପନ୍ନ ରାଜନୀତିଜ୍ଞ, ବିଚକ୍ଷଣ ପ୍ରଶାସକ ତୀକ୍ଷ୍ଣବୁଦ୍ଧିସମ୍ପନ୍ନ ତାର୍କିକ, ନିର୍ଭୀକ ସମାଲୋଚକ ଓ ସୁଲେଖକ ଭାବରେ ଭାରତର ଜନ ଜୀବନକୁ ତାଙ୍କର ଦାନ ଅପରିସୀମ । ସେ ଥିଲେ ମହାତ୍ମାଗାନ୍ଧିଙ୍କର ଘନିଷ୍ଠ ସହକର୍ମୀ ଓ ଭାରତର ଅନ୍ୟତମ ନିଷ୍ଠାପର ସ୍ୱାଧୀନତା ସଂଗ୍ରାମୀ ଓ ଆଧୁନିକ ଭାରତର ନିର୍ମାତାଙ୍କ ମଧ୍ୟରେ ଅନ୍ୟତମ ।

'ଦକ୍ଷିଣୀ ଗାନ୍ଧି' ରୂପେ ପରିଚିତ ଦୀର୍ଘଜୀବୀ ରାଜାଜୀ ଦୀର୍ଘ ପଞ୍ଚସ୍ତରୀ ବର୍ଷ କାଳ ନିରବଚ୍ଛିନ୍ନ ଭାବେ ଆପଣାକୁ ଭାରତର ରାଜନୈତିକ କର୍ମ ପ୍ରବାହରେ ନିୟୋଜିତ ରଖିଥିଲେ; ମାତ୍ର ତାହାଙ୍କ ରାଜନୈତିକ ଜୀବନ ଯେପରି ସଂଘର୍ଷମୟ ସେହିପରି ଅପୂର୍ବ ସାଫଲ୍ୟ ଓ ଗୌରବ ସମୁଜ୍ଜ୍ୱଳ । ରାଜନୀତି ବ୍ୟତୀତ ଭାରତୀୟ ସଂସ୍କୃତି, ଧର୍ମ, ଦର୍ଶନ, ବିଜ୍ଞାନ, ଅର୍ଥନୀତି ପ୍ରଭୃତି ବିବିଧ ବିଷୟ ପ୍ରତି ଥିଲା ତାଙ୍କର ଗଭୀର ଅନୁରାଗ । ବିବିଧ ବିଷୟରେ ତାଙ୍କର ପ୍ରଭୂତ ଜ୍ଞାନ ଓ ପାଣ୍ଡିତ୍ୟ ତାହାଙ୍କ ସହକର୍ମୀ-ମାନଙ୍କୁ ବିସ୍ମିତ କରୁଥିଲା । ରାଜନୈତିକ ଦ୍ୱନ୍ଦ୍ୱ ଓ ସଂଘର୍ଷ କାଳରେ ମଧ୍ୟ ସେ ସେକ୍ସପିଅରଙ୍କ ନାଟକ ଅଥବା ଡିକେନ୍ସଙ୍କ ଉପନ୍ୟାସ ପଢ଼ିବାରେ ଅଭିନିବିଷ୍ଟ ଥିବା ଦେଖା ଯାଉଥିଲା ।

ତାମିଲ ଓ ଇଂରାଜୀ ସାହିତ୍ୟରେ ସେ ଥିଲେ ସୁପଣ୍ଡିତ । ତାଙ୍କର ଇଂରାଜୀ କହିବା ଓ ଲେଖିବା ଶକ୍ତି ଯେ କୌଣସି ଇଂରାଜୀ ବ୍ୟକ୍ତିଠାରୁ ଉଚ୍ଚକୋଟୀର ଥିଲା, ଏହା ଭାରତର ଶେଷ ଗଭର୍ଣ୍ଣର ଜେନେରାଲ ଗ୍ଳେନ୍ମାଉଣ୍ଟ ବେଟେନ୍ ସ୍ୱୀକାର କରିଛନ୍ତି । ଭାରତୀୟ ରାଜନୀତି କ୍ଷେତ୍ରରେ ସେ କୂଟବୁଦ୍ଧିସମ୍ପନ୍ନ ଭାବରେ ସର୍ବପ୍ରକାର ପରିଚିତ ଥିଲେ । ରାଜେନ୍ଦ୍ର ପ୍ରସାଦ ତାହାଙ୍କ ସମ୍ପର୍କରେ କହିଥିଲେ "ରାଜାଜୀ ଏପରି ଏକ ବ୍ୟକ୍ତି ଯେ କି ତୁମକୁ ତୁମ ଇଚ୍ଛା ବିରୁଦ୍ଧରେ ରାଜି କରାଇ ପାରିବେ ।" ଗାନ୍ଧିଜୀ ସହକର୍ମୀମାନଙ୍କୁ ରାଜାଜୀଙ୍କ ସମ୍ପର୍କରେ ସାବଧାନ କରାଇ କହିଥିଲେ ଯେ, "ସେ କଳାକୁ ଧଳା ବୋଲି ପ୍ରମାଣିତ କରିଦେଇ ପାରନ୍ତି ।" ଜଣେ ବ୍ରିଟିଶ ଲେଖକ ରାଜାଜୀଙ୍କୁ ଗାନ୍ଧି ଜବାହରଲାଲ ନେହେରୁ ଓ ଜିନ୍ନାଙ୍କ ଅପେକ୍ଷା ଉଚ୍ଚକୋଟୀର ରାଜନୀତିଜ୍ଞ ବୋଲି ସ୍ୱୀକାର କରିଅଛନ୍ତି ।

ତାଙ୍କର ରାଜନୈତିକ ଦୂରଦୃଷ୍ଟି ଥିଲା ଅତୁଳନୀୟ । ଗାନ୍ଧିଜୀଙ୍କ ଭାଷାରେ "ରାଜାଜୀ ମୋ ଅପେକ୍ଷା ଅନ୍ତତଃ କମ୍‌ରେ ଛଅମାସ ଆଗରୁ ସବୁକଥା ଜାଣି ନେଇ ପାରନ୍ତି" । ଏଣୁ ସବୁ ମହାନ ବ୍ୟକ୍ତିଙ୍କ ପରି ସାଧାରଣ ଲୋକେ ତାଙ୍କୁ ଭୁଲ ବୁଝିବା ସ୍ୱାଭାବିକ । ତାହାଙ୍କ ଜୀବଦ୍ଦଶାରେ ଅନେକେ ତାହାଙ୍କ ପ୍ରତିଭା ଓ ଦୂରଦୃଷ୍ଟିକୁ କଳନା କରିବାକୁ ସମର୍ଥ ହୋଇପାରି ନଥିଲେ । ମତଭେଦ ସତ୍ତ୍ୱେ ଗାନ୍ଧିଜୀ ରାଜାଜୀଙ୍କୁ ତାହାଙ୍କ 'ବିବେକର ପ୍ରହରୀ' ବୋଲି ସମ୍ମାନର ସହିତ ଅଭିହିତ କରୁଥିଲେ ।

ନିର୍ଭୀକତା ଥିଲା ତାଙ୍କ ଚରିତ୍ରର ପ୍ରଧାନ ବୈଶିଷ୍ଟ୍ୟ । ସତ୍ୟ ଓ ଧର୍ମର ପ୍ରତିଷ୍ଠା ଥିଲା ତାହାଙ୍କ ଜୀବନର ବ୍ରତସ୍ୱରୂପ । ବହୁବାଧା, ପ୍ରତି-ବନ୍ଧକ, ନିଗ୍ରହ, ଲାଞ୍ଛନା ଓ ଉତ୍ଥାନ ପତନ ସତ୍ତ୍ୱେ ସେ ଏହି ପଥରୁ ନିବୃତ୍ତ ହୋଇ ନାହାନ୍ତି । ନିଜର ବିଶ୍ୱାସ ଉପରେ ଦୃଢ଼, ଅବିଚଳିତ ଭାବେ ଦଣ୍ଡାୟମାନ ରହି ସପକ୍ଷବାଦୀମାନଙ୍କ ପ୍ରଶଂସା କରତାଳି ଅଥବା ସମାଲୋଚନାର ଶରାଘାତ ଓ ବିପକ୍ଷର ସମସ୍ତ ପ୍ରଚଣ୍ଡ ଆକ୍ରମଣକୁ ସେ ସହ୍ୟକରି ଯାଇଅଛନ୍ତି । ଏହି ଦୃଷ୍ଟିରୁ ସେ ଥିଲେ ଭାରତୀୟ ସଂସ୍କୃତି ଓ ଜୀବନଧାରାର ପ୍ରତୀକ—ନିର୍ଲିପ୍ତ, ନିର୍ବିକାର, ଗୀତାଧର୍ମୀ ଯୋଗୀ ପୁରୁଷ । ଅଧର୍ମ, ଅସାଧୁତା, ଅସତ୍ୟ ସହିତ ସେ ବ୍ୟକ୍ତିଗତ ଜୀବନରେ

ତଥା ସାଧାରଣ କାର୍ଯ୍ୟ କ୍ଷେତ୍ରରେ କୌଣସି ପ୍ରକାର ସାଲିସ କରୁଥାଉ ନ ଥିଲେ । ଦାୟିତ୍ୱପୂର୍ଣ୍ଣ ପଦରେ ଅଧିଷ୍ଠିତ ଥିଲାବେଳେ ନିଜର ପ୍ରିୟ ବ୍ୟକ୍ତି-ମାନଙ୍କୁ ମଧ୍ୟ ସେ ସ୍ୱତନ୍ତ୍ର ସୁବିଧା ସୁଯୋଗ ଦେଉନଥିଲେ । ଏଣୁ ସେ ନିଷ୍ଠୁର, ହୃଦୟହୀନ ବୋଲି କେହି କେହି ଅଭିଯୋଗ କରିଥାନ୍ତି; ମାତ୍ର ଏହା ତାଙ୍କର ଉଚ୍ଚକୋଟୀର ସାଧୁତା ଓ ହୃଦୟର ସତ୍ୟ ଏବଂ ଧର୍ମ-ନିଷ୍ଠାର ହିଁ ପରିଚାୟକ । ଏଥିପାଇଁ ସେ ବହୁ ସମୟରେ ଜ୍ଞାତସାରରେ ଅପ୍ରିୟତାକୁ ହିଁ ବରଣ କରି ନେଉଥିଲେ । ପରିଣତ ବୟସରେ ନିଜର ପୁରୁଣା ସହକର୍ମୀ ଓ ଶାସକ ଗୋଷ୍ଠୀଙ୍କ ନୈତିକ ଅଧଃପତନ, ଦୁର୍ନୀତି-ପରାୟଣତା ଓ ଅନ୍ୟାୟର ଦୃଢ଼ ପ୍ରତିବାଦ କରିବାକୁ ଯେ ସେ ଆଗେଇ ଆସିଥିଲେ, ଏହା ତାଙ୍କର ଦୃଢ଼ ଓ ନିର୍ଭୀକ ମନୋବୃତ୍ତିର ପରିଚାୟକ ।

ସେ ଥିଲେ ପରମ ଈଶ୍ୱର ବିଶ୍ୱାସୀ, ସରଳ ଜୀବନ ଓ ଉଚ୍ଚ ଚିନ୍ତାର ଜୀବନ୍ତ ଦୃଷ୍ଟାନ୍ତ । ତାଙ୍କର ବ୍ୟକ୍ତିଗତ ଜୀବନ ଥିଲା ସନ୍ନ୍ୟାସୀସୁଲଭ ସରଳ ଓ ନିରାଡ଼ମ୍ବର । ଏତାଦୃଶ ମତବାଦ ଓ ଜ୍ଞାନଦୀପ୍ତ ବ୍ୟକ୍ତିଙ୍କ ନିକଟରେ ଅନ୍ୟମାନେ ନିଜକୁ ଶ୍ରେଷ୍ଠ ମନେ କରିବା ସ୍ୱାଭାବିକ । ଆମରଣ ରାଜନୀତିର କର୍ମ ପ୍ରବାହରେ ନିୟୋଜିତ ଥିଲେ ହେଁ, ତାଙ୍କର ଆତ୍ମା ଥିଲା ଶାଶ୍ୱତର ଅନୁଗାମୀ । ତାହାହିଁ ତାଙ୍କର ଏହି ସ୍ୱୀକାରୋକ୍ତିରୁ ଜଣାଯାଏ । "ମୋ ଦେଶର ଲୋକଙ୍କ ଲାଗି ଯାହା ସବୁ ମୁଁ କରିଛି, ତା ମଧ୍ୟରେ ସର୍ବୋତ୍କୃଷ୍ଟ ହେଉଛି ରାମାୟଣ ଓ ମହାଭାରତର ଅନୁସୃତ କାହାଣୀ । ଜୀବନର ସନ୍ଧ୍ୟାକାଳରେ ଏହା ରଚନା କରି ମୁଁ ପରମ ପରିତୋଷ ଲାଭକରିଛି । ରାଜନୈତିକ ଓ ଜାତୀୟ କର୍ମୀ ହେବା ଏବଂ ଦାୟିତ୍ୱପୂର୍ଣ୍ଣ ପଦ ଗ୍ରହଣକରି କଠିନ ପରିଶ୍ରମ କରିବା ଉତ୍ତମ ବିଷୟ; ମାତ୍ର ମୁଁ ଜାଣେ ଏହାକୁ ପରିତ୍ୟାଗ କରିବାରେ ସମର୍ଥ ହୋଇ ଏ ଦେଶର ଧର୍ମ ସାଧକମାନଙ୍କର ସାନ୍ନିଧ୍ୟ ଲାଭ କରିବା ଓ ଆମ ଦେଶର ଜନ-ସାଧାରଣଙ୍କୁ ପୁନଶ୍ଚ ତାଙ୍କ କଥା ଶୁଣାଇବାରେ ସହାୟତା କରିବା ହେଉଛି ମହୋତ୍ତମ ।"

## ଜୀବନ ଧାରା :

୧୮୭୮ ମସିହାରେ ରାଜଗୋପାଳାଚାରୀ ଭୂମିଷ୍ଠ ହୋଇଥିଲେ । ବାଙ୍ଗାଲୋର ସେଣ୍ଟ୍ରାଲ କଲେଜ ଓ ମାଡ୍ରାସ ପ୍ରେସିଡ଼େନ୍‌ସି କଲେଜ ଏବଂ

ଆଇନ କଲେଜରେ ଶିକ୍ଷାଲାଭ କଲାପରେ ୧୯୦୦ ମସିହାରେ ମାନ୍ଦ୍ରାଜ-ରାଜ୍ୟର ସାଲେମ ସହରରେ ଆଇନଜୀବୀ ଭାବରେ ସେ କର୍ମ ଜୀବନ ଆରମ୍ଭ କଲେ; ମାତ୍ର ଅର୍ଥଉପାର୍ଜନ ଓ ସୁଖସମ୍ଭୋଗରେ କାଳଯାପନ କରିବା ତାଙ୍କର ଲକ୍ଷ୍ୟ ନଥିଲା । କର୍ମ ଜୀବନର ପ୍ରାରମ୍ଭରୁ ହିଁ (୧୯୦୭) ଭାରତର ସ୍ୱାଧୀନତା ସଂଗ୍ରାମ ସହ ସେ ଆପଣାକୁ ସଂଯୁକ୍ତ କରିଥିଲେ । ଖ୍ରୀ ୧୯୧୯ ପର୍ଯ୍ୟନ୍ତ କୃତି ଆଇନଜୀବୀ ଭାବେ ଓ ସାଲେମ ମ୍ୟୁନିସିପାଲିଟିର ସମ୍ମାନିତ ଚେୟାରମ୍ୟାନ ଭାବେ କର୍ମ ଜୀବନ ଅତିବାହିତ କଲାପରେ ମହାତ୍ମାଗାନ୍ଧିଙ୍କ ଆହ୍ୱାନରେ ଉଦ୍‌ବୁଦ୍ଧ ହୋଇ ସେ ସତ୍ୟାଗ୍ରହ ଓ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥିଲେ । 'ପୁଦୁପଲାୟମ୍' ଗ୍ରାମରେ ଏକ ଆଶ୍ରମ ପ୍ରତିଷ୍ଠା କରି ସେ ଖଦି ଓ ହରିଜନ ଉନ୍ନୟନ କାର୍ଯ୍ୟରେ ଆପଣାକୁ ପୂର୍ଣ୍ଣ ପ୍ରାଣରେ ନିୟୋଜିତ କରିଥିଲେ ।

ଭାରତୀୟ ଜାତୀୟ କଂଗ୍ରେସ ସହ ତାଙ୍କର ସମ୍ପର୍କ ଯେପରି ଘନିଷ୍ଠ ସେହିପରି ବିବଦମାନ । ସେ ଯେପରି ଏହି ଅନୁଷ୍ଠାନର ସମ୍ମାନିତ ଓ ବରେଣ୍ୟ ସଦସ୍ୟ ଥିଲେ, ସେହିପରି ଥିଲେ ପରମ ସମାଲୋଚକ । ଖ୍ରୀ ୧୯୨୧-୧୯୨୨ରେ ସେ ଏହି ଅନୁଷ୍ଠାନର ସାଧାରଣ ସମ୍ପାଦକ ହୋଇଥିଲେ ଓ ଦୀର୍ଘ ୨୦ ବର୍ଷ ( ୧୯୨୨-୧୯୪୨ ) ଏହାର କାର୍ଯ୍ୟକାରୀ କମିଟିର ସଦସ୍ୟ ଥିଲେ । ସ୍ୱାଧୀନତା ଲାଭ ପରେ ମଧ୍ୟ ୧୯୪୬-୧୯୪୭ ଓ ୧୯୫୧-୧୯୫୪ ପର୍ଯ୍ୟନ୍ତ ସେ ଏହି ଅନୁଷ୍ଠାନର କାର୍ଯ୍ୟକାରୀ କମିଟିର ସଭ୍ୟଥିଲେ ।

ଭାରତର ପ୍ରଥମ ମନ୍ତ୍ରିମଣ୍ଡଳ ଗଠିତ ହେଲାପରେ ସେ ମାନ୍ଦ୍ରାଜର ମୁଖ୍ୟମନ୍ତ୍ରୀ ହୋଇଥିଲେ (୧୯୩୭-୧୯୩୯) । ମୁଖ୍ୟମନ୍ତ୍ରୀ ଭାବେ ତାଙ୍କର ବିଚକ୍ଷଣତା ସେ ସମୟରେ ବହୁ ପ୍ରଶଂସିତ ହୋଇଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ଆରମ୍ଭ ହେବା ପରେ ଭାରତୀୟ ଜାତୀୟ କଂଗ୍ରେସ ବ୍ରିଟିଶ ସରକାରଙ୍କ ଯୁଦ୍ଧ ଉଦ୍ୟମରେ ସହଯୋଗ ନ କରିବାକୁ ନିଷ୍ପତ୍ତି ଗ୍ରହଣ କରିଥିଲେ; ମାତ୍ର ଏକମାତ୍ର ରାଜଗୋପାଳାଚାରୀ ହିଁ ଏହି ନିଷ୍ପତ୍ତିର ପ୍ରତ୍ୟକ୍ଷ ବିରୋଧ କରିଥିଲେ ଓ ଯୁଦ୍ଧ ଉଦ୍ୟମରେ ସରକାରଙ୍କ ସହ ସହଯୋଗ କରିବାକୁ ପରାମର୍ଶ ଦେଉଥିଲେ । ସେଥିପାଇଁ ଗାନ୍ଧିଜୀଙ୍କ ସହିତ ମତଭେଦ

ହୋଇଥିଲା । ଭାରତ ଛାଡ଼ ପ୍ରସ୍ତାବ ପାସ୍ ହୋଇଯିବା ପରେ ରାଜାଜୀ କଂଗ୍ରେସବିରୋଧୀ ମତ ପୋଷଣ କରୁଥିବାରୁ କେବଳ ମାନ୍ଦ୍ରାଜ ଆସେମ୍ବ୍ଲି ସଭ୍ୟପଦରୁ ନୁହେଁ, ସମଗ୍ର କଂଗ୍ରେସ ସଭ୍ୟ ପଦରୁ ମଧ୍ୟ ଇସ୍ତଫା ଦେଇ ଦେଇ ଥିଲେ । ସେତେବେଳେ ଦେଶରେ କଂଗ୍ରେସ ନୀତି ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ଏକ କଳ୍ପନାତୀତ ବିଷୟ ଥିଲା । କେହି ରାଜାଜୀଙ୍କୁ ସମର୍ଥନ ଜଣାଉ ନ ଥିଲେ ହେଁ ସେ ଏକାକୀ ନିର୍ଭୀକ ଭାବେ ସଭା ସମିତିରେ ଆପଣାର ମତ ବ୍ୟକ୍ତ କରୁଥିଲେ । ଏଥିପାଇଁ ସେ ଜନସାଧାରଣଙ୍କଠାରୁ ବହୁ ଲାଞ୍ଛନା ଭୋଗିଛନ୍ତି ଓ ବହୁ କଟୂକ୍ତି, ବ୍ୟଙ୍ଗ ବିଦ୍ରୂପ ଶୁଣିଛନ୍ତି ।

ଖ୍ରୀ ୧୯୨୧-୧୯୪୨ ମଧ୍ୟରେ ସେ ସ୍ୱାଧୀନତା ଆନ୍ଦୋଳନ ନିମିତ୍ତ ଦଶଥର କାରାବରଣ କରିଥିଲେ । ୧୯୪୨ ଆନ୍ଦୋଳନ ସମୟରେ କାରାରୁଦ୍ଧ ମହାତ୍ମାଗାନ୍ଧି ଜେଲରୁ ଖଲାସ ହେବାପରେ ୧୯୪୪ ମସିହାରେ କ୍ଷମତା ହସ୍ତାନ୍ତର ସମ୍ପର୍କରେ ମହମ୍ମଦ ଅଲି ଜିନ୍ନାଙ୍କ ସହ ତାଙ୍କର ଆଲୋଚନା ହୋଇଥିଲା । ଏହି ସମୟରେ ରାଜାଜୀ ଗାନ୍ଧିଙ୍କୁ ସାହାଯ୍ୟ କରିଥିଲେ । ସିମିଲା ସମ୍ମିଳନୀ ସମୟରେ ଭାରତର ବିଭାଜନ ଶ୍ରେୟସ୍କର— ଏପରି ମତ ବ୍ୟକ୍ତ କରିବାରୁ ମଧ୍ୟ ସେ କଟୁ ସମାଲୋଚିତ ହୋଇଥିଲେ ।

ଇଂରେଜମାନେ ଭାରତୀୟମାନଙ୍କୁ କ୍ଷମତା ହସ୍ତାନ୍ତର ପୂର୍ବରୁ ଯେଉଁ ମଧ୍ୟବର୍ତ୍ତିକାଳୀନ ସରକାର ଗଠିତ ହୋଇଥିଲା, ରାଜଗୋପାଳାଚାରୀ ଥିଲେ ତା'ର ଅନ୍ୟତମ ସଦସ୍ୟ (ମନ୍ତ୍ରୀ) । ଏହାପରେ ସେ ପଶ୍ଚିମବଙ୍ଗର ଗଭର୍ଣ୍ଣର ( ଅଗଷ୍ଟ ୧୯୪୭ ରୁ ଜାନୁୟାରୀ ୧୯୪୮ ) ହୋଇଥିଲେ-ଏବଂ ୧୯୫୦ ପର୍ଯ୍ୟନ୍ତ ସେ ହୋଇଥିଲେ ସ୍ୱାଧୀନ ଭାରତର ପ୍ରଥମ ଭାରତୀୟ ଗଭର୍ଣ୍ଣର ଜେନେରାଲ—ଯଥାର୍ଥରେ 'ରାଜଚକ୍ରବର୍ତ୍ତୀ' । ନୂତନ ସମ୍ବିଧାନ ଅନୁଯାୟୀ ମନ୍ତ୍ରିମଣ୍ଡଳ ଗଠିତ ହେବାପରେ ତାହାଙ୍କୁ ସ୍ୱରାଷ୍ଟ୍ର ବିଭାଗର ମନ୍ତ୍ରିତ୍ୱ ଅର୍ପଣ କରାଯାଇଥିଲା । ଏହାପରେ ଆବଶ୍ୟକତା ଦୃଷ୍ଟିରୁ ସେ ନିର୍ବିକାର ଚିତ୍ତରେ ପୁନଶ୍ଚ ମାନ୍ଦ୍ରାଜର ମୁଖ୍ୟମନ୍ତ୍ରୀ ପଦ ଗ୍ରହଣ କରିଥିଲେ (୧୯୫୨-୧୯୫୪) । ଏହି ସମସ୍ତ ଗୌରବମୟ ପଦ ଅପୂର୍ବ ଦକ୍ଷତା ଓ କୃତିତ୍ୱର ସହିତ ସମ୍ପାଦନ କରିଥିବାରୁ ୧୯୫୫ ରେ ତାଙ୍କୁ 'ଭାରତରତ୍ନ' ପଦବୀରେ ଭୂଷିତ କରାଯାଇଥିଲା ।

ମୁଖ୍ୟମନ୍ତ୍ରୀ ପଦରୁ ଅବ୍ୟାହତି ନେବାପରେ ସେ ସାହିତ୍ୟ ସେବାରେ ଆପଣାକୁ ନିୟୋଜିତ କଲେ; ମାତ୍ର ଦେଶର ରାଜନୈତିକ ପରିସ୍ଥିତି ସମ୍ପର୍କରେ ତାଙ୍କର ଦୃଷ୍ଟି ଥିଲା ତୀକ୍ଷ୍ଣ ଓ ସଜାଗ । ଗୋଟିଏ ଦଳଦ୍ୱାରା ଦେଶ ଶାସିତ ହେବା ଯେ ଅହିତକର ଏହା ସେ ଦେଶବାସୀଙ୍କୁ ପ୍ରଥମେ ଦୃଢ଼ତାର ସହିତ ଜଣାଇ ଦେଇଥିଲେ । ଦେଶରେ ଗୋଟିଏ ମାତ୍ର ଶାସକ ଦଳ ରହିଲେ ଏହା ଦୁର୍ନୀତିଗ୍ରସ୍ତ, ଅଯୋଗ୍ୟ, ପକ୍ଷପାତ ଦୋଷଦୁଷ୍ଟ ହୋଇପଡ଼ିବ ଓ ଏହାଦ୍ୱାରା ଦେଶର ସୁସ୍ଥ ରାଜନୈତିକ ଓ ଶାସନଗତ ପରଂପରା କ୍ଷୁଣ୍ଣ ହେବ ଓ ଜନସାଧାରଣଙ୍କ ଗଣତାନ୍ତ୍ରିକ ସ୍ୱାଧୀନତା ବିପନ୍ନ ହେବ । ଏ ବିଷୟରେ ତାଙ୍କର ଦୃଢ଼ ବିଶ୍ୱାସ ଜାତ ହୋଇଥିଲା । ଜନମଙ୍ଗଳ ରାଷ୍ଟ୍ର ନାମରେ ଏକଛତ୍ର ଶାସନର ଯୁଗ ଯେ ଆସନ୍ନ ଏହା ସେ ଦୂରଦୃଷ୍ଟି ବଳରେ ହୃଦୟଙ୍ଗମ କରିପାରିଥିଲେ । ଏଥିପାଇଁ ଏକ ବଳିଷ୍ଠ ବିରୋଧୀ-ଦଳର ଆବଶ୍ୟକତା ବିଷୟ ହିଁ ସେ ପ୍ରଥମେ ଦୃଢ଼ତାର ସହିତ ଘୋଷଣା କରିଥିଲେ । ନିଷ୍ଠାପର କଂଗ୍ରେସରନେତା ଭାବେ ଅର୍ଦ୍ଧ ଶତାବ୍ଦୀ ବର୍ଷ ଧରି ଏହା ସହ ସଂପୃକ୍ତ ଓ ଏହାର ନୀତି ନିର୍ଦ୍ଧାରକ ହୋଇଥିବା ସତ୍ତ୍ୱେ ଏହି ଅନୁଷ୍ଠାନର ବିରୋଧ କରିବା ତାଙ୍କର ଅସୀମ ମାନସିକ ଦୃଢ଼ତାର ନିଦର୍ଶନ । ଏଥିପାଇଁ ସେ ୧୯୫୯ ମସିହାରେ ସ୍ୱତନ୍ତ୍ରଦଳ ନାମକ ଏକ ରାଜନୈତିକ ଦଳ ସଙ୍ଗଠନ କରିଥିଲେ । "ଗାନ୍ଧି ଶାନ୍ତି ପ୍ରତିଷ୍ଠାନ" ପକ୍ଷରୁ ପରମାଣୁ ପରୀକ୍ଷା ନିରୋଧ ଉଦ୍ଦେଶ୍ୟର ପ୍ରଚାର ଲାଗି ଯେଉଁ ତିନିଜଣିଆ ପ୍ରତିନିଧିଦଳ ବିଦେଶକୁ ପ୍ରେରିତ ହୋଇଥିଲେ, ତନ୍ମଧ୍ୟରୁ ରାଜାଜୀ ଥିଲେ ଅନ୍ୟତମ ସଦସ୍ୟ । ଏହି ଉଦ୍ଦେଶ୍ୟରେ ତାଙ୍କୁ ଆମେରିକା ଯୁକ୍ତରାଷ୍ଟ୍ର, ବ୍ରିଟେନ, ରୋମ ଯିବାକୁ ପଡ଼ିଥିଲା । ଏହାହିଁ ତାଙ୍କର ପ୍ରଥମ ଓ ଶେଷ ବିଦେଶଯାତ୍ରା ।

ରାଜନୀତିଜ୍ଞ ରାଜଗୋପାଳାଚାରୀ ବିସ୍ମୃତ ହୋଇପାରନ୍ତି; ମାତ୍ର ସାହିତ୍ୟିକ ଭାବେ ରାଜଗୋପାଳାଚାରୀ ଚିର ସ୍ମରଣୀୟ । ତାମିଲ୍ ସାହିତ୍ୟର ସୁଲେଖକ ଭାବେ ସେ ସୁପ୍ରତିଷ୍ଠିତ । ତାଙ୍କ ରଚିତ 'ମାର୍କସ ଅରେଲସ ଓ ସକ୍ରେଟିସ (ଅନୁବାଦ) ଗଳ୍ପ ଓ ପ୍ରବନ୍ଧାବଳୀ, ଭଗବଦ୍‌ଗୀତା ଓ ଉପନିଷଦ୍‌ର ଅନୁବାଦ ଉଚ୍ଚକୋଟୀର । ମହାଭାରତ ଓ ରାମାୟଣର କଥା-ବସ୍ତୁକୁ ସେ ଏକ ଅପୂର୍ବ ଶୈଳୀରେ ଆଧୁନିକ ଯୁଗୋପଯୋଗୀ ଭାବରେ

ବର୍ଣ୍ଣନା କରିଅଛନ୍ତି । ତାଙ୍କର ରଚନାଶୈଳୀ ଚମତ୍କାର; ଏହା ଥିଲି ସ୍ୱଚ୍ଛ, ସଂକ୍ଷିପ୍ତ, ସୁସଂଯତ ଏବଂ ମନୋରମ । ହିନ୍ଦୁଧର୍ମ, ଭାରତୀୟ ସଂସ୍କୃତି ସମ୍ପର୍କରେ ମଧ୍ୟ ସେ ବହୁ ଗ୍ରନ୍ଥ ରଚନା କରିଯାଇ ଅଛନ୍ତି । ଭାରତୀୟ ବିଦ୍ୟାଭବନ ପକ୍ଷରୁ ପ୍ରକାଶିତ ତାଙ୍କର "Hinduism doctrine and way of life" ଏକ ସୁବିଖ୍ୟାତ ଗ୍ରନ୍ଥ । ଏତଦ୍‌ବ୍ୟତୀତ ବହୁ ନୀତିକଥା, ସନ୍ଥ ଜୀବନୀ ଓ ଆଲୋଚନା ଗ୍ରନ୍ଥ ପ୍ରଭୃତିର ମଧ୍ୟ ସେ ପ୍ରଣେତା । ଗାନ୍ଧିଜୀ କାରାରୁଦ୍ଧ ଥିବା ସମୟରେ ତାଙ୍କ ସମ୍ପାଦିତ Young India ତରୁଣ ଭାରତର ସେ ରାଜାଜୀ ସମ୍ପାଦନା କରୁଥିଲେ । ଶେଷ ଜୀବନରେ ସମକାଳୀନ ରାଜନୈତିକ ପରିସ୍ଥିତି ସମ୍ପର୍କରେ ଲିଖିତ ତାଙ୍କର ବହୁ ଆଲୋଚନାତ୍ମକ ପ୍ରବନ୍ଧ 'ସ୍ୱରାଜ୍ୟ' ନାମକ ଇଂରାଜୀ ସାପ୍ତାହିକ ପତ୍ରିକାରେ ନିୟମିତ ଭାବେ ପ୍ରକାଶିତ ହେଉଥିଲା ।

ବାର୍ଦ୍ଧକ୍ୟରେ ମଧ୍ୟ ତାଙ୍କର କର୍ମଶକ୍ତି, ବୁଦ୍ଧିମତ୍ତା ଅତୁଟ ଥିଲା । ଏହା ତାଙ୍କର ଭାଷଣ ଓ ରଚନାରେ ଯେପରି ଅଭିବ୍ୟକ୍ତ ଲାଭ କରୁଥିଲା, ତାହା ତାଙ୍କ ସମ୍ପର୍କରେ ଆସୁଥିବା ବ୍ୟକ୍ତିମାନଙ୍କୁ ବିସ୍ମିତ କରିଦେଉଥିଲା । ସେ ନବେବର୍ଷ ବୟସରେ ପଦାର୍ପଣ କରିବା ସମୟରେ କେ: ଏମ୍: ମୁନସୀ ତାଙ୍କ ଉଦ୍ଦେଶ୍ୟରେ "ନବେ ବର୍ଷର ତରୁଣ" ଶୀର୍ଷକ ଏକ ପ୍ରବନ୍ଧ ପ୍ରକାଶ କରିଥିଲେ ।

ଭାରତର ଏହି ମହାନ୍ କର୍ମଯୋଗୀ "ନବେ ବର୍ଷର ତରୁଣ" ତାଙ୍କର ସମସ୍ତ ଜୀବନ କାଳରେ ପୃଥିବୀରେ ଶାନ୍ତି ଓ ମାନବିକ ସଦ୍‌ଭାବ ପ୍ରତିଷ୍ଠା ଲାଗି ଅକ୍ଳାନ୍ତ ଉଦ୍ୟମ କରିଯାଇଛନ୍ତି । ଭାରତ ପାକିସ୍ଥାନ ମଧ୍ୟରେ ସଦ୍‌ଭାବ ପ୍ରତିଷ୍ଠାର ଗୁରୁତ୍ୱ ସମ୍ପର୍କୀୟ ରଚନା ହିଁ ହେଉଛି ତାଙ୍କର 'ସ୍ୱରାଜ୍ୟ'ରେ ପ୍ରକାଶିତ ସର୍ବଶେଷ ରଚନା । ଦେହତ୍ୟାଗ ପୂର୍ବରୁ ତାଙ୍କର ଶେଷ ଉକ୍ତି ଥିଲା "ମୁଁ ଖୁବ୍ ଖୁସି" । ପବିତ୍ର ହିସ୍‌ମାସ ଦିବସରେ ହିଁ ଏହି ମହାନ ଜନନାୟକ, ଭାବୁକ ଓ ଲେଖକ 'ଦେହତ୍ୟାଗ କରିଥିଲେ ।'

ତାହାଙ୍କର କେତେଗୋଟି ସ୍ମରଣୀୟ ଉକ୍ତି—

❋ ଯଥାର୍ଥରେ ମହାନ ବ୍ୟକ୍ତି ହେବା ଲାଗି ତିନିଗୋଟି ବିଷୟ ଆବଶ୍ୟକ—ପୁରୁଷର ମସ୍ତିଷ୍କ, ନାରୀର ହୃଦୟ ଏବଂ ଶିଶୁର ସତେଜ ଦୃଷ୍ଟିକୋଣ ।

❊ ସବୁଆଡ଼େ ସମାନ ବ୍ୟବସ୍ଥା ପ୍ରବର୍ତ୍ତନ କଲେ ମଧ୍ୟ ତୁମେ ଏକତା ସମ୍ପାଦନ କରିପାରିବ ନାହିଁ ।

❊ ଧାର୍ମିକ ଅନୁଭୂତିର ଅର୍ଥ ହେଉଛି ବସ୍ତୁର ଯଥାର୍ଥ ରୂପ ବିଷୟରେ ସଚେତନ ହେବା—ବାସ୍ତବତା ସମ୍ପର୍କରେ ଗଭୀର ଭାବେ ଅଭିଜ୍ଞ ହେବା ।

❊ ଧୈର୍ଯ୍ୟ ହେଉଛି ଶକ୍ତିର ପରିଚାୟକ, ଦୁର୍ବଳତାର ନୁହେଁ ।

❊ ନିଜର ଚିନ୍ତା ଓ କର୍ମଦ୍ୱାରା ଆମେ ନିଜକୁ ଗଢ଼ିଥାଉ । ଏହି ଜୀବନରେ ଆମେ ଯେଉଁ ଚରିତ୍ର ଗଠନ କରିଦେଉ, ତାକୁ ହିଁ ଆତ୍ମା ପରବର୍ତ୍ତୀ ଯାତ୍ରାବେଳେ ସାଙ୍ଗରେ ନେଇଥାଏ ।

